ଇତିହାସ, ବ୍ୟକ୍ତି ଓ ବିଚାର
ପ୍ରୀତୀଶ ଆଚାର୍ଯ୍ୟ

ପ୍ରକାଶକ : ପଶ୍ଚିମା ପବ୍ଲିକେଶନ୍ସ, ୧୮୮୨, ନୟାପଲ୍ଲୀ,
ଭୁବନେଶ୍ୱର-୧୨, ଫୋନ୍: ୯୪୩୭୬୫୦୦୭୬୭
ପ୍ରଚ୍ଛଦ: ଅଶୋକ ମହାନ୍ତି
ମୁଦ୍ରଣ : ତୁତୁଲି ପ୍ରୋସେସ୍ ଏଣ୍ଡ୍ ଅଫ୍‌ସେଟ୍, ଭୁବନେଶ୍ୱର
ପ୍ରଥମ ପ୍ରକାଶ : ୨୦୧୭
ମୂଲ୍ୟ : ୧୫୦.୦୦

**ITIHAASA, BYAKTI O BICHARA**
Written by Pritish Acharya
Published by **Paschima Publications**
1882, Nayapalli,
Bhubaneswar, Odisha-12
1st Edition: 2017
Price .₹150.00

Email: paschima1990@yahoo.com

*For online purchase please visit :*
www.paschimapublication.com
www.odishaestore.com
www.odikart.com
www.odiabookbazar.com

# ପ୍ରସ୍ତାବନା

ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧ ଓ ବିଂଶ ଶତାବ୍ଦୀର ଆରଂଭରେ, ବାକି ଭାରତ ପରି, ଓଡ଼ିଶାର ଶିକ୍ଷା, ସଂସ୍କୃତି, ସାମାଜିକତା, ଓ ରାଜନୀତି କ୍ଷେତ୍ରରେ ନବଜାଗରଣର ଉଦ୍ରେକ ହେଲା। ଏହାକୁ ପ୍ରସଂଗ କରି ଓଡ଼ିଆରେ ବିଶେଷ ବୌଦ୍ଧିକ ଚର୍ଚ୍ଚାର ଆବଶ୍ୟକତା ରହିଛି, କାରଣ ତାହା ସମକାଳୀନ ଓଡ଼ିଶାର ଭିତ୍ତି ନିର୍ମାଣ କରିଥିଲା। 'ଇତିହାସ, ବ୍ୟକ୍ତି ଓ ବିଚ଼ାର' ପୁସ୍ତକ ସେହି ଦିଗରେ ଏକ କ୍ଷୁଦ୍ର ପ୍ରୟାସ ମାତ୍ର। ଏଥିରେ ତତ୍‌କାଳୀନ କେତେକ ବ୍ୟକ୍ତି ଏବଂ ସେମାନଂକ ବିଚ଼ାରକୁ ସେହି ଐତିହାସିକ ପରିପ୍ରେକ୍ଷୀରେ ଆଲୋଚ଼ନା କରାଯାଇଛି। ଆଲୋଚ଼ନାରେ ରାଷ୍ଟ୍ରୀୟ ସଂଦର୍ଭ ଓ ବସ୍ତୁନିଷ୍ଠାକୁ ଯଥୋଚ଼ିତ ମହତ୍ତ୍ୱ ଦେବାପାଇଁ ପ୍ରୟାସ ରହିଛି। ଏହାର ପଛରେ କାରଣ ହେଲା ଯେ ସାଧାରଣତଃ ଓଡ଼ିଶା କଥା ଆଲୋଚ଼ନା ବେଳେ ଜାତୀୟ ଓ ବିଶ୍ୱ ସଂଦର୍ଭ ଅଣ ଦେଖା ରହିଯାଏ। ଫଳରେ ଆଂଚ଼ଳିକ ପ୍ରସଂଗ ଗୁଡ଼ିକ ନିରୋଳା ମନେହୁଅନ୍ତି ଏବଂ ବୌଦ୍ଧିକ ଆଲୋଚ଼ନାକୁ ସଂକୀର୍ଣ୍ଣତା ଆଡ଼କୁ ଠେଲି ଦିଅନ୍ତି। ଠିକ୍ ସେହିଭଳି, ବୌଦ୍ଧିକ ବିମର୍ଶକୁ ବସ୍ତୁନିଷ୍ଠ ହେବା ଖୁବ୍ ଦରକାର। ବସ୍ତୁନିଷ୍ଠାର ଅଭାବରେ ବିମର୍ଶ ତା'ର ବୌଦ୍ଧିକତା ହରାଏ, ଯାହା ଆମ ସମସ୍ତଙ୍କ ପାଇଁ ଏକ ଚିନ୍ତାର ବିଷୟ। ଏହି ସଂଦର୍ଭରେ ବସ୍ତୁନିଷ୍ଠାର ଅର୍ଥ ହେଲା ଉଭୟ ପ୍ରଶଂସା ସର୍ବସ୍ୱତା ଓ କଟୂ ନିଂଦା ବିମୁଖତାର ଊର୍ଦ୍ଧ୍ୱରେ ରହିବା। ଯେତେ ସଂଭବ ଏକ ନିର୍ମୋହୀଭାବ ନେଇ ଅତୀତର ଘଟଣାବଳୀକୁ ଓ ବ୍ୟକ୍ତିବିଶେଷଂକୁ ଏବଂ ସେମାନଂକ ବିଚ଼ାରକୁ ବିଶ୍ଳେଷଣ କରିବାର ଆବଶ୍ୟକତା ରହିଛି। ଅନ୍ୟଥା ଅତୀତର ଆଲୋଚ଼ନା ଶିକ୍ଷାପ୍ରଦ ହେବ ନାହିଁ। ପୂର୍ବାଗ୍ରହ ଗ୍ରସ୍ତ ଆଲୋଚ଼ନା ଓ ପକ୍ଷପାତପୂର୍ଣ୍ଣ ବିଚ଼ାର କିଛି ବେଳ ପାଇଁ ହୁଏତ ଆବେଗ ସୃଷ୍ଟି କରି ପାରେ, ହେଲେ ଦୀର୍ଘସ୍ଥାୟୀ ପ୍ରଭାବ ରଖିବା ତା' ଦେଇ ସଂଭବପର ହେବ ନାହିଁ।

ପୁସ୍ତକରେ ସ୍ଥାନିତ ଲେଖାଗୁଡ଼ିକ ଭିନ୍ନ ଭିନ୍ନ ସମୟରେ ଲିଖିତ। ଆରଂଭ କେତୋଟି ଲେଖାକୁ ବିଷୟ ପ୍ରବେଶ ରୂପେ ନିଆଯାଇପାରେ। ଯଦିଓ ଏହି ଆରଂଭର କେତୋଟି ଲେଖା ନିର୍ଦ୍ଦିଷ୍ଟ କରି ଓଡ଼ିଶାକୈଂଦ୍ରିକ ନୁହନ୍ତି, ଓଡ଼ିଶାର ବ୍ୟକ୍ତି ଓ ବିଚ଼ାରକୁ ସଂଦର୍ଭକୁ ଆଣିବା ପାଇଁ ଉପକ୍ରମଣିକା ପ୍ରସ୍ତୁତ କରନ୍ତି, ଯାହା

ଆଲୋଚ଼ନାର ଯୁକ୍ତିକୁ ବୁଝିବା ପାଇଁ ଅବସର ଦିଏ। ଯେହେତୁ ଲେଖାଗୁଡ଼ିକ ଗୋଟାଏ ଗୋଟାଏ ସ୍ୱତନ୍ତ୍ର ଆଲେଖ୍ୟ, ସେଗୁଡ଼ିକୁ ସ୍ୱତନ୍ତ୍ର ଭାବେ ପାଠ କରିହେବ। ପୁଣି, ସବୁଗୁଡ଼ିକ ଲେଖା ମଧ୍ୟରେ ଓଡ଼ିଶା ଏକ କ୍ଷେତ୍ର ରୂପରେ ଏବଂ ନବଜାଗରଣ ଓ ଆଂଚ଼ଳିକ ଅସ୍ମିତା ଏକ ପ୍ରସଂଗ ରୂପରେ ସଂଯୋଜନାର କାମ କରନ୍ତି। ଏହା ଲେଖାଗୁଡ଼ିକୁ ଗୋଟାଏ ପୁସ୍ତକରେ ସନ୍ନିବେଶିତ କରିବା ନିମିତ୍ତ ଔଚିତ୍ୟ ପ୍ରଦାନ କରେ। ଲେଖାଗୁଡ଼ିକ ଯେହେତୁ ସ୍ୱତନ୍ତ୍ର ଏବଂ ସେଗୁଡ଼ିକର କ୍ଷେତ୍ର, ଅବଧି ଓ ପ୍ରସଂଗ ଗୋଟାଏ, ପୁସ୍ତକରେ କିଛିଟା 'ରିପିଟେସନ'କୁ ଏଡ଼ା ଯାଇ ପାରିନାହିଁ। ତା' ସତ୍ତ୍ୱେ ପୁସ୍ତକରେ ଶାତତ୍ୟ ଓ ନିରନ୍ତରତା କ୍ଷୁର୍ଣ୍ଣ ହୋଇନାହିଁ ବୋଲି ମୋର ବିଶ୍ୱାସ।

'ପାଣ୍ଡୁଲିପି'ର ପ୍ରସ୍ତୁତି ପ୍ରକ୍ରିୟାରେ ଅନେକ ବଂଧୁଙ୍କର ସହଯୋଗ ମିଳିଛି। ସିଦ୍ଧାର୍ଥ ମହାପାତ୍ର, ଯିଏ ଅନେକ ଲେଖାର ନାମକରଣ କରିଛନ୍ତି; ତାଂକ ସହ ଆଲୋଚ଼ନା ଯୋଗୁଁ ମତେ ଲେଖାକୁ ସଂପୂର୍ଣ୍ଣ କରିବାକୁ ବଂଭ ମିଳିଛି। ବଂଧୁ ବିଜୟ ମହାନ୍ତି ଓ ସୁରୁବାଲି ମାରାଣ୍ଡି ପାଣ୍ଡୁଲିପିର ଡିଟିପି କରିବା ପ୍ରକ୍ରିୟାରେ ଅନେକ ବନାନ ଅଶୁଦ୍ଧି ସୁଧାରିଛନ୍ତି। କବି ପବିତ୍ର ମୋହନ ଦାଶ ମୋର ସାନ ଭାଇ ତୁଲ୍ୟ। ହେଲେ ଲେଖାପଢ଼ି ମତାମତ ଦେଲାବେଳେ ତାଂକର ସମୀକ୍ଷାତ୍ମକ ଦୃଷ୍ଟି ମୋ ପାଇଁ ପ୍ରେରଣାର କାମ କରେ। ପତ୍ନୀ ଅଂଜଳି ଆଚ଼ାର୍ଯ୍ୟ ପ୍ରାୟତଃ ମୋ ଲେଖାର ପ୍ରଥମ ପାଠିକା; ସମୟ ଅଭାବରେ କେବେ କେବେ ଶ୍ରୋତା କେବଳ। ସମସ୍ତଙ୍କଠାରେ ମୁଁ କୃତଜ୍ଞ। ସେମାନଂଙ୍କର ଅକୁଣ୍ଠ ସହଯୋଗ ବିନା 'ପାଣ୍ଡୁଲିପି' ପ୍ରସ୍ତୁତ ହୋଇ ପାରିନଥାନ୍ତା। ମୋର ଅନେକ ପ୍ରୟାସ ପରେ ବି ପୁସ୍ତକରେ ପ୍ରମାଦ ନ ଥିବ ବୋଲି ଯୋର ଦେଇ କହିହେବ ନାହିଁ। ସମସ୍ତ ଅନିଚ୍ଛାକୃତ ପ୍ରମାଦ ନିମନ୍ତେ କେବଳ ମୁଁ ଦାୟୀ।

ମଇ ୨୦୧୫ — ପ୍ରୀତୀଶ ଆଚାର୍ଯ୍ୟ

## ସୂଚୀପତ୍ର....





# ଇତିହାସ ଦୃଷ୍ଟି : ଏକ ଆଲୋଚନା

ନିକଟରେ ଏକ ସଭାମଞ୍ଚରେ ଇତିହାସ ପାଠର ନିରର୍ଥକତାକୁ ଚିହ୍ନିତ କରିବାକୁ ଯାଇ ଜଣେ କହିଲେ, "ଇତିହାସ ଆଲୋଚନା ମାନେ ଆଉ କ'ଣ ? ଥୋଡ଼-ବଡ଼ି-ଖଡ଼ା, ନୋହିଲେ ଖଡ଼ା-ବଡ଼ି-ଥୋଡ଼।" ଅର୍ଥାତ୍ ତାଙ୍କ ମତରେ ଅତୀତରେ ଘଟିତ ସେହି ଏକା ଘଟଣାବଳୀକୁ ଚର୍ବିତ ଚର୍ବଣ କରିବାର ପାଠ ହେଲା ଇତିହାସ। ବାରମ୍ବାର ଆଲୋଚନା କଲେ ବି ତହିଁରେ କିଛି ନୂଆ ନ ଥାଏ। ଇତିହାସ ପାଠକୁ ନେଇ ଏଭଳି ଧାରଣା ରଖିବା ପଛରେ କିଛି ଆଧାର ନାହିଁ ବୋଲି କହିହେବ ନାହିଁ। ଅତୀତରେ ଯାହା ଘଟି ଯାଇଛି, ତାକୁ ତ ବଦଳେଇ ଦେଇ ହେବ ନାହିଁ। ତେଣୁ, ଆଲୋଚନା ଦୃଷ୍ଟିରୁ ତାହା ସ୍ଥିର, ଅବିଚଳ। ଇତିହାସ ପାଠ ସେହି ସୁଦୂର ଅତୀତକୁ ବାରମ୍ବାର ଅବଲୋକନ କରିବାକୁ ନିରର୍ଥକ ପ୍ରୟାସ କରେ, ଯାହାକୁ ଫେରାଇ ଆଣି କୌଣସି ନୂଆ ମୋଡ଼ ଦେବାର ଅବକାଶ ନାହିଁ। ଇତିହାସ ପାଠ ସମ୍ପର୍କରେ ଏହି କିସମର ଲୋକଧାରଣା ଯୋଗୁଁ ଅଧିକାଂଶ ମେଧାବୀ ଛାତ୍ର ଇତିହାସ ପାଠ ପ୍ରତି ଆକୃଷ୍ଟ ହୁଅନ୍ତି ନାହିଁ ଏବଂ ସେମାନଙ୍କ ଅଭିବାବକ ପିଲାର ଅନାଗ୍ରହରେ ଆଶ୍ୱସ୍ତି ପାଆନ୍ତି। ପିଲା ଅନ୍ୟ କିଛି 'ଉପଯୋଗୀ' ଓ 'ଲାଭକାରୀ' ବିଷୟ ପଢ଼ିଲେ ତାହା ଉଭୟ ପିଲା ଓ ସମାଜ ପାଇଁ ଭଲ ହେବ ବୋଲି ମନେ କରନ୍ତି। ଇତିହାସ ବିଷୟକୁ ଅନ୍ତତଃ ସ୍କୁଲ୍ ପାଠ୍ୟକ୍ରମରୁ ବାହାର କରିବା ସକାଶେ ଯେଉଁ ଦାବି ଶୁଣାଯାଏ, ତା' ପଛରେ ଏହି ଧାରଣା କାମ କରେ। ଇତିହାସ ତିରୋହିତ ହେଲେ, ସେହି ସମୟତକ 'ଅନ୍ୟ' ବିଷୟଗୁଡ଼ିକୁ ଆୟତ୍ତ କରିବାଲାଗି ଅବସର ମିଳନ୍ତା ବୋଲି ଆଶା କରାଯାଏ। ସେଦିନର ମନ୍ତବ୍ୟ ଏହି ଲୌକିକ ମନୋସ୍ଥିତିକୁ ପରିପୁଷ୍ଟ କରୁଥିଲା।

ଇତିହାସକୁ ନେଇ ଏହାର ଠିକ୍ ବିପରୀତ ସ୍ଥିତି ଶିକ୍ଷା ଓ ରାଜନୀତି କ୍ଷେତ୍ରରେ। ରାଜନେତାଙ୍କଠାରୁ ଆରମ୍ଭ କରି ବୃତ୍ତିନିପୁଣ ଡାକ୍ତର, ଇଞ୍ଜିନିୟର ଓ ଶିକ୍ଷାବିତ୍‌ଙ୍କ ଯାଏଁ, ସମସ୍ତେ ଇତିହାସର ଉଦାହରଣ ନ ଦେଇ ନିଜ ବକ୍ତବ୍ୟକୁ ପୂରା କରନ୍ତି ନାହିଁ। ବକ୍ତବ୍ୟର ବିଷୟ ଯାହା ହେଉ ନା କାହିଁକି, ତହିଁରେ

ଅତୀତର (ଇତିହାସର) ନିଶ୍ଚୟ କିଛି ଉଲ୍ଲେଖ ଥିବ, ଅତୀତର କୌଣସି ଯୁଗପୁରୁଷଙ୍କର ଉକ୍ତିର ଉଲ୍ଲେଖ ଥିବ। ନ୍ୟାୟାଳୟରେ ପକ୍ଷ ପ୍ରସ୍ତୁତ କଲାବେଳେ ବରାବର ନଜର ଥିବ ଅତୀତର କୌଣସି ଦଲିଲ ଉପରେ। ଚିକିତ୍ସା ବେଳେ ଡାକ୍ତର ଚାହିଁବେ ରୋଗୀ ଓ ରୋଗର ଅତୀତର ଇତିହାସ। ସ୍କୁଲ୍ ପାଠ୍ୟକ୍ରମର ଭୁଲ୍-ଠିକ୍ ଖୋଜିଲା ବେଳେ ଆଗ ଲୋଡ଼ା ପଡ଼ିବ ଇତିହାସ ବହିର। ଶିକ୍ଷା ବ୍ୟବସ୍ଥା ଓ ସମାଜ ବ୍ୟବସ୍ଥାକୁ ସୁଧୁରେଇବାର ପ୍ରୟାସ ବେଳେ ଆଗ ଦାବି ହେବ- ଇତିହାସର ପାଠ ବଦଳୁ। ସରକାର ବଦଳିଲେ ପ୍ରଥମେ ପ୍ରୟାସ ହେବ ଇତିହାସର ବିଷୟ ବଦଳେଇବାକୁ ! ମନେ ହେବ, ନିଜ ପସନ୍ଦ ଅନୁସାରେ ଯେମିତି ଅଧିକାରୀ ସ୍ୱ-ଅଫିସ୍ ପ୍ରକୋଷ୍ଠକୁ ସଜାଡ଼ନ୍ତି, ଗୃହସ୍ଥ ସଜାନ୍ତି ବସାଘରକୁ, ଠିକ୍ ସେମିତି କ୍ଷମତାସୀନ ଦଳ ଚାହାଁନ୍ତି, ଦେଶର ଅତୀତରୁ ବର୍ତ୍ତମାନ ଯାଏଁ ସଜଡ଼ା ହେଉ ! ଏହାକୁ ସେ ନିଜ ଅଧିକାର ମନେ କରନ୍ତି ! ଏସବୁ କ'ଣ ଇତିହାସ ପାଠର ମହତ୍ତ୍ୱକୁ ଦର୍ଶାଏ ନାହିଁ ? ଯଦି ମହତ୍ତ୍ୱ ନ ଥା'ନ୍ତା, କ'ଣ ସାଂପ୍ରତିକ ସମୟ ଓ ସମାଜରେ ଇତିହାସ ବିଷୟ ଏତେ ଚର୍ଚ୍ଚିତ ଓ ବିବାଦୀୟ ହୁଅନ୍ତା ? ଏସବୁ ଉଦ୍ୟମ ପଛରେ ଆମେ ବୋଧହୁଏ ଭାବନ୍ତି ଯେ ଐତିହାସିକର ଅତୀତକୁ ବଦଳେଇବାର ସାମର୍ଥ୍ୟ ଅଛି, ଅସମ୍ଭବକୁ ସମ୍ଭବ କରିବାର ଦକ୍ଷତା ତା' ହାତରେ ! ଏଥିରୁ ଆଉ ଗୋଟାଏ କଥା ସିଦ୍ଧ ହୁଏ। କୌଣସି ବିଶେଷ କାରଣରୁ ଇତିହାସ ବିଷୟ ପାଠ୍ୟକ୍ରମରୁ ବାଦ୍ ପଡ଼ିଲେ ବି ଇତିହାସ ମହତ୍ତ୍ୱ ହରାଇବ ନାହିଁ। ବରଂ ସେହି ସ୍ଥିତିରେ ମିଥ୍ୟା ଓ ଭ୍ରମାତ୍ମକତା ହୁଏତ ବସ୍ତୁନିଷ୍ଠ ଓ ଯୁକ୍ତିନିଷ୍ଠ ଇତିହାସ ପଠନ-ପାଠନର ସ୍ଥାନ ନେବ !

ଉଦ୍ଦିଷ୍ଟ ଉପକ୍ରମଣିକାରୁ ଜଣାପଡ଼େ ଯେ ଇତିହାସ କେବଳ 'ଖଡ଼ା-ବଡ଼ି-ଥୋଡ଼' ନୁହେଁ। ଦ୍ୱିତୀୟତଃ, ଇତିହାସ କେବଳ ଅତୀତର ରାଜନୀତିକ ଅଧ୍ୟୟନ ନୁହେଁ। ପୁଣି, ଏହା ବର୍ତ୍ତମାନଠାରୁ ବିଚ୍ଛିନ୍ନ ଅତୀତର ନିରୋଳା ଅଧ୍ୟୟନ ବି ନୁହେଁ। ଅତୀତ ଓ ବର୍ତ୍ତମାନ ମଧ୍ୟରେ ଏକ ନିବିଡ଼ ସମ୍ବନ୍ଧ ରହିଛି, ତାକୁ ଚିହ୍ନିତ କରିବା ଲାଗି ଇତିହାସ ଯୋଗସୂତ୍ର ହୁଏ। ଯୋଗସୂତ୍ର କେବଳ ଅତୀତ ଓ ବର୍ତ୍ତମାନ ମଧ୍ୟରେ ସୀମିତ ରହେ ନାହିଁ। ତା' ସାଙ୍ଗକୁ ସ୍ଥାନୀୟତା, ରାଷ୍ଟ୍ର ଓ ବିଶ୍ୱସମାଜ ମଧ୍ୟରେ ଥିବା ଅନ୍ତସମ୍ବନ୍ଧକୁ ଦେଖେ; ବିଭିନ୍ନ ଧର୍ମ, ସଂସ୍କୃତି ଓ ବ୍ୟକ୍ତି ମଧ୍ୟରେ ତାକୁ ଦେଖେ ଏବଂ ତୁଳନାତ୍ମକ ଢଙ୍ଗରେ ଅନ୍ୟକୁ ଓ ନିଜକୁ ଦେଖି

ପରଖିବାର ଅବସର ଦିଏ। ସେହି ଦୃଷ୍ଟିରୁ ଦେଖିଲେ ବୈଜ୍ଞାନିକ ଆଧାର ସଂବଳ ଯୁକ୍ତିନିଷ୍ଠ ଓ ବସ୍ତୁନିଷ୍ଠ ଇତିହାସ ଆଲୋଚନା ବ୍ୟକ୍ତି ଓ ସମାଜକୁ ବିସ୍ତାରିତ ହେବାକୁ, କୂପମଣ୍ଡୁକତାରୁ ନିବୃତ୍ତି ପାଇବାକୁ ତଥା ତାତ୍କାଳିକତାର ଊର୍ଦ୍ଧ୍ୱରେ ରହି ଏକ ଦୀର୍ଘକାଳୀନ ଜଗତଦୃଷ୍ଟି ରଖିବାକୁ ସୁଯୋଗ ଦିଏ।

ଇ.ଏଚ୍.କାର୍ (୧୮୯୨-୧୯୮୨) ଥିଲେ ଜଣେ ପ୍ରସିଦ୍ଧ ଐତିହାସିକ। 'What Is History' ଶୀର୍ଷକରେ ସେ ଇତିହାସତତ୍ତ୍ୱ ବିଷୟକ ଏକ ପୁସ୍ତିକା ଲେଖିଛନ୍ତି। ଓଡ଼ିଆ ତର୍ଜମା କଲେ ଶୀର୍ଷକଟି ହେବ, 'ଇତିହାସ: ଏକ ପରିଚୟ'। ପୁସ୍ତିକାରେ ସେ ଇତିହାସ ପାଠକୁ ଅତୀତ ଓ ବର୍ତ୍ତମାନ ମଧ୍ୟରେ ଚାଲିଥିବା ଏକ ଅବିରାମ ଆଳାପ (An unending dialogue between the past and the present) ବୋଲି ପରିଭାଷିତ କରିଛନ୍ତି। ବିସ୍ତାରରେ ଏହାର ଅର୍ଥ ହେଲା, ଅତୀତକୁ ବର୍ତ୍ତମାନର ପ୍ରଚକ୍ଷୁରେ ନ ଦେଖିବା ଯାଏ, ତାହା ଅନାବିଷ୍କୃତ ରହେ, ଇତିହାସ ପାଠ ହୁଏ ନାହିଁ। ଅତୀତ ସହ ବର୍ତ୍ତମାନର ଅନ୍ତକ୍ଷେପ ହିଁ କୌଣସି ଘଟଣାକୁ ଇତିହାସ ପର୍ଯ୍ୟାୟଭୁକ୍ତ କରେ। ଯେହେତୁ ବର୍ତ୍ତମାନ ସ୍ଥିର ନୁହେଁ, ନିରନ୍ତର ତାହା ବଦଳୁଥାଏ, ଅତୀତକୁ ନେଇ ବର୍ତ୍ତମାନର ଅବଧାରଣା ମଧ୍ୟ ନିରନ୍ତର ବଦଳିବାକୁ ବାଧ୍ୟ ହୁଏ। ଆମେ ଏକ ନିର୍ଦ୍ଦିଷ୍ଟ ସମୟରେ ଅତୀତକୁ ଯେମିତି ଦେଖିଥିଲେ, ପରବର୍ତ୍ତୀ ସମୟରେ ଆମ ଦୃଷ୍ଟିରେ ପରିବର୍ତ୍ତନ ଆସିପାରେ। କେବଳ ସମୟ ନୁହେଁ, ଇତିହାସକାରର ପରିବେଶ, ବର୍ଗୀୟ ଚେତନା, ଦୃଷ୍ଟିଭଙ୍ଗୀ ମଧ୍ୟ ତା'ର ପଠନ-ପାଠନକୁ ପ୍ରଭାବିତ କରନ୍ତି। ତେଣୁ ସମୟ ବଦଳିବା ସାଙ୍ଗରେ ଯେମିତି ଇତିହାସର ରୂପରେଖ ବଦଳେ, ସେମିତି ଇତିହାସକାର ଭିନ୍ନ ହେଲେ ବ୍ୟାଖ୍ୟା ଓ ବିଶ୍ଳେଷଣ ପୃଥକ୍ ହୁଏ; ଦୁଇଟି ଭିନ୍ନ ସମୟ ବା ଭିନ୍ନ ପରିବେଶରୁ ଦେଖିଲେ ସେହି ଏକା ଘଟଣା ବି ଦୁଇଟି ଭିନ୍ନ ଓ ବିରୋଧାତ୍ମକ ଘଟଣା ଭଳି ପ୍ରତୀତ ହୁଏ।

ଉଦାହରଣ ସ୍ୱରୂପ, ଊନବିଂଶ ଶତାବ୍ଦୀରେ ରାଜନୀତି ମନସ୍କତା ଇତିହାସ ଅଧ୍ୟୟନକୁ କବଳିତ କରିଥିଲା। ତେଣୁ ଅତୀତକୁ ଦେଖିଲା ବେଳେ ଇତିହାସକାର ଖୋଜୁଥିଲେ; ସେତେବେଳେ ରାଜା କିଏ ଥିଲେ ? ରାଜନୈତିକ ବ୍ୟବସ୍ଥା କ'ଣ ଥିଲା ? କେଉଁ ଉପାୟରେ ରାଜା କ୍ଷମତାକୁ ଆସିଥିଲେ ? କିଏ ତାଙ୍କର ଉତ୍ତରାଧିକାରୀ, ଆଦି। ଏହି ଆଧାରରେ ଇତିହାସକୁ ରାଜନୀତି ବିଜ୍ଞାନର ମୂଳ ଓ ରାଜନୀତି ବିଜ୍ଞାନକୁ ଇତିହାସର ଫଳ ବୋଲି

କୁହାଯାଉଥିଲା। ବିଂଶ ଶତାବ୍ଦୀରେ ବିଚାର ବଦଳିଲା। ରାଜନୀତିକ ପରିବର୍ତ୍ତନକୁ ମୋଟ ସାମାଜିକ ପରିବର୍ତ୍ତନର ଏକ ଅଂଶ ମାତ୍ର ବୋଲି ମନେ କରାଗଲା। ଅର୍ଥନୈତିକ, ସାମାଜିକ ଓ ସାଂସ୍କୃତିକ ଆଦି ପ୍ରତି କ୍ଷେତ୍ରରେ ଘଟିଥିବା ପରିବର୍ତ୍ତନକୁ ଅଣଦେଖା କଲେ ଇତିହାସ ଆଲୋଚନା ଅସମ୍ପୂର୍ଣ୍ଣ ହେବ ବୋଲି ବୁଝାଗଲା। ଅତୀତର ପୁନରାବଲୋକନ ବେଳେ ଇତିହାସକାର ନୂଆ ନୂଆ ପ୍ରଶ୍ନ କଲେ; ତତ୍କାଳୀନ ଅର୍ଥ ବ୍ୟବସ୍ଥା କ'ଣ ଥିଲା ? ସାଧାରଣ ଲୋକଙ୍କର ଚାଲିଚଳଣି କେମିତି ଥିଲା ? ମହିଳାମାନଙ୍କର ସ୍ଥିତି କ'ଣ ଥିଲା ? ଇତ୍ୟାଦି ଇତ୍ୟାଦି। ସେହି ଏକା ଅତୀତ, ଅଥଚ ଆଜି ଏକବିଂଶ ଶତାବ୍ଦୀରେ ପ୍ରଶ୍ନ ବଦଳିଛି; ଅନେକ ନୂଆ ପ୍ରଶ୍ନ ଯୋଡ଼ିଛି। ତଦନୁସାରେ ନୂଆ ଉତ୍ତର ମିଳୁଛି; ନୂଆ ଇତିହାସ ବହି ଲେଖା ହେଉଛି। ଇତିହାସ ପଠନ-ପାଠନର ଏହି ବିସ୍ତୃତ ପ୍ରକ୍ରିୟାରେ ନାଁ କରା ଐତିହାସିକଠାରୁ ଆରମ୍ଭ କରି ସ୍କୁଲ୍ ପିଲା ବି ସାମିଲ ହୋଇପାରିବେ। ଯେମିତି ଅତୀତର କୌଣସି ପ୍ରସଙ୍ଗ ଆଜି ଇତିହାସ ପରିସର ପାଇଁ ଅଛୁଆଁ ନୁହେଁ, ସେମିତି ବିଜ୍ଞାନ ଛାତ୍ରରୁ ନେଇ ସ୍କୁଲ୍ ଶିକ୍ଷକ ଯାଏଁ ସମସ୍ତେ ଇତିହାସ ପାଠରେ ସମାବିଷ୍ଟ ହୋଇପାରିବେ। ଅତୀତକୁ ନେଇ ମନକୁ ନୂଆ ନୂଆ ପ୍ରଶ୍ନ ଜୁଟିବ, ଯେତେବେଳେ କିଶୋର ଛାତ୍ରକୁ ବି ପ୍ରଶ୍ନ ପଚାରିବାକୁ ପ୍ରୋତ୍ସାହିତ କରାଯିବ। ଶିକ୍ଷକଙ୍କୁ ବା ଐତିହାସିକଙ୍କୁ ଯଦି ପ୍ରଶ୍ନର ଉତ୍ତର ଜଣା, ସେ ବା ନୂଆ ପ୍ରଶ୍ନ ହେଲା କେମିତି ? ଯେମିତି ଉତ୍ତର ଦେବା, ସେମିତି ପ୍ରଶ୍ନ କରିବା ବି ପିଲାର ସାମର୍ଥ୍ୟକୁ ଦର୍ଶାଏ- ଏହି ମନୋବୃତ୍ତିର ବିକାଶ ହେଲେ ତଳ କ୍ଲାସ୍‌ରେ ମଧ୍ୟ ପିଲାଙ୍କୁ ଇତିହାସ ପାଠ ଉପାଦେୟ ମନେ ହେବ; ଐତିହାସିକ ପ୍ରସଙ୍ଗର ଚର୍ଚ୍ଚା ଚର୍ବିତ ଚର୍ବଣ ପ୍ରତୀତ ହେବ ନାହିଁ।

ଯେମିତି ସମାଜରେ, ସେମିତି ବ୍ୟକ୍ତି ଜୀବନରେ ମଧ୍ୟ ସମୟ ଭିନ୍ନ ଭିନ୍ନ ରୂପରେ ପ୍ରତିଭାତ ହେଉଥାଏ। ଜଣେ ବ୍ୟକ୍ତି ଗୋଟାଏ ନିର୍ଦ୍ଦିଷ୍ଟ ପ୍ରସଙ୍ଗକୁ କେମିତି ଭିନ୍ନ ଭିନ୍ନ ସମୟରେ ବିଭିନ୍ନ ରୂପରେ ଦେଖିଛନ୍ତି, ତାକୁ ଜାଣିବା ପାଇଁ ଏକ ଅଭିନବ ଉଦାହରଣ ହେବେ କବି ଗଙ୍ଗାଧର ମେହେର (୧୮୬୨-୧୯୨୪)। ତାଙ୍କ ରଚନା କାଳର ମୋଟ ଅବଧି ପ୍ରାୟ ୪୦ ବର୍ଷ (୧୮୮୨-୧୯୨୨)। ଏହି ଚାରି ଦଶନ୍ଧି ମଧ୍ୟରେ ଆରମ୍ଭରେ ସେ ଇଂରେଜ ଉପନିବେଶବାଦ ପ୍ରତି, ଦେଶୀୟ ରାଜା-ରାଜୁଡ଼ା ବର୍ଗ ପ୍ରତି ଏବଂ ପୁରାଣରେ ସ୍ଥାପିତ ନାୟକମାନଙ୍କ ପ୍ରତି (ଯେମିତି ରାମ, କୃଷ୍ଣ) ଖୁବ୍ ଆଜ୍ଞାଧୀନ ଭାବ ରଖିଛନ୍ତି। ମାତ୍ର ଜୀବନର

ଉତ୍ତରାର୍ଦ୍ଧରେ ଭାବ କଠୋର ହୋଇଛି। ୧୮୯୫ରେ 'ଭାରତୀ ରୋଦନ' କବିତାରେ କବି ଇଂରେଜ ସରକାରଙ୍କୁ "ଧର୍ମ ଅବତାର ରାଜରାଜେଶ୍ୱର" ଓ "ସେ ଅବଶ୍ୟ ଶୁଣିବେ ଦୁଃଖ" ବୋଲି ଆଶା ପ୍ରକାଶ କରିଛନ୍ତି; ୧୯୦୧ରେ "ଭିକ୍ଟୋରିଆ ସ୍ତବ" ଗାଇଛନ୍ତି; ୧୯୧୦ରେ ବ୍ରିଟିଶ୍ ସମ୍ରାଟ୍ ସପ୍ତମ ଏଡ୍‌ୱାର୍ଡଙ୍କ ମୃତ୍ୟୁରେ ଶୋକଗ୍ରସ୍ତା ଇଂରେଜ ରାଣୀଙ୍କ ଦୁଃଖରେ ସମଦୁଃଖି ହୋଇ ଗାଇଛନ୍ତି, "ତୁମ୍ଭ ଅଶ୍ରୁବିନ୍ଦୁ ଭାରତରେ ସିନ୍ଧୁ ସମାନ ହେଉଛି ବୋଧ... ଜନନୀ ରୋଦନ ଚାହିଁ ପୁତ୍ରଗଣ କାନ୍ଦୁଛୁ ଅଧିକ ତର, ଆମ୍ଭ ନେତ୍ରେ ନୀର ପୋଛି ଅବନୀର ଶାନ୍ତି ସାଧି ଶାନ୍ତି ଧର।" ଏହାର ବିପରୀତ, ୧୯୨୧ରେ "ଭାରତୀ ଭାବନା"ରେ ସେହି ଗଙ୍ଗାଧର ଇଂରେଜମାନଙ୍କ ପ୍ରତି କଠୋର ହୋଇ ଗାଇଛନ୍ତି, "ଡାକି ତ ନ ଥିଲୁ ତୁମ୍ଭ ଘର ଯାଇ ଆସିଥିଲ ନିଜ ଲାଭରେ, ସରଳ ହୃଦୟ ମଣି ସିନା ଘରେ ରଖିଲୁ ଅତି ସ୍ନେହାଦରେ; ଗୋପେନ୍ଦ୍ର, କହିବ କଲ ଉପକାର। ଯାହା କରିଅଛ ନିଜ ସ୍ୱାର୍ଥ ପାଇଁ ନ ଥିଲା ଆମ୍ଭ ଦରକାର।" ଠିକ୍ ସେହିଭଳି, ୧୯୧୨ରେ 'କବିତା କଲ୍ଲୋଳ'ରେ କବି ଅନେକ ଦେଶୀୟ ରାଜା-ଜମିଦାରଙ୍କ ଭୂୟସୀ ପ୍ରଶଂସା କରିଥିବା ବେଳେ, ୧୯୧୮ରେ ଲିଖିତ 'ଅର୍ଘ୍ୟଥାଳି'ରେ ସେମାନଙ୍କୁ "ତାକୁ ମଧ୍ୟ ବୋଲିଥା'ନ୍ତି ଧର୍ମ ଅବତାର" ବୋଲି ବିଦ୍ରୂପ କରିଛନ୍ତି। ପୁରାଣର 'ମହାନାୟକ' (ରାମଚନ୍ଦ୍ର)ଙ୍କୁ ତପସ୍ୱିନୀ (୧୯୧୪)ରେ ଆଦର୍ଶ ମନେ କରିଛନ୍ତି, ମାତ୍ର 'ଭାରତୀ ରୋଦନ' (୧୯୨୧)ରେ ଦ୍ୱିଅର୍ଥବୋଧକ କାବ୍ୟରେ କବି କୃଷ୍ଣ ଏବଂ ଇଂରେଜ ସରକାରଙ୍କୁ ଏକା ମାତ୍ରାରେ ଖଳନାୟକ ବୋଲି ଉଲ୍ଲେଖ କରିଛନ୍ତି। ଯଦି ସର୍ଜନାର ସୃଷ୍ଟି-ସମୟକୁ ଅଣଦେଖା କରାଯିବ, କବି ଗଙ୍ଗାଧରଙ୍କ ରଚନା ଅନ୍ତର୍ବିରୋଧପୂର୍ଣ୍ଣ ମନେ ହେବ। ମାତ୍ର ଅସଲ କଥା ହେଲା ଯେ ସମୟାନ୍ତର ସହିତ କବିଙ୍କର ଦୃଷ୍ଟି ବଦଳିଛି। ଗତିମାନ ସମୟ ଏବଂ ପରିବର୍ତ୍ତନୀୟ ରାଜନୈତିକ ପ୍ରେକ୍ଷାପଟକୁ କବି ଅଣଦେଖା କରିନାହାନ୍ତି; ସ୍ଥାଣୁ ହୋଇନାହାନ୍ତି। ଏହା ତାଙ୍କ ସର୍ଜନାର ଗତିଶୀଳତାକୁ ଚିହ୍ନିତ କରେ।

ସମୟାନ୍ତର ସହିତ ଓ ବର୍ଦ୍ଧିଷ୍ଣୁ ଅନୁଭବ ସହିତ ବ୍ୟକ୍ତିର ଦୃଷ୍ଟି କେମିତି ବଦଳେ, ତାକୁ ପରଖିବା ଲାଗି ସ୍ୱୟଂ ମହାତ୍ମା ଗାନ୍ଧି ବି ଏକ ଉଦାହରଣ ହେବେ। ଦକ୍ଷିଣ ଆଫ୍ରିକାରେ (୧୮୯୩-୧୯୧୫)ରେ ସେ ବର୍ଣ୍ଣବିଦ୍ୱେଷ ବିରୋଧରେ ଲଢୁଥିବା ବେଳେ ବି ଇଂରେଜ ଉପନିବେଶବାଦ ପ୍ରତି କଠୋର ନ ଥିଲେ।

ହାରିଗୁହାରି କରି ଇଂରେଜଙ୍କ ହୃଦୟ ପରିବର୍ତ୍ତନ କରି ହେବ ବୋଲି ସେ ବିଶ୍ୱାସ ରଖିଥିଲେ। ପ୍ରଥମ ବିଶ୍ୱଯୁଦ୍ଧ (୧୯୧୪-୧୯୧୮) ବେଳେ ବି ସେ ଇଂରେଜ ଶକ୍ତିକୁ ଗଣତନ୍ତ୍ରର ପୂଜାରୀ ମନେ କରୁଥିଲେ। ମାତ୍ର ୧୯୧୯ (ଜାଲିଆନାୱାଲା ହତ୍ୟାକାଣ୍ଡ) ପରେ ତାଙ୍କ ଦୃଷ୍ଟି ବଦଳିଲା; ଇଂରେଜରାଜକୁ 'ସୈତାନର ରାଜୁତି' ବୋଲି ଅଭିହିତ କଲେ। ୧୯୨୧ରେ ଯେଉଁ ଗାନ୍ଧି 'ସ୍ୱରାଜ' (ସ୍ୱାଧୀନତା ନୁହେଁ, ସ୍ୱାୟତ୍ତ ଶାସନ) ମାଗୁଥିଲେ, ଦଶବର୍ଷ ପରେ ୧୯୩୧-୩୨ ବେଳକୁ ଦାବି କଲେ 'ପୂର୍ଣ୍ଣ ସ୍ୱରାଜ' ଏବଂ ତା'ର ଦଶବର୍ଷ ପରେ ୧୯୪୨ ବେଳକୁ କୌଣସି ଦାବି ନୁହେଁ ବରଂ ଇଂରେଜମାନଂକୁ ନିର୍ଦ୍ଦେଶ ଦେଲେ 'ଭାରତ ଛାଡ଼'। ବିଭିନ୍ନ ପାରିପାର୍ଶ୍ୱିକ ଘଟଣା କିଭଳି ବ୍ୟକ୍ତିକୁ ସମୟାନ୍ତରରେ ଦୃଷ୍ଟିକୋଣ ବଦଳାଇବାକୁ ପ୍ରରୋଚିତ କରେ, ତାହା ଏଥିରୁ ସୁସ୍ପଷ୍ଟ ହୁଏ।

ଐତିହାସିକ ରୋମିଲା ଥାପର (୧୯୩୦) ନିଜ ଗବେଷଣାର ଆରମ୍ଭ କାଳରେ (୧୯୬୦ ଦଶକର ଆଦ୍ୟରେ) "History of Early India" ଲେଖିଥିଲେ। ଦୀର୍ଘ ଚାରି ଦଶନ୍ଧି ପରେ ୨୦୦୧ରେ ତାଙ୍କ ଅଧ୍ୟାପନା ଓ ଗବେଷଣା ବୃତ୍ତିର ସାୟଂକାଳରେ ପୁସ୍ତକଟିକୁ ସେ ପୁନର୍ଲିଖନ କରିଛନ୍ତି। ଅର୍ଥାତ୍ ସେହି ଗୋଟାଏ ବହି ଜଣେ ଗବେଷକ ହାତରେ ଦୁଇଟି ଭିନ୍ନ ସମୟରେ ଲେଖା ହେବା ବେଳେ ଦୁଇଟି ପୃଥକ୍ ବହି ଭଳି ପ୍ରତୀତ ହୋଇଛି। ରୋମିଲା ଥାପରଙ୍କ ଭାଷାରେ, "ପ୍ରଥମ ପ୍ରକାଶନର ଚାଳିଶ ବର୍ଷ ପରେ ବହିଟିକୁ (History of early India) ଦେଖିଲା ବେଳେ ଏହି ମଝି ସମୟର ପରିବର୍ତ୍ତନ ଯାକ ମୋର ସ୍ମୃତିକୁ ଆସୁଛି।" ପ୍ରଫେସର ଥାପରଙ୍କ ଗବେଷଣା ବିଷୟ ହେଲା ପ୍ରାଚୀନ ଭାରତର ଇତିହାସ। ମାତ୍ର ଏହା ତାଙ୍କୁ ପ୍ରାଚୀନ ଐତିହାସିକ କରି ଦିଏନା; ସେ ପ୍ରାଚୀନ ଇତିହାସକୁ ଗବେଷଣାର ବିଷୟ ବାଛିଥିବା ଜଣେ ସମକାଳୀନ ଐତିହାସିକ। ଆଜିର ଦୃଷ୍ଟିରେ ସେ ସୁଦୂର ଅତୀତକୁ ଅଧ୍ୟୟନ କରନ୍ତି। ବର୍ତ୍ତମାନର ପ୍ରଚକ୍ଷୁରେ ହିଁ ଅତୀତକୁ ଅଧ୍ୟୟନ କରାଯିବା କାରଣରୁ ଐତିହାସିକ ଆର୍.ଜି.କଲିଙ୍ଗ୍‌ଉଡ୍‌ଙ୍କ (R.G. Collingwood : 1889-1943) ମତରେ ଇତିହାସର ସମୟାବଧି ଯାହା ହେଉ ନା କାହିଁକି, ତାହା ଯଦି ସମକାଳୀନ ଯୁଗରେ (ଉଦାହରଣ ସ୍ୱରୂପ, ଏକବିଂଶ ଶତାବ୍ଦୀ) ଲିଖିତ, ତେବେ ତାକୁ ସମକାଳୀନ ଇତିହାସ ରୂପେ ଦେଖି ହେବ। ଅର୍ଥାତ୍ ମୌର୍ଯ୍ୟକାଳୀନ

ଇତିହାସ ବି ଯଦି ଏକବିଂଶ ଶତାବ୍ଦୀରେ ଲେଖା ହେଲା, ତାହା ସମକାଳୀନ ଇତିହାସର ଏକ ଭିନ୍ନ ରୂପ ହେବ।

ଇତିହାସର ରଚନା ଓ ଗବେଷଣା ସର୍ବଦା ବିବିଧତାପୂର୍ଣ୍ଣ। ତହିଁରେ ଇତିହାସକାରର ଦୃଷ୍ଟି, ବିଚାର ଓ ମତାଦର୍ଶ ହିଁ ପ୍ରତିଫଳିତ ହୋଇଥାଏ। ତେଣୁ, ଇତିହାସକାରର ସଂଖ୍ୟା ବୃଦ୍ଧି ପାଇଲେ, ଇତିହାସ ଗବେଷଣା ଅଧିକ ବିବିଧତାପୂର୍ଣ୍ଣ ହେବାର ସମ୍ଭାବନା ରହିବ। ଏହି କଥାକୁ ଧ୍ୟାନରେ ରଖି କୁହାଯାଏ, ଇତିହାସ ପାଠ କରିବା ପୂର୍ବରୁ ତା'ର ଐତିହାସିକଙ୍କୁ ଜାଣ। ଅର୍ଥାତ୍ ଇତିହାସର ବିଷୟ ଓ ପ୍ରସଙ୍ଗ ଯାହା ହେଉ ନା କାହିଁକି, ତହିଁରେ ଇତିହାସକାରର ବିଚାରାଧାରା, ଜୀବନଦୃଷ୍ଟି ହିଁ ସ୍ଥାନ ପାଇବ। ଇଂରେଜ ଶାସନର ଆରମ୍ଭରେ (୧୭୫୭ ଖ୍ରୀଷ୍ଟାବ୍ଦ ଉତ୍ତାରୁ) ଯେଉଁ ୟୁରୋପୀୟ ବିଦ୍ୱାନ୍‌ମାନେ ଭାରତ ଇତିହାସରେ ରୁଚି ରଖିଲେ, ଯେମିତି ୱିଲିଅମ୍ ଜୋନ୍‌ସ୍ (William Jones : 1746-1794), ଜେମ୍‌ସ୍ ପ୍ରିନ୍‌ସେପ୍ (James Princep :1799-1840), ଆଲେକ୍‌ଜାଣ୍ଡାର୍ କନିଂହାମ୍ (Allexander Cunningham : 1814-1893) ଆଦି, ସେମାନେ ପ୍ରାୟତଃ ବୃତ୍ତିରେ ଐତିହାସିକ ନ ଥିଲେ। କମ୍ପାନିର ପ୍ରଶାସନିକ ଅଧିକାରୀ ରୂପେ କାର୍ଯ୍ୟ କରୁଥିଲେ। କମ୍ପାନିର ପ୍ରଶାସନିକ ଆବଶ୍ୟକତାକୁ ଦୃଷ୍ଟିରେ ରଖି ସେମାନେ ଭାରତର ଇତିହାସ, ସାହିତ୍ୟ, ଚାଲିଚଳଣିକୁ ଅଧ୍ୟୟନ କରିଥିଲେ। ଏହି ପ୍ରଶାସନିକ ଉଦ୍ଦେଶ୍ୟ ସେମାନଙ୍କ ରଚନାରେ ମଧ୍ୟ ପ୍ରତିଫଳିତ ହୋଇଥାଏ।

କେବଳ ଇତିହାସକାର କାହିଁକି, ପ୍ରତ୍ୟେକ ବ୍ୟାଖ୍ୟାକାର ସେମାନଙ୍କ ବ୍ୟାଖ୍ୟାରେ ସ୍ୱ-ମତ, ଆଦର୍ଶକୁ ପ୍ରତିଫଳିତ କରିଥା'ନ୍ତି। ଯେଉଁ ଗୁଣ ବା ଦୁର୍ଗୁଣ ପାଇଁ ଜଣକୁ 'ଖଳନାୟକ' ରୂପେ ସେମାନେ ସ୍ଥାପିତ କରନ୍ତି, ସେହି ସମାନ ଗୁଣ ବା ଦୁର୍ଗୁଣ ବିଶିଷ୍ଟ ଅନ୍ୟ ଏକ ଚରିତ୍ରକୁ 'ମହାନାୟକ' ରୂପେ ମଧ୍ୟ ଚିତ୍ରିତ କରିପାରନ୍ତି। ଏହାର ଏକ ଭଲ ଉଦାହରଣ ହେବେ 'ମହାଭାରତ'ର ବ୍ୟାଖ୍ୟାକାର। ଏମିତିରେ କୃଷ୍ଣ ଜଣେ ଯୁଦ୍ଧଖୋର; ସେ ସାରଥି ପଦରେ ରହି ଅର୍ଜୁନଙ୍କୁ ଯୁଦ୍ଧରୁ ବିରତ ନ ହେବାକୁ, ନିଜ ଦାଦାପୁଅ ଭାଇମାନଙ୍କୁ ଏବଂ ସେମାନଙ୍କ ସମର୍ଥକଙ୍କୁ ହତ୍ୟାକରିବାକୁ ପ୍ରୋତ୍ସାହିତ କରିଛନ୍ତି। ଶଠ, ଲମ୍ପଟଙ୍କ ଭଳି ପର ସ୍ତ୍ରୀଙ୍କର ବସ୍ତ୍ରହରଣ କରି ସେମାନଙ୍କୁ ଲଜ୍ଜିତ କରିଛନ୍ତି। ତା' ସତ୍ତ୍ୱେ ସେ ମହାଭାରତର 'ମହାନାୟକ'। ଶ୍ରୀକୃଷ୍ଣଙ୍କ ସ୍ଥାନରେ ଯଦି ଗୌତମ ବୁଦ୍ଧ

ରଥର ସାରଥି ହୋଇଥା'ନ୍ତେ, ମହାଭାରତ ଯୁଦ୍ଧ କ'ଣ ଭିନ୍ନ ମୋଡ଼ ନେଇ ନ ଥା'ନ୍ତା ? କିନ୍ତୁ ବ୍ୟାଖ୍ୟାକାର ଶ୍ରୀକୃଷ୍ଣଙ୍କ ଚରିତ୍ରକୁ ଏତେ ମାତ୍ରାରେ ମହିମାମଣ୍ଡିତ କରନ୍ତି ଯେ ପାଠକ ଯୁକ୍ତିନିଷ୍ଠ ପ୍ରଶ୍ନ ପଚାରିବାକୁ ସୁଦ୍ଧା ଉତ୍ସାହ ପାଆନ୍ତି ନାହିଁ। ମାତ୍ର ବିଜ୍ଞାନସମ୍ମତ ଇତିହାସ ରଚନା ଐତିହାସିକର ବିଚାରଧାରାକୁ ପ୍ରତିପାଦିତ କଲା ପରେ ବି ନୂଆ ନୂଆ ପ୍ରଶ୍ନକୁ ଅବରୋଧିତ କରେ ନାହିଁ। ଏହି ଆଧାରରେ ଯେଉଁ ଐତିହାସିକ ଓ ଇତିହାସ ଗବେଷଣା ପ୍ରଶ୍ନ କରିବାକୁ ଅବସର ଦିଅନ୍ତି ନାହିଁ, ଅନ୍ତିମ ସତ୍ୟ ବଖାଣିବାର ଦାବି କରନ୍ତି, ସେମାନଙ୍କ ଦୃଷ୍ଟି ଓ ସୃଷ୍ଟି କେବେ ବିଜ୍ଞାନସମ୍ମତ ହୋଇ ନ ପାରେ। ସମୟୋପଯୋଗୀ ପ୍ରଶ୍ନ ହିଁ ଇତିହାସ ପାଠକୁ ସମକାଳୀନ କରିଦିଏ।

ଆଜିକାଲି ଅନେକ ବୁଦ୍ଧିଜୀବୀ ଇତିହାସ ରଚନା ଓ ଗବେଷଣାର ତାଲିମ ନ ପାଇ ସୁଦ୍ଧା ଇତିହାସ ଲେଖାରେ ମନୋଯୋଗ ଦେଉଛନ୍ତି। ଏହା ଖୁବ୍ ଖୁସିର କଥା। ଏଭଳି ପ୍ରୟାସ ଇତିହାସ ପାଠକୁ ଜନଆଦୃତି ଦେବ। ସେମାନେ ଏ ପର୍ଯ୍ୟନ୍ତ ଅନାଲୋଚିତ ରହିଥିବା ଅନେକ ତଥ୍ୟ ସାମଗ୍ରୀକୁ ମହତ୍ତ୍ୱ ଦେଉଛନ୍ତି। ଏହା ବି ସ୍ୱାଗତଯୋଗ୍ୟ। ମାତ୍ର ସେହି ପ୍ରକ୍ରିୟାରେ ଆଗରୁ ମହତ୍ତ୍ୱ ପାଇଥିବା ତଥ୍ୟସାମଗ୍ରୀଗୁଡ଼ିକୁ ଅଣ-ଦେଖା କରାଯିବା କଥା ନୁହେଁ। ବରଂ ଉଭୟ ନୂଆ ଓ ପୁରୁଣା ତଥ୍ୟ-ସାମଗ୍ରୀକୁ ସାମଗ୍ରିକ ଭାବେ ଇତିହାସ ଗବେଷଣା ବେଳେ ଉପଯୋଗ କରାଯିବା କଥା। ଏହା ଗବେଷଣାକୁ ଅଧିକ ପରିପୁଷ୍ଟ ଓ ସମାବେଷ୍ଟୀ କରିବ। 'ଅନାଲୋଚିତ' ତଥ୍ୟ-ସାମଗ୍ରୀକୁ ମହତ୍ତ୍ୱ ଦେବା ଉଦ୍ଦେଶ୍ୟରେ ଯଦି ଆଲୋଚିତ, ସ୍ଥାପିତ ଓ ବହୁ ବ୍ୟବହୃତ ତଥ୍ୟ-ସାମଗ୍ରୀକୁ ପ୍ରତ୍ୟାଖ୍ୟାନ କରାଯାଏ, ତାହା ଇତିହାସ ସମ୍ମତ ହେବ ନାହିଁ। ଦ୍ୱିତୀୟତଃ, ନୂଆ ସତ୍ୟଟିଏ କହିବା ନିମିତ୍ତ ସର୍ବଦା ସ୍ଥାପିତ ସତ୍ୟକୁ ପ୍ରତ୍ୟାଖ୍ୟାନ କରିବା ଏକ ଆବଶ୍ୟକତା ହୋଇ ନ ପାରେ। ଇତିହାସ ପଠନ-ପାଠନକୁ ଏକ ହାର୍-ଜିତ୍ ପ୍ରସଙ୍ଗ ରୂପେ ନ ଦେଖି ଏକ ଦୀର୍ଘ ପ୍ରକ୍ରିୟା ରୂପରେ ଦେଖିଲେ, କୌଣସି ନିର୍ଦ୍ଦିଷ୍ଟ ତଥ୍ୟ, ସତ୍ୟ ଓ ବ୍ୟକ୍ତିକୁ ପ୍ରତ୍ୟାଖ୍ୟାନ କରିବାର ମନୋଭାବ ଉଡ଼ି ଉଭେଇ ଯିବ। ତାହେଲେ ଯାଇ ଇତିହାସ ନୂଆ ନୂଆ ଓ ଜ୍ଞାନ ଏବଂ ସବୁ କିସମର ବୁଦ୍ଧିଜୀବୀଙ୍କର ଏକ ମହା ସମାବେଶ ହେବାର ସୁଯୋଗ ପାଇବ। ଏହା ଇତିହାସ ସମ୍ପର୍କିତ ଆମ ଧାରଣାକୁ ବଦଳିବାରେ ସାହାଯ୍ୟ କରିବ ବୋଲି ଆଶା କରାଯାଏ।



(ଅକ୍ଟୋବର ୨୦୧୪)

# ବର୍ତ୍ତମାନର ଝରକାରେ ଅତୀତ

କେଉଁମାନେ ଆଧୁନିକ ଓଡ଼ିଶାର ନିର୍ମାତା ? ଏଭଳି ଏକ ପ୍ରଶ୍ନର ଉତ୍ତରରେ ଆଗ ଧାଡ଼ିରେ ରହିବେ ମଧୁସୂଦନ ଦାସ (୧୮୪୮-୧୯୩୪)। ଓଡ଼ିଶାରେ ଏବଂ ଓଡ଼ିଆରେ ମଧୁସୂଦନଙ୍କୁ ନେଇ ଚର୍ଚ୍ଚା କଲାବେଳେ କୌଣସି ଉପକ୍ରମଣିକାର ଲୋଡ଼ା ପଡ଼େ ନାହିଁ। ସେ ବହୁ ପରିଚିତ; ସେ 'ଉତ୍କଳ ଗୌରବ', ସେ 'କୁଳବୃଦ୍ଧ', ସେ 'ଶତାବ୍ଦୀର ସୂର୍ଯ୍ୟ', ସେ 'ଦେଶ ପ୍ରାଣ', ସେ 'ଆଧୁନିକ ଓଡ଼ିଶାର ଜନକ', ସେ ପୁଣି ଆମ ଆଦରର 'ମଧୁବାବୁ', 'ମଧୁ ବାରିଷ୍ଟର' ଓ 'ମିଷ୍ଟର ଦାସ'। କାହାରି ଶ୍ରଦ୍ଧା ନାମ ଯେତେବେଳେ ଔପଚାରିକ ନାମର ସ୍ଥାନ ନିଏ, ତାହା ଉକ୍ତ ବ୍ୟକ୍ତିର ଜନପ୍ରିୟତାକୁ ଦର୍ଶାଏ। ଏହି କାରଣରୁ ସରକାରୀ ସ୍ତରରେ ସ୍ଥାପିତ ଏକାଧିକ ଅନୁଷ୍ଠାନଠାରୁ ଆରମ୍ଭ କରି ବେସରକାରୀ ସ୍ତରରେ ପ୍ରତିଷ୍ଠିତ ଅନେକ ଗାଁ ଯୁବକ ସଂଘ ଯାଏ ତାଙ୍କ ନାଁରେ। ଓଡ଼ିଶାର ଅସ୍ମିତା ପାଇଁ ନିରନ୍ତର କାର୍ଯ୍ୟ କରିଥିବା ମଧୁବାବୁଙ୍କ ଜନ୍ମଦିନକୁ 'ସ୍ୱାଭିମାନ ଦିବସ' ରୂପେ ପାଳନ କରିବାରେ କାହାରି ଆପତ୍ତି ରହେ ନାହିଁ। ସେହିଭଳି ଇଂରେଜ ଅଦାଲତରେ ଠିଆ ହୋଇ ଇଂରେଜ ଓକିଲଙ୍କୁ ତାଙ୍କ ସ୍ଥାପିତ ତର୍କ, ଯୁକ୍ତିରେ ପରାଜିତ କରି ପୁରୀ ଜଗନ୍ନାଥ ମନ୍ଦିରକୁ ବିଦେଶୀ ସରକାରଙ୍କ କର୍ତ୍ତୃତ୍ୱାଧୀନ ହେବାରୁ ରକ୍ଷା କରିଥିଲେ ସେ। ତେଣୁ ତାଙ୍କ ଜନ୍ମଦିନକୁ 'ଓକିଲ ଦିବସ' ରୂପେ ପାଳନ କଲାବେଳେ ଓଡ଼ିଶା ଲୋକ ଗର୍ବ ଅନୁଭବ କରନ୍ତି। ଅନ୍ୟ ଶବ୍ଦରେ କହିଲେ, ଏସବୁ ମଧୁବାବୁଙ୍କ ବହୁଳ ପରିଚିତିକୁ ଚିହ୍ନିତ କରେ।

ହେଲେ ଅବସୋସର କଥା ଯେ ଓଡ଼ିଶାରେ ମଧୁବାବୁଙ୍କୁ ଯେତେ ଲୋକ ଜାଣନ୍ତି, ତା'ର ଶତାଂଶ ବି ତାଙ୍କୁ ଓଡ଼ିଶା ବାହାରେ ଜାଣନ୍ତି ନାହିଁ। ଓଡ଼ିଶାରେ ଏବଂ ଓଡ଼ିଆ ଭାଷାରେ ତ ତାଙ୍କ ସମ୍ବନ୍ଧରେ ଅନେକ ପୁସ୍ତକ। ତାଙ୍କ ମୃତ୍ୟୁର ପ୍ରାୟ ଅଶୀ ବର୍ଷ ପରେ ବି ଓଡ଼ିଆ ପତ୍ର-ପତ୍ରିକାରେ 'ପଗଡ଼ି ପୁରୁଷ', 'ମଧୁ-ଗୀତିକା', 'ମଧୁକଥା' ଆଦି ଶୀର୍ଷକରେ ଆଜି ନିୟମିତ ଚର୍ଚ୍ଚାମାନ ବାହାରେ। ମାତ୍ର ଓଡ଼ିଶା ବାହାରେ, ଓଡ଼ିଆ ଭିନ୍ନ ଅନ୍ୟ ଭାଷାରେ ଏବଂ ଅଣ ଓଡ଼ିଆ ବୁଦ୍ଧିଜୀବୀଙ୍କ ଦ୍ୱାରା ମଧୁବାବୁଙ୍କ ସମ୍ବନ୍ଧରେ ବିଶେଷ ଚର୍ଚ୍ଚା ହୋଇଛି ବୋଲି କହି ହେବ ନାହିଁ। ଭାରତବର୍ଷ ହେଲା ଅନେକ ଅଞ୍ଚଳର ସମାହାର। ସେହି

ଆଧାରରେ ଦେଶର ପ୍ରତ୍ୟେକ ଅଞ୍ଚଳ, ଆଞ୍ଚଳିକ ଇତିହାସ, ଅଞ୍ଚଳର ନେତୃବୃନ୍ଦ ଦେଶ ଗଠନରେ ସ୍ୱ ସ୍ୱ ଭୂମିକା ପାଇଁ ମହତ୍ତ୍ୱ ପାଇବା କଥା। ଗୋଟାଏ ଅଞ୍ଚଳକୁ ଅନ୍ୟ ଏକ ଅଞ୍ଚଳ ତୁଳନାରେ କମ୍ ପ୍ରମୁଖତା ମିଳିବା କଥା ନୁହେଁ। ଅର୍ଥାତ୍ ପ୍ରତ୍ୟେକ ଆଞ୍ଚଳିକ ନେତା ଜାତୀୟ ସ୍ତରର ହେବାର ସାମର୍ଥ୍ୟ ରଖନ୍ତି। ମାତ୍ର ବାସ୍ତବିକତା ହେଲା ଯେ ଜାତୀୟ ଆନ୍ଦୋଳନର ମହାତ୍ମାଗାନ୍ଧି, ନେହେରୁ, ସୁଭାଷ ବୋଷ ଆଦି ଆଗ ଧାଡ଼ିର ନେତୃବୃନ୍ଦଙ୍କୁ ଯଦି ବାଦ୍ ବି ଦିଆଯାଏ, ଦ୍ୱିତୀୟ ଧାଡ଼ିର ନେତୃବୃନ୍ଦ, ଯେମିତି ଗୋପାଳକୃଷ୍ଣ ଗୋଖ୍‌ଲେ, ସୁରେନ୍ଦ୍ର ନାଥ ବାନାର୍ଜୀ, ଲାଲା ଲାଜପତ ରାଏ, ରାଜେନ୍ଦ୍ର ପ୍ରସାଦଙ୍କ ସ୍ତରରେ ବି ମଧୁବାବୁଙ୍କୁ ଓଡ଼ିଶା ବାହାରେ ପରିଚିତି ମିଳେ ନାହିଁ।

ମଧୁବାବୁ ତ ଏକ ପ୍ରତୀକ ମାତ୍ର। ଓଡ଼ିଶାର ଜନନେତା ଗୋପବନ୍ଧୁ ଦାସ, ନବକୃଷ୍ଣ ଚୌଧୁରୀ ବା ସେଇ ଭାବରେ କହିଲେ ଓଡ଼ିଶାର ଜୀବନ ଓ ପରଂପରା ସମ୍ବନ୍ଧରେ ବି ଓଡ଼ିଶା ବାହାରେ ଉଭୟ ସାଧାରଣ ଏବଂ ବୌଦ୍ଧିକ ଜଗତରେ ବିଶେଷ ଆକର୍ଷଣ କିମ୍ବା ପରିଚିତି ନାହିଁ। ଏକ ଧାର୍ମିକ ଆବେଗର ବଶବର୍ତ୍ତୀ ହୋଇ ଯେଉଁ ସଂଖ୍ୟାରେ ଲୋକ ପୁରୀ ଜଗନ୍ନାଥ ଦର୍ଶନରେ ଆସନ୍ତି, ତା'ର ଶତାଂଶଙ୍କ ମନରେ ବି ଜଗନ୍ନାଥ ପରମ୍ପରା ଅର୍ଥପୂର୍ଣ୍ଣ ବୌଦ୍ଧିକ ଆବେଗ ସୃଷ୍ଟି କରେ ବୋଲି ଜୋର୍ ଦେଇ କହି ହେବ ନାହିଁ।

ତେବେ, ମୂଳ ପ୍ରଶ୍ନ ମଧୁବାବୁଙ୍କୁ କିମ୍ବା ଓଡ଼ିଶାର ଅନ୍ୟ ପ୍ରତୀକ ମାନଙ୍କୁ ଯଥୋଚିତ ପରିଚିତି ଓଡ଼ିଶା ବାହାରେ ନ ମିଳିବା ପଛରେ କ'ଣ ସବୁ କାରଣ ହୋଇପାରେ ? ପ୍ରଶ୍ନଟିର ଏକ ସହଜିଆ ଉତ୍ତର ହେବ ଓଡ଼ିଶା ପ୍ରତି ଅନ୍ୟମାନଙ୍କର ଉପେକ୍ଷାଭାବ। ଜାଣି, ଗୋଷ୍ଠୀବଦ୍ଧ ହୋଇ ଓଡ଼ିଶା ବାହାରର ସବୁ ଅଞ୍ଚଳର ବୌଦ୍ଧିକ ବର୍ଗ ଓଡ଼ିଶାର କୃତି ଓ କୃତିତ୍ୱ ପ୍ରତି ତଥା ଓଡ଼ିଶାର ଗର୍ବ ଓ ଗୌରବ ପ୍ରତି ପାତର ଅନ୍ତର ଭାବ ରଖୁଛନ୍ତି। ଏକ ବ୍ୟାପକ ଦୃଶ୍ୟପଟରେ ଓଡ଼ିଶାର ଦୃଶ୍ୟମାନ ନ ହେବାର ସେମାନେ ଯେମିତି ଶାନ୍ତି ପାଇବେ !

ମାତ୍ର ଏଭଳି ଆକ୍ଷେପର କୌଣସି ଆଧାର ନାହିଁ। ଅସଲି ସମସ୍ୟା ହେଲା, ଓଡ଼ିଶାର ବୌଦ୍ଧିକ ଜଗତରେ ଯେଉଁ ବିଚାରବିମର୍ଶ ହୁଏ, ତହିଁରେ ଅନେକ ସମୟରେ ଆବଶ୍ୟକ ମାତ୍ରାରେ ଯୌକ୍ତିକତା, ବସ୍ତୁନିଷ୍ଠାର ଅଭାବ ଦେଖିବାକୁ ମିଳେ। ଅର୍ଥାତ୍ ଐତିହାସିକ ପ୍ରକ୍ରିୟାକୁ ଯଥୋଚିତ ମହତ୍ତ୍ୱ ନ ଦେଇ କେତୋଟି

ନିର୍ଦ୍ଦିଷ୍ଟ ଐତିହାସିକ ବ୍ୟକ୍ତିତ୍ୱଙ୍କୁ ପ୍ରମୁଖତା ଦିଆଯାଏ। ଏଥିପାଇଁ ଉକ୍ତ ବ୍ୟକ୍ତିତ୍ୱଙ୍କୁ ନାୟକ, ମହାନାୟକ, ସର୍ବଗୁଣ ସମ୍ପନ୍ନ, ଅଲୌକିକ ସାମର୍ଥ୍ୟର ଅଧିକାରୀ ରୂପେ ଚିତ୍ରିତ କରାଯାଏ। ତାଙ୍କ ଜୀବନର ଯେଉଁ ଘଟଣା ଏଥିରେ ଅନୁପୂରକ ସିଦ୍ଧ ହୁଅନ୍ତି ନାହିଁ ବୋଲି ମନେ କରାଯାଏ, ତାକୁ ଆଲୋଚନାରୁ ମଧ୍ୟ ବାଦ୍ ଦିଆଯାଏ। ଉଦାହରଣ ସ୍ୱରୂପ, ଏକଥା ସର୍ବବିଦିତ ଯେ ଜାତୀୟ କଂଗ୍ରେସ ପକ୍ଷରୁ ୧୯୨୧ରେ ଯେତେବେଳେ ଇଂରେଜ ସରକାର ସହିତ ଅସହଯୋଗର ଡାକରା ଦିଆଯାଇଥିଲା, ସେହି ସମୟରେ ମଧୁବାବୁ ସରକାରର ମନ୍ତ୍ରିତ୍ୱ ନେଇଥିଲେ; ୧୯୨୮ରେ ଯେତେବେଳେ ସାଇମନ କମିସନ୍‌କୁ ବର୍ଜନ କରିବା ପାଇଁ ସବୁ ଜାତୀୟବାଦୀ ଏକଜୁଟ ହୋଇଥିଲେ, ମଧୁବାବୁ କମିସନକୁ ସ୍ୱାଗତ କରିଥିଲେ। ତାହା ହେଲେ କ'ଣ ଘଟଣାକୁ ଖଣ୍ଡ ଖଣ୍ଡ କରି ଦେଇ ଆମେ କହିବା କି ମଧୁବାବୁ ଜାତୀୟତା ବିରୋଧୀ ଥିଲେ ? ସତ କଥା ହେଉଛି, ଐତିହାସିକ ପରିପ୍ରେକ୍ଷୀରେ ସାମଗ୍ରିକ ଭାବେ ପରଖା ଗଲେ 'ନାୟକ' 'ମହାନାୟକ' ବା 'ଖଳନାୟକ' ଆଦି ବିଶେଷଣଗୁଡ଼ିକ ଠାରୁ ସେ ଊର୍ଦ୍ଧ୍ୱରେ ରହିବେ । ଏ କଥାକୁ ମନେ ରଖି ଆଲୋଚନା କରାଗଲେ ଆମ ଆଲୋଚନାରେ ଐତିହାସିକ ପ୍ରକ୍ରିୟା ମହତ୍ତ୍ୱ ପାଇବ; ବାକ୍ତିଜଣକ ସ୍ୱ-ସମୟର କେବଳ ଏକ ପ୍ରଡ଼କ୍ଟ (product) ବା ଉପଜ ମାତ୍ର ସିଦ୍ଧ ହେବ। ଏହା ବ୍ୟକ୍ତିର ଉପଲବ୍‌ଧିକୁ ଗୌଣ କରେନାହିଁ, ବରଂ ସମୂହର ଏକ ଅବିଭାଜ୍ୟ ଅଙ୍ଗ ରୂପେ ତାକୁ ଦେଖେ। ଉଦାହରଣ ସ୍ୱରୂପ, ଗଣ ଆନ୍ଦୋଳନ ଯୋଗୁଁ ଭାରତ ସ୍ୱାଧୀନ ହେଲା ବୋଲି ସିଦ୍ଧ ହେଲେ ମହାତ୍ମା ଗାନ୍ଧିଙ୍କର ଭୂମିକା ହାଲୁକା ପଡ଼ିଯାଏ ନାହିଁ।

ଯଦି ପ୍ରକ୍ରିୟା ପରିବର୍ତ୍ତେ ବ୍ୟକ୍ତିକୁ ଅତୀତର ଅଧ୍ୟୟନ ବେଳେ ଅଧିକ ମହତ୍ତ୍ୱ ମିଳେ, ତେବେ ନାୟକ ସହିତ ଖଳନାୟକ ଖୋଜିବା ମଧ୍ୟ ଏକ ଆବଶ୍ୟକତା ହୋଇପଡ଼େ। ଅତୀତର ପୁନର୍ବିନ୍ୟାସ କରିବା ନାଁରେ ଆମେ ଅତୀତକୁ ସହଜ, ସ୍ୱାଭାବିକ ଢଙ୍ଗରେ ନ ଦେଖି ଓଲଟପାଲଟ କରି ଦିଅନ୍ତି। ଏହାରି ମୂଳରେ ଉଦ୍ଦେଶ୍ୟ ଥାଏ କୌଣସି ନିର୍ଦ୍ଦିଷ୍ଟ ଚରିତ୍ରକୁ ଖଳନାୟକ ସିଦ୍ଧ କରିବା, ଯାହା ଆମର ଈପ୍‌ସିତ ଚରିତ୍ରକୁ ଅଧିକ ସୌମ୍ୟ, ସୁଗୁଣଯୁକ୍ତ କରିବ ବୋଲି ଭ୍ରମାତ୍ମକ ଆଶା ରହେ। ଅର୍ଥାତ୍ ଇତିହାସର ପରିଘଟନରେ କେବଳ ବ୍ୟକ୍ତିକୁ ଖେଳାଳି ରୂପେ ଦେଖାଯାଏ; ପରିସ୍ଥିତି ଓ ପରିବେଶର ତଥା ସମୂହର

ଯଥୋଚିତ ଉଦ୍ଧୃତି ରହେ ନାହିଁ। ଏହି ଧରଣର ବ୍ୟକ୍ତିକୈନ୍ଦ୍ରିକ ଇତିହାସ ଆଲୋଚନାରେ ଈପସିତ ଚରିତ୍ରର ପ୍ରଶଂସା ଶୁଣିବାରେ ଆମେ ଏତେ ଅଭ୍ୟସ୍ତ ହୋଇପଡ଼ନ୍ତି ଯେ ତାଙ୍କର Critical Appreciation କୁ ବା ଓଡ଼ିଆରେ କହିଲେ ବିଶ୍ଳେଷଣାତ୍ମକ ଦୃଷ୍ଟିକୁ ସୁଦ୍ଧା ସହ୍ୟ କରି ପାରନ୍ତି ନାହିଁ। ଠିକ୍ ସେହିଭଳି, ଆମ ମାନସ-ଖଳନାୟକଙ୍କର ଯଦି କେହି ସମୀକ୍ଷକ କେବେ ବସ୍ତୁନିଷ୍ଠ ଆଲୋଚନା କରନ୍ତି, ତାହା ଆମର ସହ୍ୟ ହୁଏ ନାହିଁ। ଏଭଳି ଏକ ଅସହିଷ୍ଣୁ ସ୍ଥିତି ଯଦି ସୃଷ୍ଟି କରାଯାଏ, ଓଡ଼ିଶା ବାହାରର ଆଲୋଚକ 'ଆମ' ଅତୀତ, 'ଆମ' ସମାଜ, 'ଆମ' ଐତିହାସିକ ଚରିତ୍ରଙ୍କ ସମ୍ବନ୍ଧରେ ବିଚାରବିମର୍ଶ କରିବା ସକାଶେ ସାହସ କରିବେ କେମିତି ? ଅନ୍ୟ ଶବ୍ଦରେ କହିଲେ, ପ୍ରାୟତଃ ଆମ ବୌଦ୍ଧିକତାରେ ଆବଶ୍ୟକ ମାତ୍ରାରେ ସହିଷ୍ଣୁତା, ନିର୍ମୋହୀଭାବ ଏବଂ ଗାଣତାନ୍ତ୍ରିକତା ରହିଲେ 'ଆମ' ଅତୀତ, 'ଆମ' ସମାଜ, 'ଆମ' ବ୍ୟକ୍ତିତ୍ୱ ଅନ୍ୟମାନଙ୍କ ପାଇଁ ମଧ୍ୟ ଆଲୋଚ୍ୟ ହୋଇ ପାରିବ। ତେଣିକି ଅଯଥା ଭାବପ୍ରବଣତାର ଊର୍ଦ୍ଧ୍ୱରେ ରହି ତାର୍କିକତା ଓ ତଥ୍ୟ ପ୍ରମାଣର ଆଧାରରେ ଅତୀତର ଅଧ୍ୟୟନ କରି ହେବ। ନିର୍ଦ୍ଦିଷ୍ଟ କୌଣସି ପ୍ରସଙ୍ଗକୁ ନେଇ ଆମର ଅତ୍ୟାଗ୍ରହ ରହିବା ଅର୍ଥ ନୁହେଁ ତଥ୍ୟ ପ୍ରମାଣକୁ ଅଣଦେଖା କରିବା।

ଅଯଥା ଭାବପ୍ରବଣତାର ଶିକାର ହୋଇ ଯେତେବେଳେ ଆମର କେତେକ ପ୍ରବୁଦ୍ଧ ବ୍ୟକ୍ତି ସ୍ଥାନୀୟ ସମାଜ ଉପରେ ନିଜର ଏକଚାଟିଆ ଅଧିକାର ଦେଖାନ୍ତି, ତାହା ଅନ୍ୟ ଏକ ସମସ୍ୟାକୁ ଜନ୍ମ ନିଏ। ଓଡ଼ିଶା ଭିତରେ ଅସଂଖ୍ୟ କ୍ଷୁଦ୍ର ସ୍ଥାନୀୟ ସମାଜ ସୃଷ୍ଟି ହୁଏ, ଏବଂ ପ୍ରତ୍ୟେକଟି କ୍ଷୁଦ୍ର ସମାଜର ବୌଦ୍ଧିକ ବର୍ଗ ଅନ୍ୟ କ୍ଷୁଦ୍ର ସମାଜର ବୌଦ୍ଧିକ ବର୍ଗର ଟୀକା ଟିପ୍ପଣୀକୁ, ମତ ଅମତକୁ ଅସହ୍ୟ ମନେ କରେ। ଉଦାହରଣ ସ୍ୱରୂପ, ଖୋର୍ଦ୍ଧା ବାହାରେ ଜୟୀ ରାଜଗୁରୁଙ୍କର ଯଦି ପ୍ରଶଂସା ହୁଏ, ତାହା ସହ୍ୟ ହେବ, ହେଲେ ସମୀକ୍ଷା ବା ସମାଲୋଚନା ହେଲେ ଅସହ୍ୟ ହୋଇଯିବ। ସମୀକ୍ଷକ ଶତ୍ରୁ ତୁଲ୍ୟ ମନେ ହେବେ। ଠିକ୍ ସେହି ସ୍ଥିତି ସୁରେନ୍ଦ୍ର ସାଏ, ଧରଣୀଧର ନାୟକ, ଫକୀର ମୋହନ ସେନାପତି ଆଦିଙ୍କର। ସେମାନେ ଗୋଟାଏ ଗୋଟାଏ କ୍ଷୁଦ୍ର ଅଞ୍ଚଳର ବୌଦ୍ଧିକ ସମାଜରେ ଏତେ ମାତ୍ରାରେ 'ଇଷ୍ଟ', 'ଆରାଧ୍ୟ' ବିବେଚିତ ହୁଅନ୍ତି ଯେ ଆଲୋଚକ ପାଇଁ ସେମାନଙ୍କ ବସ୍ତୁନିଷ୍ଠ ଐତିହାସିକ ସମୀକ୍ଷା ସମ୍ଭବ ହୁଏ ନାହିଁ। ଆମ ଅତୀତର ଏହି ଧରଣର ବ୍ୟକ୍ତିକେନ୍ଦ୍ରିକ ମୋହାବିଷ୍ଟ ବିଚାରବିମର୍ଶ ଯେ ଆମ ବର୍ତ୍ତମାନର

ସଂକୀର୍ଣ୍ଣତାକୁ ସୁଦୃଶ୍ୟ କରାଏ ଏଥିରେ ସନ୍ଦେହ ନାହିଁ।

ମୋଟ କଥା ହେଲା କୌଣସି କାଳେ ଅତୀତର ନିରୋଳା ଆଲୋଚନା ସମ୍ଭବ ହୋଇ ନାହିଁ। ବର୍ତ୍ତମାନର ଦୃଷ୍ଟିରେ ହିଁ ଅତୀତକୁ ପରଖା ଯାଏ; ଅତୀତର ଅଧ୍ୟୟନରେ ବର୍ତ୍ତମାନର ପ୍ରତିଫଳନ ରହିଥାଏ। ଐତିହାସିକ ପ୍ରକ୍ରିୟା ବଦଳରେ ବ୍ୟକ୍ତିକୁ ମହତ୍ତ୍ୱ ଦେଲା ବେଳେ ବି ବର୍ତ୍ତମାନରେ ଥିବା ବ୍ୟକ୍ତିକୈନ୍ଦ୍ରିକତା ନିଜର ପ୍ରଭାବ ଦେଖାଇଥାଏ। ଏଭଳି ସ୍ଥିତିରେ ଅନ୍ତତଃ ବୌଦ୍ଧିକ ଜନ ଯଦି ଐତିହାସିକ ପ୍ରକ୍ରିୟାକୁ ତଥା ସାମାଜିକତାକୁ ପ୍ରମୁଖତା ଦେବେ ଆମ ଇତିହାସ, ଆମ କୃତି ଓ କୃତିତ୍ୱ ବୃହତ୍ତର ସମାଜରେ ଗ୍ରହଣୀୟତା ଲାଭ କରିବ, ସମସ୍ତଙ୍କର ହେବ। ଆମ ବ୍ୟକ୍ତି ଓ ସେମାନଙ୍କ ବ୍ୟକ୍ତିତ୍ୱ ଆଲୋଚନାର ବ୍ୟାପକ ପରିସରକୁ ଆସିବେ। ତେଣିକି ଅତୀତକୁ ନେଇ ଆମର ବିଚାର ଆଲୋଚନା କେବଳ ବର୍ତ୍ତମାନକୁ ବାଟ ଦେଖାଇବାର ସାମର୍ଥ୍ୟ ପାଇବ ନାହିଁ, ତା' ସହିତ ବର୍ତ୍ତମାନ ପାଇଁ ମଧ୍ୟ ତାହା ପ୍ରାସଙ୍ଗିକ ଓ ଗ୍ରହଣୀୟ ହେବ ତଥା ସମୂହଧର୍ମୀ ହେବ ଏକଥା ଅନୁମାନ କରି ହୁଏ।



(ସେପ୍ଟେମ୍ବର ୨୦୧୩)

# ଜାତି ଗଠନରେ ଜାତୀୟତା ଆନ୍ଦୋଳନ

ଜାତୀୟତା ଆନ୍ଦୋଳନ ଓ ସ୍ୱାଧୀନତା ସଂଗ୍ରାମକୁ ଗୋଟାଏ ବିଚାରର ଦୁଇଟି ସମାର୍ଥବୋଧକ ଶବ୍ଦ ଭାବରେ କ'ଣ ନିଆଯାଇପାରିବ ? ଯଦି ଭାରତ କୈନ୍ଦ୍ରିକ ଦୃଷ୍ଟି ନେଇ ଆମେ ପ୍ରଶ୍ନଟିର ଉତ୍ତର ଖୋଜିବା, ତେବେ ଉତ୍ତର ହେବ 'ହଁ'। ଉଭୟଟି ଏକା ମନେ ହେବେ। ହେଲେ ଉଭୟଟି ଏକା ନୁହନ୍ତି। ଭାରତରେ ଇଂରେଜ ଉପନିବେଶବାଦର ରାଜୁତି ରହିଥିଲା ଏବଂ ସେହି କାରଣରୁ ଭାରତବାସୀଙ୍କର ସ୍ୱାଧୀନତା ନ ଥିଲା। ସେହି ହୃତ ସ୍ୱାଧୀନତାକୁ ପୁନର୍ଲାଭ କରିବା ଉଦ୍ଦେଶ୍ୟରେ ଆମ ଏଠି ସ୍ୱାଧୀନତା ସଂଗ୍ରାମ ସଂଗଠିତ ଓ ସଂଘଟିତ ହୋଇଥିଲା। ସ୍ୱାଧୀନତା ସଂଗ୍ରାମର ସଂରଚନା ପ୍ରକ୍ରିୟାରେ ହିଁ ଜାତି ଗଠନ ହେଲା, ଜାତୀୟତାର ଆନ୍ଦୋଳନ ହେଲା। ଅର୍ଥାତ୍ ଭାରତରେ ଜାତୀୟତା ଆନ୍ଦୋଳନ ଓ ସ୍ୱାଧୀନତା ସଂଗ୍ରାମର ସଂରଚନା ଏକ ସମୟରେ ହୋଇଥିଲା, ଉଭୟର ଏକା ନେତୃବୃନ୍ଦ ଥିଲେ; ସହଭାଗୀ ମଧ୍ୟ ଏକା ଗୋଷ୍ଠୀ। ତେଣୁ, ଉଭୟଟି ହେଲେ ଆମ ଆଖିରେ ଏକା କଥା। ଜାତୀୟତା ଆନ୍ଦୋଳନ ଓ ସ୍ୱାଧୀନତାକୁ ଏକା ବୋଲି ଆମେ ଯେହେତୁ ମନେ କରନ୍ତି, ଉଭୟଟି ମଧ୍ୟରେ ଥିବା ପାର୍ଥକ୍ୟକୁ ଅଣଦେଖା କରନ୍ତି। ତେଣୁ ସ୍ୱାଧୀନୋତ୍ତର ଭାରତରେ ଜାତି ଗଠନ ପ୍ରଶ୍ନ ଆବଶ୍ୟକ ମହତ୍ତ୍ୱ ପାଏ ନାହିଁ, ଅସମାହିତ ରହେ। ଆମର ଆଲୋଚନାରେ ଏହି ସାଧାରଣ ସତ୍ୟର ପର୍ଯ୍ୟାଲୋଚନା କରିବା ପାଇଁ ଉଦ୍ୟମ କରାଯିବ।

ଜାତୀୟତା ଆନ୍ଦୋଳନ ଓ ସ୍ୱାଧୀନତା ସଂଗ୍ରାମ ମଧ୍ୟରେ ଥିବା ପାର୍ଥକ୍ୟକୁ ବୁଝିବାକୁ ହେଲେ ଆମେ ସେହି ସମାଜକୁ ଦେଖିବା ଉଚିତ, ଯେଉଁଠି ଆଧୁନିକ କାଳରେ ଉପନିବେଶବାଦ ବା ଅନ୍ୟ ବିଦେଶୀ ଶକ୍ତିର କର୍ତ୍ତୃତ୍ୱ ନ ଥିଲା। ଉଦାହରଣ ସ୍ୱରୂପ, ଇଂଲଣ୍ଡ, ଫ୍ରାନ୍ସ ବା ଏସୀୟ ଶକ୍ତି ଜାପାନ। ଯଦି ସ୍ୱାଧୀନତା ସଂଗ୍ରାମ ଓ ଜାତୀୟତା ଆନ୍ଦୋଳନ ଏକା କଥା ହୋଇଥାନ୍ତା, ସେହିସବୁ ଦେଶରେ ଜାତୀୟତା ଆନ୍ଦୋଳନର ଆବଶ୍ୟକତା ପଡ଼ିନଥାନ୍ତା। ମାତ୍ର ଦେଖାଯାଇଛି ଯେ ଏହିସବୁ ଦେଶର ସମାଜ ଉପନିବେଶବାଦର ଶିକାର ହୋଇଥିବା ଭାରତୀୟ ଓ ଆଫ୍ରିକୀୟ ଦେଶଗୁଡ଼ିକ ତୁଳନାରେ ଅଧିକ ସୁସଂହତ,

ଅଧିକ ସଂଗଠିତ। ଜାପାନ ଓ ଇଂଲଣ୍ଡ ଆଦି ଦେଶ ଭାରତ ତୁଳନାରେ ଆକାରରେ କ୍ଷୁଦ୍ର, ପ୍ରାକୃତିକ ଧନସମ୍ପଦରେ ଊଣା, ପୁଣି ମାନବ ସମ୍ବଳରେ ପଛୁଆ, ମାତ୍ର ଏକ ସଭ୍ୟତା ଓ ସଂସ୍କୃତି ରୂପରେ ଭାରତଠାରୁ ଢେର ଆଗରେ, କାରଣ (ସ୍ୱାଧୀନତା ସଂଗ୍ରାମ ଆବଶ୍ୟକ ହୋଇ ନଥିବା ସତ୍ତ୍ୱେ) ଜାତୀୟତା ଆନ୍ଦୋଳନ ସେଠାରେ ଖୁବ୍ ବଳିଷ୍ଠ। ଅନ୍ୟଥା ଭାରତର ଶିକ୍ଷିତ ବର୍ଗ ସେ ସବୁ ଦେଶରେ ନିଜ ଲାଗି ସମ୍ଭାବନା ଖୋଜନ୍ତେ ନାହିଁ! ସେଇ ମର୍ମରେ ଦେଖିଲେ ରାଷ୍ଟ୍ର ବା ଜାତି ଗଠନ ଲାଗି ହେଉଥିବା ଆନ୍ଦୋଳନ ହେଉଛି ପ୍ରକୃତ ଅର୍ଥରେ ଜାତୀୟତା ଆନ୍ଦୋଳନ।

ଅସଲରେ ପଞ୍ଚଦଶ ଶତାବ୍ଦୀରୁ ୟୁରୋପର ସାମାଜିକ କ୍ଷେତ୍ରରେ ଯେଉଁ ବ୍ୟାପକ ପରିବର୍ତ୍ତନ ଦେଖାଗଲା, ତା'ର ପରିଣାମ ହେଲା ରାଷ୍ଟ୍ରବାଦ ବା ଜାତୀୟତା ଭାବର ଉନ୍ମେଷ। ଫଳରେ ଗୁଡ଼ିବାଦ ଓ ସାମନ୍ତବାଦ ଯାଇ ତା' ସ୍ଥାନରେ ନୂତନ ଚେତନା, ଆଧୁନିକତା ରୂପକଳ୍ପ ପାଇଲା। ଜାତୀୟତାବାଦର ପ୍ରଭାବରେ ଲୋକ ରାଷ୍ଟ୍ରର ଭୂସୀମା ନିର୍ଦ୍ଧାରଣ କଲେ ଏବଂ ସେହି ଭୂ-ସୀମା ଅନ୍ତର୍ଗତ ଧନ, ଜନ, ମାଟି, ପାଣିକୁ ସାମୂହିକ ଭାବେ ଦେଶର, ଜାତିର, ରାଷ୍ଟ୍ରର ଜାତୀୟ ସମ୍ପତ୍ତି ବୋଲି ଦାବି କଲେ। ତେଣିକି ଉକ୍ତ କ୍ଷେତ୍ରର ଭାଷା, ସାହିତ୍ୟ, ଶିଳ୍ପ, ବାଣିଜ୍ୟ, ସଭ୍ୟତା, ସଂସ୍କୃତିକୁ ସୁସଂଗଠିତ ଓ ସୁପରିଚାଳିତ କରିବା ପାଇଁ ଯେଉଁ ଗୋଷ୍ଠୀଗତ ଉଦ୍ୟମ ହେଲା, ତାକୁ ଜାତୀୟତା ଆନ୍ଦୋଳନ ବୋଲି କୁହାଗଲା। ଜାତୀୟତା ଆନ୍ଦୋଳନ ବଳିଷ୍ଠ ହେଲେ ରାଷ୍ଟ୍ର ଓ ଜାତି (ଗୋଟିଏ ରାଷ୍ଟ୍ରର ଜନସମୂହ) ବିଶେଷ ବଳଶାଳୀ ହୁଅନ୍ତି, ତା'ର କର୍ତ୍ତୃତ୍ୱ ଅନ୍ୟ କାହା ଦ୍ୱାରା କ୍ଷତିଗ୍ରସ୍ତ ହେବାର ଭୟ ରହେନାହିଁ ବୋଲି ବିଚାର ପ୍ରକଟ ହେଲା। ଅନେକ ସମୟରେ ନିଜକୁ ଆଗେଇ ନେବା ପାଇଁ ସେଇ ରାଷ୍ଟ୍ର ଅନ୍ୟ ରାଷ୍ଟ୍ର ଓ ଜାତି ଉପରେ ଶୋଷଣ ମଧ୍ୟ କଲା। ଏହି ଐତିହାସିକ ସନ୍ଧିକ୍ଷଣରେ ଭାରତ ଉପରେ ଇଂରେଜମାନେ କର୍ତ୍ତୃତ୍ୱ ଜାହିର କଲେ। ଫଳରେ ସମାନ୍ତରାଳ ଗତିରେ ଇଂଲଣ୍ଡ ଭଳି ଔପନିବେଶିକ ଶକ୍ତି ଆଗେଇଲେ ଏବଂ ଭାରତ ଭଳି ଉପନିବେଶିତ ସମାଜ ପଛେଇ ପଛେଇ ଗଲେ। ଏହି ସଙ୍କଟରୁ ନିବୃତ୍ତି ପାଇବା ପାଇଁ ଭାରତର ସ୍ୱାଧୀନତା ସଂଗ୍ରାମ ଏକ ଅତି ଆବଶ୍ୟକ ଉପାୟ ମନେ ହେଲା। ଅର୍ଥାତ୍ ଜାତି ଗଠନ ସହିତ ଉପନିବେଶବାଦରୁ ମୁକ୍ତି ମଧ୍ୟ ଆମ ଏଠିକାର ଆନ୍ଦୋଳନର ଧ୍ୟେୟରେ ଯୋଡ଼ି ହୋଇଗଲା।

ମାତ୍ର ପରିତାପର ବିଷୟ ଯେ, ଉପନିବେଶବାଦରୁ ନିବୃତ୍ତିକୁ ପ୍ରମୁଖତା ଦେବା ପ୍ରକ୍ରିୟାରେ ଦେଶ ଜାତୀୟତା ଆନ୍ଦୋଳନକୁ ବା ଅନ୍ୟ ଅର୍ଥରେ କହିଲେ ଜାତି ଗଠନ ପ୍ରଶ୍ନକୁ ଯେଉଁ ମହତ୍ତ୍ୱ ଦେବା କଥା, ତାହା ଦେଇ ପାରିଲା ନାହିଁ। ସ୍ୱାଧୀନତା ପ୍ରଶ୍ନ ବ୍ୟାପକ ଜାତୀୟତା ବିମର୍ଶର ଏକ ସଂଭାଗ ମାତ୍ର ହେବା କଥା। ହେଲେ ତାକୁ ଜାତୀୟତାର ମୋଟ ବିମର୍ଶ ବୋଲି ଆମେ ମନେ କଲୁ। ଫଳରେ, ସ୍ୱାଧୀନତା ପ୍ରାପ୍ତି ପରେ ଲୌକିକ ସ୍ତରରେ ଦେଶ ଗଠନ, ଜାତି ନିର୍ମାଣ ପ୍ରଶ୍ନ ଆବଶ୍ୟକ ମହତ୍ତ୍ୱ ଲାଭ କଲା ନାହିଁ। ସାଂପ୍ରତିକ ସମୟର ଅନେକ ସାମାଜିକ ଓ ସାଂସ୍କୃତିକ ସଙ୍କଟକୁ ଏହି ପରିପ୍ରେକ୍ଷୀରେ ଦେଖିଲେ, ହୁଏତ ଆମେ ସମାଧାନ ପାଇ ପାରିବା। 'ଦ୍ୱିତୀୟ ସ୍ୱାଧୀନତା ସଂଗ୍ରାମ' ନାମରେ ବୌଦ୍ଧିକ ଚର୍ଚ୍ଚାକୁ ଆସୁଥିବା ଜାତୀୟତା ଆନ୍ଦୋଳନର ପ୍ରକୃତ ସ୍ୱରୂପକୁ ଦେଖିବା ତେଣିକି ସହଜ ଓ ସ୍ୱାଭାବିକ ହେବ।

ପ୍ରଶ୍ନ ଉଠେ, ଆମର ଜାତୀୟ ନେତୃବର୍ଗ କ'ଣ ସ୍ୱାଧୀନତା ସଂଗ୍ରାମ ବେଳେ ଜାତି ଗଠନ ପ୍ରଶ୍ନକୁ ଅଣଦେଖା କରୁଥିଲେ ? ଏହାର ଉତ୍ତର ହେବ 'ନା'। ମହାତ୍ମା ଗାନ୍ଧି ଯେଉଁ ପ୍ରାଧାନ୍ୟ ଦେଇ ଇଂରେଜ ସରକାରଙ୍କ ସହିତ ଅସହଯୋଗ କରିବାକୁ କହୁଥିଲେ, ସେହି ମାତ୍ରାରେ ପ୍ରାଧାନ୍ୟ ଦେଇ ସାଂପ୍ରଦାୟିକ ସଦ୍‌ଭାବ ରକ୍ଷା ପାଇଁ ଉଦ୍ୟମ କରୁଥିଲେ, ଅସ୍ପୃଶ୍ୟତା ନିବାରଣ ପାଇଁ ଜନଚେତନା ଜାଗ୍ରତ କରୁଥିଲେ ଓ ହଜାର ହଜାର ବର୍ଷ ଧରି ଘର କୋଣରେ ଆବଦ୍ଧ ହୋଇ ରହିଥିବା ଅର୍ଦ୍ଧେକ ସମାଜ ନାରୀ ଜାତିକୁ 'ଆଇନ ଅମାନ୍ୟ'ର ଆଗରେ ରଖୁଥିଲେ। ପାଇଖାନା ସଫାଠାରୁ ଆରମ୍ଭ କରି ସମୟ ନିଷ୍ଠା-କୌଣସିଟି ତାଙ୍କ ପାଇଁ 'କର ବା ମର'ଠାରୁ ଊଣା ମହତ୍ତ୍ୱ ରଖୁ ନଥିଲା। ତାଙ୍କ ମତରେ, ଭାରତ ଯଦି ପଛେଇ ଯାଇଛି, ଉପନିବେଶବାଦର କର୍ତ୍ତୃତ୍ୱାଧୀନ ହୋଇଛି, ତା'ପାଇଁ ଚାଲାକ ଚତୁର ଇଂରେଜମାନେ ଯେତିକି ଦାୟୀ, ଭାରତୀୟମାନଙ୍କର ବିଶୃଙ୍ଖଳ ଭାବ, ମାନସିକ ଦୁର୍ବଳତା ଓ ହୀନମନ୍ୟତା ସେତିକି ମାତ୍ରାରେ ଦାୟୀ। ଭାରତୀୟମାନେ ଯଦି ନିଜର ଅନ୍ତଃଶକ୍ତିକୁ ଅନୁଭବ କରନ୍ତି, ତେବେ ସେମାନେ ଉଭୟ ଅନ୍ତର୍ଶତ୍ରୁ ଓ ବହିର୍ଶତ୍ରୁର ଶୋଷଣରୁ ଏକା ସମୟରେ ନିବୃତ୍ତି ପାଇ ପାରିବେ। ସ୍ୱାଧୀନତା ସଂଗ୍ରାମ ଯଦି ହୁଏ ବହିର୍ଶତ୍ରୁର କବଳରୁ ନିସ୍ତାର ପାଇବାର ମାର୍ଗ, ଜାତୀୟତା ଆନ୍ଦୋଳନ ହେବ ଅନ୍ତର୍ଶତ୍ରୁର ଅତ୍ୟାଚାର ଓ ଶୋଷଣରୁ ବିମୁକ୍ତି ପାଇବାର ଏକ ରାସ୍ତା। ତେଣିକି ଅନ୍ତର୍ଶତ୍ରୁ ଗାଁ ସାହୁକାର ହୁଅନ୍ତୁ ବା ଆମ

ମନର ଜାତିବାଦୀ, ନାରୀ ବିଦ୍ୱେଷୀ ବିଚାର ହେଉ ବା ଆମ ଘର ଚାରିପାଖ ଆବର୍ଜନା ହେଉ, ଅଥବା ସ୍ୱାର୍ଥପରତା ହେଉ। ଏଭଳି ଏକ ବ୍ୟାପକ ଜାତୀୟତା ଆନ୍ଦୋଳନର ଅନ୍ୟତମ ପ୍ରମୁଖ ପ୍ରଣେତା ଥିଲେ ଗାନ୍ଧିଜୀଙ୍କ ପୂର୍ବସୂରୀ ବିବେକାନନ୍ଦ। 'ପ୍ରବୃଦ୍ଧ ଭାରତ', 'ଉତ୍ତିଷ୍ଠିତ ଭାରତ', 'ଦରିଦ୍ର ନାରାୟଣ' କଥା କହିଲା ବେଳେ ସେ କେବେ ଇଂରେଜ ସରକାର ବିରୋଧରେ ସଂଗ୍ରାମ କରିବାକୁ କହୁ ନ ଥିଲେ। ବରଂ ଜାତି ରୂପରେ ନିଜକୁ ପ୍ରସ୍ତୁତ କରିବାକୁ କହୁଥିଲେ। ଇଂରେଜ ସରକାର ବିରୋଧରେ ଲଢ଼ି ନା ସେ ଦୀର୍ଘ କାଳ ଧରି ଜେଲ ଯାଇଥିଲେ, ନା ଫାଶୀଦଣ୍ଡ ପାଇଥିଲେ। ତା' ସତ୍ତ୍ୱେ ଭାରତର ହୃତ ଆତ୍ମଶକ୍ତିକୁ ଜାଗ୍ରତ କରିବାରେ ତାଙ୍କ ଯୋଗଦାନକୁ କେବେ କ'ଣ ଗୌଣ ବୋଲି କହି ହେବ ? ଆଜି ବିବେକାନନ୍ଦ ଓ ଗାନ୍ଧିଙ୍କର ଦେହାନ୍ତର ଅନେକ ଦଶନ୍ଧି ପରେ ଏକବିଂଶ ଶତାବ୍ଦୀରେ ଆମେ କ'ଣ କହିପାରିବା ଯେ ଦେଶ ଗଠନରେ ଗାନ୍ଧିଙ୍କ ତୁଳନାରେ ବିବେକାନନ୍ଦଙ୍କ ଯୋଗଦାନ ଊଣା ପରିମାଣର, କାରଣ କାନ୍ଧିଜୀ ଜେଲ ଯାଇଥିଲେ, ଆତତାୟୀର ଗୁଳିର ଶିକାର ହୋଇଥିଲେ ? ଆଉ ବିବେକାନନ୍ଦ ଜେଲ ଯାଇ ନ ଥିଲେ। ପୁଣି, ଏକଥା ବି କୁହାଯାଇ ନ ପାରେ ଯେ ଗାନ୍ଧିଙ୍କ ତୁଳନାରେ ବିବେକାନଂଦ ଅଧିକ ଯୁଗ ପୁରୁଷ। ଅସଲରେ ଗାନ୍ଧି ବା ବିବେକାନନ୍ଦଙ୍କୁ ଏଠି ପ୍ରତୀକ ରୂପରେ ହିଁ ନିଆଯାଇଛି। ଉପନିବେଶବାଦ ବିରୋଧରେ ଲଢ଼ିବା ଓ ନିର୍ମଳ ଦେଶ ଗଠନ କାମରେ ସମୂହ ଶକ୍ତିର ଉତ୍‌ଥାନ କରିବା ଏକା ମାତ୍ରାରେ ଲୋଡ଼ା ବୋଲି ମାତ୍ର କହିବାକୁ ଏଠାରେ ପ୍ରୟାସ କରାଯାଉଛି।

ଯଦି ନେତୃବର୍ଗ ଜାତିଗଠନ ପ୍ରଶ୍ନକୁ ଊଣା ମନେ କରୁ ନ ଥିଲେ, ତେବେ ସମସ୍ୟା ରହିଲା କେଉଁଠି ? ପ୍ରଥମତଃ, ସବୁ ନେତୃବର୍ଗ ଗାନ୍ଧି ଓ ବିବେକାନନ୍ଦଙ୍କ ପ୍ରତିରୂପ ନ ଥିଲେ। ଅର୍ଥାତ୍ ଅନେକ ନେତୃବର୍ଗ ସ୍ଥାନୀୟ ସ୍ତରରେ ଜାତିଗଠନ ବିମର୍ଶ ରହିତ ସ୍ୱାଧୀନତା ସଂଗ୍ରାମକୁ ହିଁ ପ୍ରମୁଖତା ଦେଉଥିଲେ। ତେଣୁ କେତେକ ସ୍ତରରେ ସ୍ୱାଧୀନତା ସଂଗ୍ରାମରେ ଭାଗ ନେଇଥିବା ନେତା ବି ଗୁଡ଼ିବାଦୀ, ଜାତିବାଦୀ, ସଂପ୍ରଦାୟବାଦୀ ଓ ନାରୀ ବିରୋଧୀ ଏବଂ ସ୍ୱାର୍ଥାନ୍ଧ ହୋଇଥିବାର ଦେଖାଯାଏ। ସ୍ୱାଧୀନତାର ସମୟ ଯେତେ ଆସନ୍ନ ହେଲା (ଯେମିତି ୧୯୩୦-୪୦ ଦଶକ), ଏଭଳି ଫମ୍ପା ଆସ୍ଫାଳନକାରୀ ନେତୃବର୍ଗଙ୍କର ପ୍ରାଦୁର୍ଭାବ ବଢ଼ିଲା ଓ ବିଚାରସମ୍ପନ୍ନ ନିଦା ନେତୃବର୍ଗଙ୍କର ମହତ୍ତ୍ୱ

ଓଣା ହେଲା। ସ୍ୱାଧୀନୋତ୍ତର ଭାରତରେ ତ ସ୍ଥିତି ଏମିତି ଯେ ରାଜନୀତିକ ବର୍ଗ ଜାତି ଗଠନକୁ ଏକ ମହତ୍ତ୍ୱପୂର୍ଣ୍ଣ ବିମର୍ଶ ବୋଲି ବି ଭାବୁ ନାହାନ୍ତି। ରାଜନୀତିର ଅର୍ଥ ହୁଏତ ସରକାରରେ ରହିବା, ଅଥବା ସରକାରର ପ୍ରତ୍ୟେକ କାର୍ଯ୍ୟକ୍ରମକୁ ବିରୋଧ କରିବା ହୋଇଯାଇଛି। ଫଳରେ ଉପରଠାଉରିଆ ଭାବେ ଆମେ ସ୍ୱାଧୀନତା ସଂଗ୍ରାମ ଓ ଜାତୀୟତାର ଗୁଣଗାନ କରନ୍ତି ସିନା, ଅନ୍ତରରେ ତା'ର ମୁଖର ପରିପନ୍ଥୀ ସାଜନ୍ତି। ଏହା ପରିବାରଠାରୁ ଆରମ୍ଭ କି ଆମଲାତନ୍ତ୍ର ଯାଏଁ ସମାଜର ସବୁ ସ୍ତରକୁ ସଂକ୍ରମିତ ହେବା ଫଳରେ ଜାତୀୟ ସଙ୍କଟର ମାତ୍ରା ନିରନ୍ତର ବୃଦ୍ଧି ପାଉଛି। ପଡ଼ୋଶୀ ଓ ବିଦେଶୀ ଆକ୍ରମଣ ନୁହେଁ, ବରଂ ଏହି ସଙ୍କଟ ଯୋଗୁଁ ଯେ ଆମେ ଦିନେ ଜାତୀୟ ବିନାଶର ସମ୍ମୁଖୀନ ହେବୁ-ଏହା ଜଳ ଜଳ କରି ଦୃଶ୍ୟମାନ ହେଉଛି।

ଏଭଳି ସ୍ଥିତିରେ ଦେଶ ଗଠନ ଉଦ୍ଦେଶ୍ୟରେ ଦ୍ୱିତୀୟ ସ୍ୱାଧୀନତା ସଂଗ୍ରାମର ଲୋଡ଼ା ରହିଛି-ଏହା କହିବା ବାହୁଲ୍ୟ। ସେହି ସଂଗ୍ରାମରେ ଗାନ୍ଧି, ଗୋପବନ୍ଧୁ, ବିବେକାନନ୍ଦ, ଭଗତସିଂହ ଭଳି ନେତାର ଖୋଜା ପଡ଼ିବ, ନା ପ୍ରତ୍ୟେକ ବ୍ୟକ୍ତି ନିଜ ନିଜ ସ୍ତରରେ ନେତୃତ୍ୱ ନେବେ ? ନିଜ ମହାଭାରତର ନିଜେ ଗାନ୍ଧି ଗୋପବନ୍ଧୁ  ହେବେ, ନା ଗାନ୍ଧି - ଗୋପବନ୍ଧୁଙ୍କ ଆସିବା ଯାଏଁ ଟାକି ରହିବେ ? କେବଳ ଦୃଶ୍ୟମାନ ହେବାର ଆକାଂକ୍ଷା ନେଇ ସାମାଜିକ ସଂସ୍କାରରେ ଭାଗ ନେବେ, ନା ଅନ୍ତଶକ୍ତିକୁ ଉଜ୍ଜୀବିତ କରିବା ପାଇଁ ଜାତି ଗଠନ କାମ ହାତକୁ ନେବେ ? ଅନ୍ୟ ଶବ୍ଦରେ କହିଲେ ଅନ୍ତର୍ଶତ୍ରୁର ନିପାତ ପାଇଁ ଯଦି ଅନ୍ତଃଶକ୍ତିର ପ୍ରୟୋଗ ହେବ, ତେବେ ବହିର୍ନେତୃତ୍ୱର କ'ଣ ଲୋଡ଼ା ପଡ଼ିବ ? ସମକାଳୀନ ସମୟରେ ଆମ ସମସ୍ତଙ୍କ ପାଇଁ ଏହା କି ଏକ ବିଚାର୍ଯ୍ୟ ପ୍ରଶ୍ନ ନୁହେଁ ?



(ଫେବୃଆରୀ  ୨୦୧୩)

# ଗଣତନ୍ତ୍ରରେ ଏକନାୟକତ୍ୱ

ଭାରତରେ ଇଂରେଜ ଶାସନ ବୋଲି ଯାହା ପରିଚିତ, ତା'ର ଦୁଇଟି ପର୍ଯ୍ୟାୟ ରହିଥିଲା। ପ୍ରଥମଟି ଇଷ୍ଟ ଇଣ୍ଡିଆ କମ୍ପାନି ନାମକ ଏକ ବାଣିଜ୍ୟ କମ୍ପାନି ଅଧୀନରେ, ଯାହା ୧୮୫୭ର ଗଣସଂଗ୍ରାମ ପର୍ଯ୍ୟନ୍ତ ଚାଲିଥିଲା। ଦ୍ୱିତୀୟଟି ଥିଲା 'କ୍ରାଉନ୍ ଶାସନ', ଯାହାର ପ୍ରତ୍ୟକ୍ଷ ନିୟନ୍ତ୍ରଣ ରହିଥିଲା ବ୍ରିଟିଶ ପାର୍ଲାମେଣ୍ଟ ହାତରେ। ଏହା ୧୮୫୮ରୁ ୧୯୪୭ ପର୍ଯ୍ୟନ୍ତ ଚାଲିଥିଲା। ହେଲେ ଏକ ଲାଭଖୋର ବାଣିଜ୍ୟ କମ୍ପାନିର ଶାସନ ଓ ଏକ ଗଣତାନ୍ତ୍ରିକ ସଂସ୍ଥା ପାର୍ଲାମେଣ୍ଟର ଶାସନ ମଧ୍ୟରେ ଯେଉଁ ନିରନ୍ତରତା, ତା'ର ପ୍ରତୀକ ଥିଲା ବଡ଼ଲାଟଙ୍କର ପଦ। କମ୍ପାନି ଅମଳରେ ସେ ଥିଲେ ଜଣେ କର୍ମଚାରୀ ମାତ୍ର। ତାଙ୍କ ଉପରକୁ କମ୍ପାନିର 'ବୋର୍ଡ ଅଫ୍ କଣ୍ଟ୍ରୋଲ' ଏବଂ 'ବୋର୍ଡ ଅଫ୍ ଡାଇରେକ୍ଟରସ୍'। ସେହିଭଳି କ୍ରାଉନ୍ ଅମଳରେ ତାଙ୍କ ଉପରକୁ ଥିଲେ 'ଭାରତ ମନ୍ତ୍ରୀ', ଯିଏ ବ୍ରିଟିଶ୍ କ୍ୟାବିନେଟ୍‌ର ଜଣେ ସଭ୍ୟ। ଭାରତ ମନ୍ତ୍ରୀ ତାଙ୍କ ଦେଶର ପ୍ରଧାନମନ୍ତ୍ରୀଙ୍କ ଠାରେ ଏବଂ ତା' ଉପରକୁ ବ୍ରିଟିଶ୍ ପାର୍ଲାମେଣ୍ଟଠାରେ ଉତ୍ତରଦାୟୀ ରହୁଥିଲେ। ଲୋକସାଧାରଣ ପାର୍ଲାମେଣ୍ଟକୁ ନିଜ ପ୍ରତିନିଧି ପଠାନ୍ତି ଏବଂ ସେହି ଲୋକଙ୍କ କର୍ତ୍ତୃତ୍ୱର ପ୍ରତୀକ ପାର୍ଲାମେଣ୍ଟ ସର୍ବେସର୍ବା- ଏକଥା ତହିଁରୁ ପ୍ରତୀୟମାନ ହୁଏ। ମାତ୍ର ବାସ୍ତବିକତା ହେଲା ଯେ ବଡ଼ଲାଟ ଥିଲେ ଭାରତ ଶାସନର ସର୍ବମୟ କର୍ତ୍ତା, ନିରଙ୍କୁଶ ଶାସକ, ଏକ ନାୟକ, ସମ୍ରାଟ, ଚକ୍ରବର୍ତ୍ତୀ, ବାଦଶାହ ତୁଲ୍ୟ- ଏହି ସ୍ଥିତି ଉଭୟ କମ୍ପାନି ଶାସନ ବେଳେ ଓ କ୍ରାଉନ୍ ଶାସନ ବେଳେ। ଅର୍ଥାତ୍ ଗଣତାନ୍ତ୍ରିକତାର ଖୋଳ ତଳେ ରାଜତନ୍ତ୍ର, ନିରଙ୍କୁଶ ଶାସନ ଓ ଏକନାୟକତ୍ୱ ସୃଷ୍ଟି କରି ସେତେବେଳେ କ୍ଷମତାକୁ କେନ୍ଦ୍ରୀଭୂତ କରାଯାଇଥିଲା।

ବଡ଼ଲାଟଙ୍କୁ ବିରାଟ, ପ୍ରକାଣ୍ଡ, ଅପହଞ୍ଚ କରିବା ପାଇଁ ଇଂରେଜ ଶାସନରେ ନାନା ପରମ୍ପରା ସୃଷ୍ଟି କରାଯାଇଥିଲା। ଭାରତ ସମ୍ବନ୍ଧୀୟ ତତ୍କାଳୀନ ନୀତିନିୟମମାନ ବଡ଼ଲାଟ ପରିଷଦରେ ନିର୍ଦ୍ଧାରିତ ହେଉଥିଲା। ପରିଷଦରେ ବଡ଼ଲାଟଙ୍କର ମନମୁଖୀ ଶାସନ ନ ହେବ ବୋଲି ବହୁସଂଖ୍ୟକ ମତ କଥା ରହିଥିଲା। ମାତ୍ର ବଡ଼ଲାଟଙ୍କୁ ମିଶାଇ ପରିଷଦର ସଭ୍ୟ ଥିଲେ ତିନି। ଅର୍ଥାତ୍

ମାତ୍ର ଜଣେ ସଭ୍ୟଙ୍କର ସମର୍ଥନ ପାଇଲେ ବଡ଼ଲାଟ ନିଜ ନିଷ୍ପତ୍ତି ନେଇ ପାରୁଥିଲେ। ଠିକ୍ ସେହିଭଳି, ୧୯୧୧ରେ କଲିକତାରୁ ଦିଲ୍ଲୀକୁ ରାଜଧାନୀ ସ୍ଥାନାନ୍ତରିତ ହେଲା ଯେତେବେଳେ, ନୂଆ ରାଜଧାନୀରେ ବଡ଼ଲାଟଙ୍କ ପାଇଁ ଏକ ବିରାଟ, ଭବ୍ୟ ଅଟ୍ଟାଳିକାର ଆବଶ୍ୟକତା ପଡ଼ିଲା। ସେତେବେଳେ ମୋଗଲ ବାଦଶାହୀ ଶାସନର ଲାଲକିଲ୍ଲାକୁ ଏଥି ସକାଶେ ନିଆଗଲା ନାହିଁ। ମାତ୍ର ତା'ଠାରୁ ଏକ ଭବ୍ୟ, ମନୋରମ, ଆଧୁନିକ ରୁଚି ସମ୍ପନ୍ନ, ପ୍ରକାଣ୍ଡ ନିବାସ ନିର୍ମାଣ କରାଗଲା। ଅର୍ଥାତ୍ ବଡ଼ଲାଟ ଓ ତାଙ୍କ ନିବାସ ମୋଗଲ ବାଦଶାହଙ୍କ ପରି ସାମନ୍ତବାଦୀ ପରି ଦୃଷ୍ଟିଗୋଚର ହେବା କଥା ନୁହେଁ; ଆଧୁନିକ ମନେ ହେବା କଥା। ଅଥଚ ବାଦଶାହୀ ଠାଣିମାଣିରୁ ତାହା ଅଧିକ ହେବା କଥା। ଅନ୍ୟଥା ଲୋକଙ୍କ ନଜରରେ ତାହା ଭୀତି ସୃଷ୍ଟିକାରୀ, ବିଶାଳ, ଅପହଞ୍ଚ ମନେ ହେବ ନାହିଁ; ଶାସନ କେମିତି କରି ହେବ ଯଦି ଲୋକସାଧାରଣଙ୍କ ମନରେ ତାହା ଭୀତିସଂଚାର କରିବ ନାହିଁ ? ଇଂରେଜ ଶାସନରେ ପ୍ରଥମେ 'ବେଙ୍ଗଲ' ଏବଂ ତା'ପରେ 'ବମ୍ବେ' ଓ 'ମାଡ୍ରାସ' ପ୍ରେସିଡ଼େନ୍‌ସି ଗଠିତ ହୋଇଥିଲା। ଆରମ୍ଭରେ ତିନିଟି ଯାକ ପ୍ରେସିଡ଼େନ୍‌ସି ଓ ତା'ର ପ୍ରଶାସକ ଥିଲେ ସମାନ ସ୍ତରର। ହେଲେ, ପରେ ମନେ କରାଗଲା ଯେ ଭାରତ ସାମ୍ରାଜ୍ୟ ତ ଗୋଟାଏ, ତହିଁରେ ପୁଣି ତିନି ତିନିଟି 'ବାଦଶାହ' (ବଡ଼ଲାଟ) ରହିବେ କେମିତି ? ସେହି ସ୍ଥିତିରେ ଲୋକଙ୍କ ନଜରରେ ପ୍ରେସିଡ଼େନ୍‌ସିର ପ୍ରଶାସକଙ୍କୁ 'ବଡ଼ଲାଟ' ବା 'ଗଭର୍ଣ୍ଣର ଜେନେରାଲ' କୁହାଗଲା ଏବଂ ତାଙ୍କ ତଳେ ରହିଲେ ସାନଲାଟ ବା ଲାଟ, ତାହାକୁ ଇଂରେଜୀରେ 'ଲେଫ୍‌ଟନାଣ୍ଟ ଗଭର୍ଣ୍ଣର ଜେନେରାଲ' ବୋଲି କୁହାଗଲା। ମୋଟ କଥା ହେଲା, ଗଣତାନ୍ତ୍ରିକତାର ଘୋଡ଼ଣି ତଳେ ନିରଙ୍କୁଶ ଶାସନକୁ ଇଂରେଜମାନେ ପ୍ରୋତ୍ସାହିତ କରୁଥିଲେ। ଏହାପଛରେ ଉଦ୍ଦେଶ୍ୟ ଥିଲା ଗୋଟିଏ ପଟେ ଗଣତନ୍ତ୍ରର ଜନନୀ ହେବାର ଗୌରବ ଲାଭ କରିବା ଏବଂ ଅନ୍ୟ ପକ୍ଷରେ ଏକ ନିରଙ୍କୁଶ ଶାସନ ପ୍ରବର୍ତ୍ତନ କରି ଉପନିବେଶବାଦୀ ଆର୍ଥିକ ଦୋହନକୁ ବଳବତ୍ତର କରିବା। ଏକ ପ୍ରକୃତ ଗଣତନ୍ତ୍ରରେ ସାମ୍ରାଜ୍ୟବାଦୀ ଶୋଷଣ ସମ୍ଭବପର ହୋଇପାରେନା। ପୁଣି, ଏକ ସ୍ୱେଚ୍ଛାଚାରୀ, ନିରଙ୍କୁଶ ଶାସନକୁ ବିଶ୍ୱର ସବୁ ଗଣତନ୍ତ୍ର ପ୍ରେମୀଙ୍କର ବିରୋଧ ସହ୍ୟ କରିବାକୁ ପଡ଼େ। ସେହି କାରଣରୁ ଇଂରେଜ ଶାସନର ଏହି ଅଭିନବ ବ୍ୟବସ୍ଥା।

ବଡ଼ଲାଟ ତ ଏକ ଉଦାହରଣ ମାତ୍ର। ଜିଲ୍ଲାମାନଙ୍କରେ ଜିଲ୍ଲାପାଳକୁ ଏବଂ

ଦେଶରେ ୬୦୦ଟି ପ୍ରାୟ ଦେଶୀୟ ରାଜ୍ୟରେ ରାଜାମାନଙ୍କୁ ମଧ୍ୟ ଇଂରେଜ ଶାସନ ବେଳେ ଏକ ରକମର ଏକାଧିପତି ଭାବେ ପ୍ରତିଷ୍ଠା ଦିଆଯାଇଥିଲା। ଏହି ତଥାକଥିତ 'ଏକାଧିପତି'ମାନଙ୍କର ବୈଶିଷ୍ଟ୍ୟ ହେଲା ଯେ ଇଂରେଜ ସରକାରର କର୍ତ୍ତୃତ୍ୱ ଆଗରେ ସେମାନେ ଥିଲେ ଅତି ନ୍ୟୂନ। ମାତ୍ର ଯେଉଁ ଲୋକମାନଙ୍କ ଉପରେ ସେମାନେ ଅଧିପତି ଥିଲେ, ସେହି ଲୋକଙ୍କ ନଜରରେ ସେମାନେ ଥିଲେ ଜଣେ ଜଣେ ବାଦଶାହତୁଲ୍ୟ। ମଧ୍ୟଯୁଗୀୟ ସାମନ୍ତବାଦୀ ବ୍ୟବସ୍ଥାଠାରୁ ଏହା ଥିଲା ଏକ ସମ୍ପୂର୍ଣ୍ଣ ଭିନ୍ନ ବ୍ୟବସ୍ଥା, କାରଣ ସାମନ୍ତବାଦୀ ବ୍ୟବସ୍ଥାରେ ସ୍ଥାନୀୟ ଅଧିପତିର ଉପରିସ୍ଥ ଅଧିପତି ବା ସାମନ୍ତ ଉପରେ ମଧ୍ୟ ଯଥେଷ୍ଟ କର୍ତ୍ତୃତ୍ୱ ରହିଥିଲା।

ଭାରତ ସ୍ୱାଧୀନ ହେଲା ପରେ ଏଭଳି ଫମ୍ପା ଗଣତାନ୍ତ୍ରିକ ବ୍ୟବସ୍ଥାର ରହିବା କଥା ନ ଥିଲା। ସ୍ୱାଧୀନତା ସଂଗ୍ରାମର ଲକ୍ଷ୍ୟ ଥିଲା ବିଦେଶୀ ଶାସନରୁ ନିବୃତ୍ତି ଏବଂ ତା' ସହିତ ଏକ ଗଣତାନ୍ତ୍ରିକ ବ୍ୟବସ୍ଥାର ସ୍ଥାପନା। ଯେଉଁ ସଂଖ୍ୟାରେ ଦେଶର ସବୁ ବର୍ଗର ଲୋକ ସ୍ୱାଧୀନତା ସଂଗ୍ରାମରେ ଭାଗ ନେଇଥିଲେ, ତା'ର ଅମାନ୍ୟ ହୋଇଥାନ୍ତା, ଯଦି ସ୍ୱାଧୀନତା ପରେ ଏଠି ସାଧାରଣତନ୍ତ୍ର ସ୍ଥାପିତ ହୋଇ ନଥାନ୍ତା। ମାତ୍ର ଅବସୋସର କଥା ଯେ ସ୍ୱାଧୀନ ଭାରତରେ ରାଷ୍ଟ୍ରପତିଙ୍କୁ ବଡ଼ଲାଟଙ୍କ ଭବ୍ୟ ଠାଣିମାଣି, ପ୍ରକାଣ୍ଡ ନିବାସ, ଅପହଞ୍ଚ ବ୍ୟକ୍ତିତ୍ୱ ଆଦି ସବୁ କିଛି ଯେମିତି ହସ୍ତାନ୍ତରିତ କରାଗଲା। ସ୍ୱାଧୀନତା ପ୍ରାପ୍ତି ଓ ପ୍ରକୃତ ସାଧାରଣତନ୍ତ୍ର ସ୍ଥାପନ ପାଇଁ ହୋଇଥିବା ବ୍ୟାପକ ଗଣସମ୍ପୃକ୍ତିକୁ ଏହାଦ୍ୱାରା ଭୁଲେଇ ଦିଆଗଲା ନାହିଁ କି ? ଆଜି ସ୍ଥିତି ଏମିତି ଯେ ସ୍ୱାଧୀନ ଭାରତର ଭିତ୍ତି ଯେତେ ଯେତେ ପୁରୁଣା ଓ ସ୍ଥାୟୀ ହେଉଛି, ଆମ ଗଣତାନ୍ତ୍ରିକ ବ୍ୟବସ୍ଥାର ଫମ୍ପାପଣ ସେତେ ସେତେ ଅଧିକ ସୁଦୃଢ଼ ହେଉଛି। ବାହାରକୁ ଆମେ ଏକ ସାର୍ବଭୌମ ଗଣତାନ୍ତ୍ରିକ ରାଷ୍ଟ୍ର, ହେଲେ ଭିତରେ ଭିତରେ ଆମର ସବୁ ଗଣତାନ୍ତ୍ରିକ ଅନୁଷ୍ଠାନମାନ ଘୁଣ ଖାଇଗଲେଣି; ପ୍ରତ୍ୟେକଟିର ସର୍ବେସର୍ବା ଜଣେ ଜଣେ ନିରଙ୍କୁଶ ଅଧିପତି। ପୁଣି, ସବୁ ଅଧିପତିଙ୍କର ନିୟନ୍ତ୍ରଣ ଜଣେ ଏକାଧିପତିଙ୍କ ହାତମୁଠାରେ।

'ଉପନିବେଶିତ ଭାରତ' ଓ 'ସ୍ୱାଧୀନ ଭାରତ'ର ନିରଙ୍କୁଶ ଶାସକ ମଧ୍ୟରେ ଗୋଟାଏ ଉଲ୍ଲେଖନୀୟ ପରିବର୍ତ୍ତନ ହେଲା ଯେ, ସ୍ୱାଧୀନ ଭାରତରେ

ବଡ଼ଲାଟଙ୍କ ନିବାସ, ଠାଣିମାଣି, ଭବ୍ୟତା ଆଦି ହସ୍ତାନ୍ତରିତ କରାଗଲା ରାଷ୍ଟ୍ରପତିଙ୍କୁ, ହେଲେ କ୍ଷମତା ରହିଲା ପ୍ରଧାନମନ୍ତ୍ରୀଙ୍କ ହାତରେ। ଏମିତିରେ ପ୍ରଧାନମନ୍ତ୍ରୀ ହେଲେ ଜଣେ ପାର୍ଲାମେଣ୍ଟ ସଦସ୍ୟ ମାତ୍ର। ୨୦୦୪ରୁ ତାଙ୍କର ଲୋକସଭା ସଦସ୍ୟ ହେବା ବି ଆଉ ପରମ୍ପରା ହୋଇ ରହିଲା ନାହିଁ। ସେ ଯାହାହେଉ, ପ୍ରଧାନମନ୍ତ୍ରୀଙ୍କ ଉପରକୁ ଲୋକସଭାର ସଂଖ୍ୟାଗରିଷ୍ଠ ଦଳ, ତା' ଉପରକୁ ପାର୍ଲାମେଣ୍ଟ। ମାତ୍ର ଅସଲରେ ପ୍ରଧାନମନ୍ତ୍ରୀ ହିଁ ଦେଶର କେନ୍ଦ୍ରୀଭୂତ କର୍ତ୍ତୃତ୍ୱର ଏକନାୟକ। ରାଷ୍ଟ୍ରପତି କିଏ ହେବେ, ଫାଶୀଦଣ୍ଡରେ ଦଣ୍ଡିତ ବ୍ୟକ୍ତିକୁ ଫାଶି ଦିଆଯିବ ନା ନାହିଁ, ରୋଷେଇ ଗ୍ୟାସ୍‌ର ମୂଲ୍ୟ ବୃଦ୍ଧି ହେବ ନା ନାହିଁ, କିମ୍ବା ରେଳଭଡ଼ା ବଢ଼ିବ ନା ନାହିଁ- ସବୁ ନିଷ୍ପତ୍ତି ସେ ନିଅନ୍ତି। ମନ୍ତ୍ରୀ ପରିଷଦ, କ୍ୟାବିନେଟ୍ ନିଷ୍ପତ୍ତି, ପାର୍ଲାମେଣ୍ଟର ସ୍ୱୀକୃତି- ସବୁ କିଛି ଆପେ ଆପେ ଚାଲି ଆସେ, ଯଦି ପ୍ରଧାନମନ୍ତ୍ରୀଙ୍କ ଇଚ୍ଛା ଥାଏ !

୨୦୦୪ରେ କଂଗ୍ରେସ ନେତୃତ୍ୱାଧୀନ ୟୁପିଏ କେନ୍ଦ୍ରରେ କ୍ଷମତାସୀନ ହେବା ପରେ ଆଉ ଏକ ନୂଆ ସ୍ଥିତି ସୃଷ୍ଟି ହୋଇଛି। କୁହାଯାଉଛି ଯେ ୟୁପିଏ ସରକାର ନେଉଥିବା ସବୁ ନିଷ୍ପତ୍ତିରେ ୟୁପିଏ ଅଧ୍ୟକ୍ଷାଙ୍କ ଏକ ନିର୍ଣ୍ଣାୟକ ଭୂମିକା ରହିଛି, ଯିଏ ମନ୍ତ୍ରୀ ପରିଷଦର ଜଣେ ସଭ୍ୟ ମଧ୍ୟ ନୁହନ୍ତି। ଅଜାଣତରେ ଏହା ଏକ ନିରଙ୍କୁଶ କ୍ଷମତାକୁ ଇଙ୍ଗିତ କରୁ ନାହିଁ କି ? ଆମ ଶାସନ ଓ ରାଜନୀତିରେ ଗାନ୍ଧି ପରିବାରର ଗୁରୁତ୍ୱ ସକାଶେ ୟୁପିଏ ଅଧ୍ୟକ୍ଷାଙ୍କ ପୁଅଙ୍କୁ ଗଣମାଧ୍ୟମରେ 'ଯୁବରାଜ' ବୋଲି କୁହାଯାଉଛି। ତେବେ ଦେଶର ସାଂପ୍ରତିକ ରାଜନୀତି ପରିପ୍ରେକ୍ଷୀରେ ଏହା ଆଉ ଅସଂଗତପୂର୍ଣ୍ଣ ମନେ ହେଉନାହିଁ। କାରଣ, ପ୍ରାନ୍ତୀୟ ଓ ସ୍ଥାନୀୟ ସ୍ତରରେ ସବୁ ଦଳରେ ପରିବାରବାଦ ଓ 'ଯୁବରାଜ'ର ପରମ୍ପରା ବେଶ୍ ସୁଦୃଢ଼। ବ୍ୟକ୍ତିଗତ ଭାବରେ ୟୁପିଏ ଅଧ୍ୟକ୍ଷା ହୁଏତ ଜଣେ ଯୋଗ୍ୟ ବ୍ୟକ୍ତି ହୋଇପାରନ୍ତି, ଦେଶ ପାଇଁ ପ୍ରତିବଦ୍ଧ ହୋଇପାରନ୍ତି ! ମାତ୍ର ଜଣେ ବ୍ୟକ୍ତିଙ୍କଠାରେ କ୍ଷମତା କେନ୍ଦ୍ରୀଭୂତ ହେବା ବିପଦଜନକ। ୨୦୧୪ ନିର୍ବାଚନ ପରେ ଯିଏ ବା ଶାସନକୁ ଆସିବ ଏବଂ ସେ କ୍ଷେତ୍ରରେ ଯିଏ ବି ନୂଆ କରି ପ୍ରଧାନମନ୍ତ୍ରୀ ହେବେ ବା ପ୍ରଧାନମନ୍ତ୍ରୀଙ୍କ ନିୟନ୍ତ୍ରଣକାରୀ ହେବେ, ସେ ନିରଙ୍କୁଶତାର ଫାଇଦା ନେଇ ଏକଚ୍ଛତ୍ରବାଦୀ, ସ୍ୱେଚ୍ଛାଚାରୀ ନ ହେବେ ବୋଲି କିଏ କହିବ ? ସେହି ଦୃଷ୍ଟିରୁ ଗଣତାନ୍ତ୍ରିକତାର ମୁଖା ତଳେ କ୍ରମବର୍ଦ୍ଧିଷ୍ଣୁ ବାଦଶାହୀ ପ୍ରବୃତ୍ତିର ଏ ଧାରା ଆଦୌ ସୁସ୍ଥ ନୁହେଁ।

ବର୍ଦ୍ଧିଷ୍ଣୁ ନିରଙ୍କୁଶତାର ଫାଇଦା ନେବାକୁ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀ କିଭଳି ପ୍ରୟାସ କରୁଛନ୍ତି, ତାହା ଜଣାପଡ଼େ ଆଗାମୀ ପ୍ରଧାନମନ୍ତ୍ରୀ ପ୍ରାର୍ଥୀ ଚୟନକୁ ନେଇ ଚାଲିଥିବା ରାଜନୀତିକ ଚର୍ଚ୍ଚାକୁ ଅନୁଧ୍ୟାନ କଲେ। ଏମିତିରେ ଆମ ବ୍ୟବସ୍ଥାରେ ପ୍ରଧାନମନ୍ତ୍ରୀ ପାଇଁ ପ୍ରାର୍ଥୀ ରହନ୍ତି ନାହିଁ। ଲୋକସଭାର ସଂଖ୍ୟାଗରିଷ୍ଠ ଦଳର ନେତାଙ୍କୁ ମନ୍ତ୍ରୀମଣ୍ଡଳ ଗଢ଼ିବା ପାଇଁ ଡାକରା ଆସେ। ଉକ୍ତ ନେତା ହୁଅନ୍ତି ପ୍ରଧାନମନ୍ତ୍ରୀ। ଅର୍ଥାତ୍ ଦଳ, ଦଳର ବିଚାରଧାରା, ନିର୍ବାଚନୀ ଇସ୍ତାହାର-ସେସବୁକୁ ଦେଖି ଲୋକ ନିଜ ପ୍ରତିନିଧି ପଠାନ୍ତି। ମାତ୍ର ଏସବୁକୁ ପଛରେ ପକାଇ ଗଣମାଧ୍ୟମରେ ପ୍ରଥମେ ପ୍ରଧାନମନ୍ତ୍ରୀ ପାଇଁ ପ୍ରାର୍ଥୀ ଚୟନ ଚାଲିଛି। ଜାଣି, ପ୍ରଧାନମନ୍ତ୍ରୀ ସ୍ଥିର ହୋଇଗଲେ ବାକି ସବୁ 'ମେନେଜ୍' ହୋଇଯିବ। ଏହା ସେହି ନିରଙ୍କୁଶ ଶାସନତନ୍ତ୍ର, କେନ୍ଦ୍ରୀଭୂତ କ୍ଷମତାତନ୍ତ୍ରକୁ ଇଙ୍ଗିତ କରୁନାହିଁ କି ? ଦଳ, ବିଚାରଧାରା, ନିର୍ବାଚନୀ ଇସ୍ତାହାର, ସ୍ଥାନୀୟ ପ୍ରାର୍ଥୀ-ସବୁ ଯେମିତି ଗୌଣ, ମିଛିମିଛିକା; କେବଳ ଜଣେ ହେଲେ ମୁଖ୍ୟ, ଠୋସ୍, 'ରିଏଲିଟି'। ସେହି ଠୋସ୍ ଜଣକ ହେଉଛନ୍ତି ପ୍ରଧାନମନ୍ତ୍ରୀ। ସେ ଯଦି ଗାଇଆଳ, ବାକିମାନେ ଗାଈ ଗୋଠ। ଦେଶର ଉନ୍ନତି, ସମୃଦ୍ଧି, ସମ୍ମାନ, ସ୍ୱାଭିମାନ-ସବୁ କିଛି ତାଙ୍କ ଉପରେ ନିର୍ଭର କରେ ! ସେ ନିୟନ୍ତ୍ରଣ କରିବେ, ଅନ୍ୟମାନେ ନିୟନ୍ତ୍ରିତ ହେବେ! ଏହି ପ୍ରବୃତ୍ତି କେବଳ ରାଷ୍ଟ୍ର ସ୍ତରରେ ନା ରାଜ୍ୟ, ଅଞ୍ଚଳ, ଗାଁ ଓ ପରିବାର ସ୍ତରରେ ବି ! ତା ବି ବିଚାର୍ଯ୍ୟ। ବିଡ଼ମ୍ବନାର ବିଷୟ ହେଲା, କଂଗ୍ରେସର ଏକଛତ୍ରବାଦକୁ ଯେଉଁମାନେ ବିରୋଧ କରନ୍ତି, ସେମାନଙ୍କ ମଧ୍ୟରୁ ଅଧିକାଂଶଙ୍କ ଦାବି ଯେ ସେମାନେ ନିଜେ ଭଲ ନିରଙ୍କୁଶ ଶାସକ ହୋଇପାରିବେ। ଏଭଳି ହେଲେ ନିରଙ୍କୁଶତାର ନିରନ୍ତରତାକୁ ରୋକି ହେବନାହିଁ। ବରଂ ତାହା ବୃଦ୍ଧି ପାଇବ। ତେଣିକି 'କମ୍ପାନି' ଶାସନ ଉତ୍ତାରୁ 'କ୍ରାଉନ୍' ଶାସନରେ ନିର୍ବିରୋଧରେ 'ବଡ଼ଲାଟ'ଙ୍କ ରହିଲା ଭଳି ଏକ ଗଣତାନ୍ତ୍ରିକ ବ୍ୟବସ୍ଥାରେ ଏକନାୟକତ୍ୱର ରହିବା ହିଁ ସାର ହେବ- ଏଥିରେ ଦ୍ୱିରୁକ୍ତି ନାହିଁ।



(ମାର୍ଚ୍ଚ ୨୦୧୩)

# ପ୍ରତିମୂର୍ତ୍ତିର ଉଚ୍ଚତା ଓ ଆଞ୍ଚଳିକ ଅସ୍ମିତାର ରାଜନୀତି

ନିକଟରେ ମହାରାଷ୍ଟ୍ର ସରକାର ରାଜକୋଷରୁ ଶହେ କୋଟି ଟଙ୍କା ମଞ୍ଜୁର କରିଛନ୍ତି। ଉଦ୍ଦେଶ୍ୟ ହେଲା ଶିବାଜିଙ୍କର ଏକ ସୁଉଚ୍ଚ ପ୍ରତିମୂର୍ତ୍ତି ସ୍ଥାପିତ ହେବ। ବମ୍ବେ ସହରର ନରିମାନ୍ ପଏଣ୍ଟ୍ ହେଲା ଏକ ପ୍ରମୁଖ ବ୍ୟବସାୟିକ କେନ୍ଦ୍ର। ସେଠାରୁ ମାତ୍ର ଅଢ଼େଇ କିମି ଦୂରରେ ଆରବ ସାଗରସ୍ଥ ଏକ କ୍ଷୁଦ୍ର ଉପଦ୍ୱୀପରେ ପ୍ରତିମୂର୍ତ୍ତିଟିକୁ ସ୍ଥାପିତ କରାଯିବ। ଅସଲରେ ପ୍ରତିମୂର୍ତ୍ତିଟିର ନିର୍ମାଣ ଓ ସ୍ଥାପନାର ଯୋଜନା ଏବର ନୁହେଁ। ପାଞ୍ଚ ବର୍ଷ ତଳର। ଗତ ସାଧାରଣ ନିର୍ବାଚନ ବେଳର। ଏବେ ଆଗକୁ ୨୦୧୪ର ସାଧାରଣ ନିର୍ବାଚନ। ତାକୁ ଆଖି ଆଗରେ ରଖି ବିଭିନ୍ନ 'ଜନପ୍ରିୟ' କାର୍ଯ୍ୟକ୍ରମମାନ ହାତକୁ ନିଆଯାଉଛି। ସେହି କ୍ରମରେ ଶିବାଜିଙ୍କର ପ୍ରତିମୂର୍ତ୍ତି ସ୍ଥାପନା ବି ପ୍ରମୁଖତା ପାଇଛି। ପାଞ୍ଚ ବର୍ଷ ତଳେ ଏଥିପାଇଁ ଖର୍ଚ୍ଚ ଅଟକଳ ଥିଲା ୩୫୦ କୋଟି ଟଙ୍କା। ପୂର୍ବ ଯୋଜନା ଅନୁଯାୟୀ ପ୍ରତିମୂର୍ତ୍ତିର ଉଚ୍ଚତା ହୋଇଥାନ୍ତା ୯୪ ମିଟର, ଅର୍ଥାତ୍ ମଧ୍ୟକାଳର ସୁବିଶାଳ କୀର୍ତ୍ତି କୁତବମିନାରଠାରୁ ପ୍ରାୟ ୨୨ ମିଟର ଅଧିକ ଉଚ୍ଚ। ହେଲେ ଏହି ପାଞ୍ଚ ବର୍ଷ ମଧ୍ୟରେ ଯେହେତୁ ସମସାମୟିକ ସ୍ଥିତି ବଦଳିଛି, ତା' ଅନୁସାରେ ପ୍ରତିମୂର୍ତ୍ତିକୁ ନେଇ ଯୋଜନା ଆଗ ଅପେକ୍ଷା ଦୁଇ ଗୁଣ ବୃଦ୍ଧି ପାଇବ ବୋଲି କଥା ଛିଣ୍ଡିଛି। ନୂଆ ଅଟକଳ ଅନୁସାରେ ଖର୍ଚ୍ଚ ହେବ ଦୁଇ ହଜାର ପଚାଶ କୋଟିରୁ ଅଧିକ ଟଙ୍କା।

ଶିବାଜି ଥିଲେ ସପ୍ତଦଶ ଶତାବ୍ଦୀର ଜଣେ ପ୍ରମୁଖ ଇତିହାସ ପୁରୁଷ। ମଧ୍ୟକାଳରେ, ବିଶେଷ କରି (୧୫ରୁ ୧୭ ଶତାବ୍ଦୀ ମଧ୍ୟରେ) ଯେତେବେଳେ ଆଞ୍ଚଳିକ ଅସ୍ମିତା, ଭାଷା, ସଂସ୍କୃତି, ସାହିତ୍ୟ ଓ ରାଜନୀତି ମାଧ୍ୟମରେ ମୁଣ୍ଡ ଟେକିଲା, ସେ ହେଲେ ମରାଠା ଅସ୍ମିତାର ପ୍ରତୀକ। ମରାଠା ଅସ୍ମିତାର ବୈଶିଷ୍ଟ୍ୟ ହେଲା ଯେ ଏହା ସେଇ ସମୟର କେନ୍ଦ୍ରୀୟ ଶକ୍ତି ରୂପେ ପ୍ରତିଷ୍ଠିତ ମୋଗଲ ବ୍ୟବସ୍ଥାର ବିରୋଧାଚରଣ କରି ପ୍ରତିଷ୍ଠା ପାଇଥିଲା ଏବଂ କେନ୍ଦ୍ରୀୟ ଶକ୍ତିର (ମୋଗଲ ଶକ୍ତିର) ଅଧୋପତନର ସୁଯୋଗ ନେଇ ନିଜେ କେନ୍ଦ୍ରୀୟ ଶକ୍ତି ହେବାର ପ୍ରୟାସ କରିଥିଲା। ଭାରତ ସନ୍ଦର୍ଭରେ ଇଂରେଜ ଶକ୍ତିର ଅଭ୍ୟୁତ୍ଥାନ ଯୋଗୁଁ ମରାଠା ମହତ୍ତ୍ୱାକାଂକ୍ଷାରେ ଭଙ୍ଗା ପଡ଼ିଥିଲା। ଏଭଳି ଏକ ଆଞ୍ଚଳିକ ଶକ୍ତିର, ଯାହା କେନ୍ଦ୍ରୀୟ ଶକ୍ତି ହେବାର ସ୍ୱପ୍ନ ପାଳୁଥିଲା, ତାକୁ ପ୍ରାରମ୍ଭରେ

ନେତୃତ୍ୱ ଦେଇ ଶିବାଜି ଇତିହାସରେ ବୈଶିଷ୍ଟ୍ୟ ଅର୍ଜନ କରନ୍ତି। ଅନ୍ୟ ପକ୍ଷରେ, ସପ୍ତଦଶ ଶତାବ୍ଦୀରେ ମୋଗଲ ଥିଲେ ଏକ ବିଶାଳ ସାମ୍ରାଜ୍ୟ। ଆଜିର ଭାରତବର୍ଷ, ପାକିସ୍ତାନ, ଆପଗାନିସ୍ତାନ ଓ ବାଂଲାଦେଶ ସଭିଏଁ ସାମିଲ ଥିଲେ ସେହି ସାମ୍ରାଜ୍ୟରେ। ଏତେ ବଡ଼ ଏକ ଶକ୍ତି ଆଗରେ ମରାଠା ବୀର ଶିବାଜି ଥିଲେ ଜଣେ ବିଦ୍ରୋହୀ। ମୋଗଲଙ୍କ ଭାଷାରେ 'ସାନ ଉପଦ୍ରବୀ' ! ଅବସୋସର ବିଷୟ ଯେ ବିଂଶ ଶତାବ୍ଦୀରେ ଶିବାଜିଙ୍କର ତଥା ଏକୀକୃତ ମରାଠା ଶକ୍ତିର ଅଧ୍ୟୟନ ବେଳେ ତା'ର ମୋଗଲ ବିରୋଧୀ ଦିଗକୁ ଅଧିକ ମହତ୍ତ୍ୱ ଦିଆଗଲା ଏବଂ ମରାଠା ଆଞ୍ଚଳିକତାର ଅଭ୍ୟୁଦୟ ଦିଗକୁ ପ୍ରାୟତଃ ବିସ୍ମରଣ କରି ଦିଆଗଲା। ମରାଠା ଆଞ୍ଚଳିକତାର ବହୁଳ ଅଧ୍ୟୟନ ହେଲେ ଅନ୍ୟାନ୍ୟ ଆଞ୍ଚଳିକତାକୁ ବୁଝିବା ପାଇଁ ବି ଅବସର ମିଳନ୍ତା। ପୁଣି, ଭାରତର ସଂଘୀୟ ଢାଂଚାର ଐତିହାସିକତାକୁ ବି ଦେଖି ହୁଅନ୍ତା! ଅନ୍ୟ ପକ୍ଷରେ, ମୋଗର ବିରୋଧୀ ଦିଗକୁ ଅଧିକ ମହତ୍ତ୍ୱ ଦିଆଗଲେ, ଏହାର ଏକ ନକାରାତ୍ମକ ପରିଣାମ ହୁଏ ସାଂପ୍ରଦାୟିକତା। ମୋଗଲ କୈନ୍ଦ୍ରିକତାର ବିରୋଧରେ ମରାଠା ଆଞ୍ଚଳିକତାର ସ୍ୱର ଉତ୍ତୋଳନକୁ ମୁସଲମାନ ବିରୋଧରେ ହିନ୍ଦୁର ସଂଗ୍ରାମ ରୂପରେ ଦେଖାଗଲା। ଅର୍ଥାତ୍ ସପ୍ତଦଶ ଶତାବ୍ଦୀର ଇତିହାସ ପୁରୁଷକୁ ଅଧ୍ୟୟନ କରିବା ଲାଗି ବିଂଶ ଶତାବ୍ଦୀର ସାଂପ୍ରଦାୟିକ ଆଇନାକୁ ବ୍ୟବହାର କରାଗଲା। ପରିଣାମତଃ, ଶିବାଜିଙ୍କର ବସ୍ତୁନିଷ୍ଠ ନିରପେକ୍ଷ ଐତିହାସିକ ଅଧ୍ୟୟନ ହୋଇ ପାରିଲା ନାହିଁ। ଏହା ଶିବାଜିଙ୍କର ପ୍ରକୃତ ଐତିହାସିକ ଭୂମିକାକୁ ଊଣା କରିଦେଲା। ସେହି ଦୃଷ୍ଟିରୁ ଦେଖିଲେ, ଶିବାଜିଙ୍କର ଐତିହାସିକ ମହତ୍ତ୍ୱର ବସ୍ତୁନିଷ୍ଠ ଅଧ୍ୟୟନ ଲାଗି ଯଥୋଚିତ ଉଦ୍ୟମ ହେବା କଥା। ମାତ୍ର ଏହି ଲକ୍ଷ୍ୟ ଯେ ନଭଶ୍ଚୁମ୍ବୀ ପ୍ରତିମୂର୍ତ୍ତି ସ୍ଥାପନ ଦ୍ୱାରା ପୂରଣ ହେବ ନାହିଁ ଏହା ଜୋର୍ ଦେଇ କୁହାଯାଇପାରେ। ଡେଣିକି ପ୍ରତିମୂର୍ତ୍ତି ତିଆରି ହେଉ ଓ ତହିଁରେ ଯେତେ ଅଧିକ ଖର୍ଚ୍ଚ ହେଉ, ସେଥିରେ କିଛି ଫରକ ପଡ଼ିବ ନାହିଁ।

ଶିବାଜିଙ୍କ ନଭଶ୍ଚୁମ୍ବୀ ପ୍ରତିମୂର୍ତ୍ତି ସ୍ଥାପନ ନିମନ୍ତେ ମହାରାଷ୍ଟ୍ର ସରକାରଙ୍କ ନିଷ୍ପତ୍ତି ପଛରେ ଏକ ପ୍ରମୁଖ କାରଣ ହେଲା ପଡ଼ୋଶୀ ଗୁଜରାଟ ସରକାରଙ୍କ ଏକ ନିଷ୍ପତ୍ତିର ଚାପ। ଏବେ ନିକଟରେ ଗୁଜରାଟର ମୋଦି ସରକାର ସର୍ଦ୍ଦାର ବଲ୍ଲଭ ଭାଇ ପଟେଲଙ୍କ ଏକ ବିଶାଳ ପ୍ରତିମୂର୍ତ୍ତି ସ୍ଥାପନ ପାଇଁ ପୃଷ୍ଠପୋଷକତା ଦେଉଛନ୍ତି। ପ୍ରସ୍ତାବିତ ପ୍ରତିମୂର୍ତ୍ତିର ଉଚ୍ଚତା ହେବ ୧୮୨ ମିଟର। ନରେନ୍ଦ୍ର ମୋଦିଙ୍କ ନିର୍ବାଚନ ପ୍ରଚାର ପାଇଁ ଏହି ପ୍ରତିମୂର୍ତ୍ତି ଏକ ପ୍ରମୁଖ ଖୋରାକ ହୋଇଛି। 'ଲୌହ ପୁରୁଷ' ରୂପେ ଭାରତୀୟ ରାଜନୀତିରେ ଖ୍ୟାତିପ୍ରାପ୍ତ ସର୍ଦ୍ଦାର ପଟେଲଙ୍କ

ପ୍ରତିମୂର୍ତ୍ତି ନିର୍ମାଣ ପାଇଁ ମୋଦି ନିର୍ବାଚନୀ ସଭା ମାନଙ୍କରେ ବିଭିନ୍ନ ରାଜ୍ୟରୁ ଲୁହା ସଂଗ୍ରହ କରୁଛନ୍ତି। ଜାଣି ସଂଗୃହୀତ ଲୁହା ଖଣ୍ଡକୁ ଖଣ୍ଡ ଯୋଡ଼ି ମୋଦି ନିଜେ ଲୌହକାର ସାଜି ସୁଉଚ୍ଚ ମୂର୍ତ୍ତି ନିର୍ମାଣ କରିଦେବେ ଏବଂ ସେହି ପ୍ରକ୍ରିୟାରେ ଆପଣା ଭିତରର ଲୌହ ପୁରୁଷତ୍ୱକୁ ଭାରତୀୟ ରାଜନୀତିରେ ପ୍ରତିପାଦିତ କରିବେ !

ଇତିହାସକୁ ଯଦି ଅଣ୍ଡାଳାଯାଏ, ୧୯୧୫ରେ ମହାତ୍ମା ଗାନ୍ଧି ଦକ୍ଷିଣ ଆଫ୍ରିକାରୁ ଭାରତକୁ ପ୍ରତ୍ୟାବର୍ତ୍ତନ କଲେ; ଜାତୀୟତା ସଂଗ୍ରାମରେ ସକ୍ରିୟ ହେଲେ। ସେ ରହିଲେ ସାବରମତି ଆଶ୍ରମରେ, ଯାହାକୁ ତାଙ୍କ ଜନ୍ମଭୂମି ଗୁଜରାଟର ଅହମଦାବାଦଠାରେ ସ୍ଥାପିତ କରାଗଲା। ଏମିତିରେ ଦିଲ୍ଲୀରେ ଇଂରେଜ ସରକାରଙ୍କ ରାଜଧାନୀ ଘୋଷିତ ହୋଇଥିଲା। ଇଂରେଜ ଶାସନର ବିକଳ୍ପ ପାଇଁ ଗାନ୍ଧିଙ୍କୁ ଆଡ୍ଡା ଖୋଜିବା କଥା ଦିଲ୍ଲୀରେ। ମାତ୍ର ସେ ଦିଲ୍ଲୀଠାରୁ ବହୁ ଦୂରରେ ସ୍ଥିତ ଆଞ୍ଚଳିକ କେନ୍ଦ୍ର ଅହମଦାବାଦକୁ ଚୟନ କଲେ। ୧୯୧୮ରେ ସେ ଗୁଜୁରାଟର ଖେଡ଼ା ଜିଲ୍ଲାରେ କୃଷକ ଆନ୍ଦୋଳନ କଲେ, ଯାହାକୁ ପରବର୍ତ୍ତୀ ସମୟରେ (୧୯୨୦-୨୨)ରେ ଦେଶବ୍ୟାପୀ ଆରମ୍ଭ ହୋଇଥିବା ଅସହଯୋଗ ଆନ୍ଦୋଳନର 'ଡ୍ରେସ୍ ରିହରସାଲ' ବା ପ୍ରସ୍ତୁତି ପର୍ବ ରୂପେ ଦେଖାଯାଏ। ୧୯୨୮ରେ ପୁଣି ସେହି ଗୁଜୁରାଟର ବର୍ଦ୍ଦୋଲିଠାରେ ସତ୍ୟାଗ୍ରହ ହୋଇ ଆଇନ ଅମାନ୍ୟ ଆନ୍ଦୋଳନକୁ ବାଟ ଦେଖାଇଲା।

୧୯୧୮ରୁ ୧୯୪୭ ମଧ୍ୟରେ ଆମେ ଗାନ୍ଧିଙ୍କ ନାୟକତ୍ୱକୁ ଦେଖନ୍ତି, କିନ୍ତୁ ଜାତୀୟ କଂଗ୍ରେସ ଭିତରେ ଓ ବାହାରେ ତାଙ୍କ ନେତୃତ୍ୱ ପ୍ରତି ହୋଇଥିବା ପ୍ରବଳ ବିରୋଧକୁ ଦେଖି ପାରନ୍ତି ନାହିଁ। ଗାନ୍ଧି ନେତୃତ୍ୱ ବା ଗାନ୍ଧି ବିଚାର ବିରୋଧରେ କେବେ ଜବାହରଲାଲ ନେହରୁ ଓ କେବେ ସୁଭାଷ ବୋଷ୍ ତ ଆଉ କେବେ ବାମପନ୍ଥୀ କମ୍ୟୁନିଷ୍ଟ ଓ ଦକ୍ଷିଣପନ୍ଥୀ ସାଂପ୍ରଦାୟିକମାନେ ଠିଆ ହେଉଥିଲେ। ଜାଣି, ଅନବରତ ଗାନ୍ଧିଙ୍କୁ ପ୍ରତିରୋଧର ଖଣ୍ଡାଧାରରେ ଚାଲି ଭାରତୀୟ ରାଜନୀତିକୁ ଦିଗ୍‌ଦର୍ଶନ ଦେବାକୁ ହୋଇଛି। ଏହି ସମସ୍ତ ପ୍ରତିକୂଳ ସ୍ଥିତିରେ ଗାନ୍ଧିଙ୍କର ଅଭିନ୍ନ ସହଯୋଗୀ ଥିଲେ ସର୍ଦ୍ଦାର ପଟେଲ, ଯିଏ ନିଜ ଟାଙ୍ଗରା ମୁଣ୍ଡରେ ସର୍ବଦା ମହାତ୍ମାଙ୍କ ଲାଗି ବର୍ମ ସାଜିଥିଲେ। ତାଙ୍କ ନିରନ୍ତର ସହଯୋଗ ଓ ଅକୁଣ୍ଠ ସମର୍ଥନ ବିନା ଗାନ୍ଧି ଯେ ସହଜରେ ମହାତ୍ମା ହୋଇ ପାରିନଥାନ୍ତେ, ଏହା ଅନସ୍ୱୀକାର୍ଯ୍ୟ। ୧୯୪୬-୪୭ରେ ପୁଣି ସେହି ପଟେଲ ଲୌହପୁରୁଷ ସାଜି ୬୦୦ ପ୍ରାୟ ଦେଶୀୟ ରାଜ୍ୟକୁ ଭାରତୀୟ ସାଧାରଣତନ୍ତ୍ରରେ 'ସାମ, ଦାନ,

ଦଣ୍ଡ, ଭେଦ' ନୀତି ପ୍ରୟୋଗ କରି ସମ୍ମିଶ୍ରିତ କରାଇଲେ। ଏଭଳି ଜଣେ ଲୌହପୁରୁଷଙ୍କୁ କେବଳ ମୂର୍ତ୍ତି କରି ଗୁଜରାଟରେ ସୀମିତ କରି ଦେବା ମାନେ ଶିବାଜିଙ୍କୁ କେବଳ ଜଣେ ମରାଠା ନେତା ବା ହିନ୍ଦୁ ନେତା ସ୍ତରରେ ସଂକୀର୍ଣ୍ଣ କରି ଦେଲା ଭଳି କଥା ହେବ। ଅନୈକ୍ୟ ମଧ୍ୟରେ ଐକ୍ୟ, ଆଞ୍ଚଳିକତା ମଧ୍ୟରେ ମହାଭାରତୀୟତା ଓ ମହାଭାରତୀୟତା ମଧ୍ୟରେ ଆଞ୍ଚଳିକତାର ବୀଜ ଖୋଜିବାର ଯେଉଁ ଗଣସଂଘୀୟ ଦୃଷ୍ଟି (ଇଂରେଜୀରେ କହିଲେ ଫେଡ଼େରାଲ୍ ଏବଂ ରିପବ୍ଲିକାନ୍ ଭିଜନ୍), ତା'ର ଯଦି ଆଦ୍ୟ ରୂପକାର ହୁଅନ୍ତି ଶିବାଜି, ତେବେ ତା'ର ଗୁଜରାଟୀ ସଂସ୍କରଣ ଓ ଉତ୍ତରାଧିକାରୀ ହେବେ ଗାନ୍ଧି ଓ ସର୍ଦ୍ଦାର ପଟେଲ। ଦୁଃଖର କଥା ଯେ ଗୁଜରାଟରେ ସର୍ଦ୍ଦାର ପଟେଲଙ୍କୁ ଏବେ ଗାନ୍ଧିଠାରୁ ମଧ୍ୟ ଉଚ୍ଚା କରି ଦେଖାଯାଉଛି। ଏହି ଇତିହାସ ପୁରୁଷମାନଙ୍କୁ ହିନ୍ଦୁ ନେତା, ମୁସଲମାନ ବିରୋଧୀ ନେତା ବା ଏକ ନିର୍ଦ୍ଦିଷ୍ଟ ଅଞ୍ଚଳର ନେତାରେ ସୀମିତ କରି ଦିଆଯାଉଛି। ଏହାର ବିଶଦ ଓ ବ୍ୟାବହାରିକ ଅର୍ଥ ହେବ ବିଲୁଆ ଖୁଆଡ଼ରେ ବାଘ, ସିଂହକୁ ଭର୍ତ୍ତି କରିଦେବା ଭଳି।

ଯେଉଁ ନେତାମାନେ କୌଣସି ଇତିହାସ ପୁରୁଷଙ୍କର କେବଳ ସୁଉଚ୍ଚ ପ୍ରତିମୂର୍ତ୍ତି ସ୍ଥାପନ କରି ଜନମତର ପ୍ରବାହକୁ ନିଜ ଆଡ଼କୁ କରିଦେବେ ବୋଲି ଆଶା ବାନ୍ଧନ୍ତି, ସେମାନେ ସାଧାରଣ ଜନସମାଜକୁ ମୂର୍ଖ, ଭକୁଆ ମନେ କରନ୍ତି କି ? ଲୋକଙ୍କର ବୁଦ୍ଧିମତ୍ତାକୁ ସେମାନେ ଏକ ସଂକୀର୍ଣ୍ଣ ଖୁଆଡ଼ରେ ସୀମିତ ଥିବାର ଦେଖନ୍ତି କି ? ଏହା ବି ଏକ ବିଚାର୍ଯ୍ୟ ପ୍ରଶ୍ନ।

ଶିବାଜି ଓ ସର୍ଦ୍ଦାର ପଟେଲଙ୍କ ପ୍ରତିମୂର୍ତ୍ତିକୁ ବହୁ ବ୍ୟୟ କରି ଉଚ୍ଚରୁ ଉଚ୍ଚତର କରିବା ପଛର ଉଗ୍ର ପ୍ରତିଯୋଗିତା ଆଉ ଏକ ମହତ୍ତ୍ୱପୂର୍ଣ୍ଣ ଐତିହାସିକ ଦିଗକୁ ଦେଖିବାରେ ବି ସାହାଯ୍ୟ କରେ। ଆମେ ଜାଣୁ, ମଧ୍ୟ ଯୁଗରେ ପ୍ରାନ୍ତୀୟ ସ୍ତରରେ ରାଜ୍ୟ ଗୁଡ଼ିକର ଉଦୟ ସହିତ ତାଳ ଦେଇ ଅନେକ ଭବ୍ୟ ମନ୍ଦିର/ ମସ୍‌ଜିଦ୍‌ର ନିର୍ମାଣ ହୋଇଥିଲା। ଦେବାଳୟ/ ପୂଜାଳୟର ନିର୍ମାଣ ପଛରେ କ'ଣ ଅନ୍ୟତମ ପ୍ରମୁଖ ଉଦ୍ଦେଶ୍ୟ ଥିଲା ଉକ୍ତ ରାଜ୍ୟଗୁଡ଼ିକର ଭିତ୍ତିକୁ ସୁଦୃଢ଼ କରିବା ? ମନ୍ଦିରର ଭବ୍ୟତା ଓ ବିଶାଳତା କ'ଣ ବିଶୁଦ୍ଧ ଭକ୍ତିଭାବ ପରିବର୍ତ୍ତେ ରାଜାମାନଙ୍କ ମଧ୍ୟରେ ଥିବା ପାରସ୍ପରିକ ପ୍ରତିଦ୍ୱନ୍ଦ୍ୱିତାର ଦ୍ୟୋତକ ? ସେତେବେଳେ ଅବଶ୍ୟ ଗଣତନ୍ତ୍ର ନ ଥିଲା, ଭୋଟ ପାଇବା ଲାଗି ପ୍ରତିଯୋଗିତାର ଦାବି ନ ଥିଲା। ତା' ସତ୍ତ୍ୱେ ଭବ୍ୟ ମନ୍ଦିର ନିର୍ମାଣ କରି ରାଜ-ବିମୁଖ ଜନ ପ୍ରବାହକୁ ରାଜା କେଉଁଣ ନିଜ ଆଡ଼କୁ ଆଉଜେଇବାର ଅଭିପ୍ରାୟ ରଖୁଥିଲେ ? ମନ୍ଦିରର ଭବ୍ୟତା ପଛରେ ଧର୍ମନିଷ୍ଠା କମ୍, ପୃଷ୍ଠପୋଷକଙ୍କର ଧନ ଗର୍ବ ଅଧିକ

ରହିଥିଲା ? ମନ୍ଦିରର ଭବ୍ୟତା କ'ଣ ଅନ୍ୟଥା 'କ୍ଷୁଦ୍ର' ବା ଆଞ୍ଚଳିକ ଗଣା ହେଉଥିବା ଦେବଦେବୀଙ୍କୁ ବି ପ୍ରମୁଖ ଦେବଦେବୀ ସ୍ତରକୁ ଉନ୍ନୀତ କରୁଥିଲେ ? ଅନ୍ୟ ଶବ୍ଦରେ କହିଲେ, ଭବ୍ୟ ମନ୍ଦିରର ପ୍ରତିଷ୍ଠା ପୂର୍ବରୁ କ'ଣ ବିଭିନ୍ନ ଦେବଦେବୀଙ୍କ ମଧ୍ୟରେ କୌଣସି ଅନୁକ୍ରମ ବା ଇଂରେଜୀରେ କହିଲେ hierarchy ନ ଥିଲା ? ଧନାଢ୍ୟ ବର୍ଗର ପୃଷ୍ଠପୋଷକତା ଅଥବା ପୃଷ୍ଠପୋଷକତାର ଅଭାବ ହିଁ କ'ଣ ଏକ ନିର୍ଦ୍ଦିଷ୍ଟ ଦେବତା ବା ଦେବତୀଙ୍କୁ ମୁଖ୍ୟ ବା ଗୌଣ କରି ଦେଉଥିଲା ? ଯଦି ହଁ, ଏଥିରୁ କ'ଣ ସିଦ୍ଧ ହୁଏ ନାହିଁ ଯେ ସେତେବେଳର ଦେବାଳୟ ସ୍ଥାପନ ବି ସମକାଳୀନ ସମୟର ପ୍ରତିମୂର୍ତ୍ତି ସ୍ଥାପନ ଭଳି ରାଜନୀତି ପ୍ରେରିତ ଥିଲା ? ସେ କ୍ଷେତ୍ରରେ ଆଜି ଦେବଦେବୀ ଓ ଦେବାଳୟ ନାଁରେ ନିଜ ନିଜ ମଧ୍ୟରେ କଳିଗୋଳ ଭିଆଇବା କି ଏକ ଅହେତୁକ ବିଚ଼ାର ?

ପ୍ରତିମୂର୍ତ୍ତି ସ୍ଥାପନ ହେଲା ସମକାଳୀନ ସମୟର ଏକ ଶସ୍ତା ରାଜନୀତି। ଅତୀତର ଇତିହାସକୁ ଅଣ୍ଡାଳିବାକୁ ବି ତାହା ଦୃଷ୍ଟି ପ୍ରଦାନ କରେ। ପ୍ରାୟତଃ ପୃଷ୍ଠପୋଷକଙ୍କର ବୈଚ଼ାରିକ ସଂକୀର୍ଣ୍ଣତାକୁ ପ୍ରତିଫଳିତ କରିବା ଲାଗି ତାହା ଆବଶ୍ୟକ ସାଧନ ହୋଇଥାଏ। ପଡ଼ୋଶୀ ରାଜ୍ୟକୁ, ଅନ୍ୟର ଧର୍ମକୁ ତଥା ଇତିହାସ ପୁରୁଷଙ୍କୁ ପ୍ରତିଦ୍ୱନ୍ଦୀ ରୂପରେ ପ୍ରଦର୍ଶିତ କରି ଏହି ଧରଣର ସଂକୀର୍ଣ୍ଣତା ଦୃଢ଼ ମୂଳ ହୁଏ। ପରିଣାମ ସ୍ୱରୂପ, ସପ୍ତଦଶ ଶତାବ୍ଦୀର ଶିବାଜି ବିଂଶ ଶତାବ୍ଦୀର ପଟେଲଙ୍କ ପ୍ରତିଦ୍ୱନ୍ଦ୍ୱୀ ରୂପେ ପେଶ୍ ହୁଅନ୍ତି। ଅଯଥାରେ ହିନ୍ଦୁ ଭାବରେ ତାଙ୍କୁ ମୁସଲମାନଙ୍କର ତଥା ମୋଗଲ ମାନଙ୍କର ପ୍ରତିଦ୍ୱନ୍ଦ୍ୱୀ ରୂପେ ବାଡ଼ି ଆଗରୁ ଆମେ ସମଧରଣର ଐତିହାସିକ ତ୍ରୁଟି କରିଛନ୍ତି। ମହାରାଷ୍ଟ୍ର ଓ ଗୁଜରାଟରେ ପ୍ରତିମୂର୍ତ୍ତି ସ୍ଥାପନର ରାଜନୀତିକୁ ବିଶ୍ଳେଷଣ କରିବା ପ୍ରକ୍ରିୟାରେ ଯଦି ଆମେ ଇତିହାସକୁ ଏହି ମର୍ମରେ ବୁଝି ପାରିଲେ, ବର୍ତ୍ତମାନ ପାଇଁ ତାହା କ'ଣ ଏକ ବଡ଼ ଉପଲବ୍ଧି ହେବ ନାହିଁ ? ଇତିହାସ ପାଠ କ'ଣ ପ୍ରାସଙ୍ଗିକ ଓ ଯୁଗୋପଯୋଗୀ ହେବ ନାହିଁ ?

ଗୁଜରାଟ ଓ ମହାରାଷ୍ଟ୍ର ପରି ଓଡ଼ିଶା ମଧ୍ୟ ଏକ ଆଞ୍ଚଳିକ କ୍ଷେତ୍ର। ଆମର ଏଠି ମଧ୍ୟ ଭୂମିପୁତ୍ରମାନଙ୍କ ପାଇଁ ମରଣୋତ୍ତର ପୁରସ୍କାର ଆଦି ଦାବି କରି ଅସ୍ମିତାର ରାଜନୀତି କରାଯାଏ, ଯାହା ବୈଚ଼ାରିକ ଆଲୋଚ଼ନାର ମହତ୍ତ୍ୱକୁ ହାଲୁକା କରିଦିଏ। ଏଭଳି ସଂଧିକ୍ଷଣରେ ବୌଦ୍ଧିକ ବର୍ଗ ମୁହଁ ଖୋଲିବା କଥା। ଅନ୍ୟଥା ଅସ୍ମିତାର ପ୍ରସଂଗ ମୂର୍ତ୍ତି ଭଳି ସ୍ଥାଣୁ ହୋଇଯିବ।



(ଫେବୃଆରୀ ୨୦୧୪)

# କେବଳ ମଧ୍ୟମ ପନ୍ଥା ହିଁ ତିଷ୍ଠିବ

୨୦୧୪ର ସାଧାରଣ ନିର୍ବାଚ଼ନରେ ଅନେକ ଦଳ, ହେଲେ ପ୍ରମୁଖ କେନ୍ଦ୍ରବିନ୍ଦୁ ହେଲେ କଂଗ୍ରେସ ଓ ବିଜେପି ଦଳ। ଏହାର ପ୍ରମାଣ ହେଲା ଯେ ନିର୍ବାଚ଼ନ ଫଳାଫଳ ଯାହା ହେଉ ନା କାହିଁକି, ଏ ଦୁଇ ଦଳ ମଧ୍ୟରୁ ଗୋଟାକର ସହଯୋଗ ଓ ସମ୍ପୃକ୍ତି ବିନା କେନ୍ଦ୍ରରେ ସରକାର ଗଠନ ସମ୍ଭବ ହେବ ନାହିଁ। ସ୍ୱାଧୀନୋତ୍ତର ଭାରତରେ ଅଧିକାଂଶ ସମୟ କଂଗ୍ରେସ ଦଳ କେନ୍ଦ୍ରରେ ସରକାର ଗଢ଼ିଛି। ମାତ୍ର ଯେତେବେଳେ ଏହା ଗଢ଼ି ନାହିଁ, ସେତେବେଳେ ବିଜେପିର ସହଯୋଗ ଲୋଡ଼ା ପଡ଼ିଛି। ଅର୍ଥାତ୍ ଆମର ବହୁଦଳୀୟ ଗଣତାନ୍ତ୍ରିକ ବ୍ୟବସ୍ଥା ରହିଥିବା ସତ୍ତ୍ୱେ, ଦେଶର ରାଜନୀତି ସ୍ୱତଃ ଦ୍ୱିଦଳୀୟ ହୋଇପଡ଼ିଛି।

ଭାରତ ହେଲା ଏକ ବିବିଧତାର ଦେଶ। ଉପର ଠାଉରିଆ ଭାବେ ବାହାରୁ ଦେଖିଲେ କହିହେବ-ବିଡ଼ମ୍ବନାର ଦେଶ। ଗୋଟିଏ ପକ୍ଷରେ, କେନ୍ଦ୍ରରେ ସରକାର ଗଠନ ପାଇଁ ଦୁଇଟି କେନ୍ଦ୍ରୀୟ ଦଳ ମଧ୍ୟରୁ ଗୋଟାକର ସମ୍ପୃକ୍ତି ଅପରିହାର୍ଯ୍ୟ, ତେଣିକି ତାହା କଂଗ୍ରେସ ହେଉ ବା ବିଜେପି। ମାତ୍ର ଅନ୍ୟପକ୍ଷରେ ଦେଶର ଅନେକ ପ୍ରମୁଖ ରାଜ୍ୟରେ ଏହି ଉଭୟ ଦଳ ମଧ୍ୟରୁ କାହାରି ଉପସ୍ଥିତି ନାହିଁ ବରାବର। ଦେଶର ସବୁଠାରୁ ଅଧିକ ଜନବହୁଳ ଉତ୍ତରପ୍ରଦେଶ ଓ ବିହାର ଏବଂ ଅନ୍ୟ ମହତ୍ତ୍ୱପୂର୍ଣ୍ଣ ରାଜ୍ୟ ପଶ୍ଚିମବଙ୍ଗ, ତାମିଲନାଡୁ ଓ ଓଡ଼ିଶାରେ ଏହି ଉଭୟ ଦଳର ସ୍ଥିତି ନଥିଲା ଭଳି। ଅର୍ଥାତ୍ ଉଲ୍ଲିଖିତ ରାଜ୍ୟ ଗୁଡ଼ିକରେ ପ୍ରାଦେଶିକ ସରକାର ଗଠନରେ ନା କଂଗ୍ରେସର, ନା ବିଜେପିର କୌଣସି ମହତ୍ତ୍ୱପୂର୍ଣ୍ଣ ଭୂମିକା ରହିଥାଏ। ଉଭୟ ଦଳ ଏହି ରାଜ୍ୟ ଗୁଡ଼ିକରେ ଆଞ୍ଚଳିକ ଦଳ ଉପରେ ନିର୍ଭରଶୀଳ।

କଂଗ୍ରେସ ଓ ବିଜେପି ମଧ୍ୟରେ ଏକ ମୂଳ ପାର୍ଥକ୍ୟ ହେଲା ଯେ କଂଗ୍ରେସ ଦଳ ମଧ୍ୟମପନ୍ଥୀ ଏବଂ ବିଜେପି ଦକ୍ଷିଣପନ୍ଥୀ। ଏ ଦୁଇ ବିଚ଼ାରଧାରାକୁ ଓ ତାଙ୍କ ମଧ୍ୟରେ ଥିବା ପାର୍ଥକ୍ୟକୁ ବୁଝିବା ଲାଗି ଆମକୁ ବାମପନ୍ଥୀଙ୍କୁ ମଧ୍ୟ ଆଲୋଚ଼ନାରେ ସ୍ଥାନ ଦେବାକୁ ହେବ। କମ୍ୟୁନିଷ୍ଟ ଓ ସୋସିଆଲିଷ୍ଟମାନେ ହେଲେ ବାମପନ୍ଥୀ। ଅର୍ଥାତ୍ ସାଂପ୍ରତିକ ରାଜନୀତିରେ ତିନିଟି ବିଚ଼ାର-ବାମପନ୍ଥୀ,

ଦକ୍ଷିଣପନ୍ଥୀ ଓ ମଧ୍ୟମପନ୍ଥୀ। ଉଭୟ ବାମପନ୍ଥୀ ଓ ଦକ୍ଷିଣପନ୍ଥୀଙ୍କ ମଧ୍ୟରେ ପୁଣି ଅତିବାଦୀ ଅଛନ୍ତି। ମୋଟାମୋଟି ଭାବେ କହିଲେ, ବାମପନ୍ଥୀ ସମାଜରେ ତ୍ୱରିତ୍ ପରିବର୍ତ୍ତନ ଲୋଡ଼େ, ସମାଜର ତଳ ଓ ଶୋଷିତ ବର୍ଗର ପକ୍ଷ ନିଏ ଏବଂ ସମାଜରେ କର୍ତ୍ତୃତ୍ୱ ବିସ୍ତାର କରି ସାରିଥିବା ଗୋଷ୍ଠୀକୁ କ୍ଷମତାରୁ ଓହରିଯିବାକୁ ବାଧ୍ୟ କରେ। ଏହାର ବିପରୀତ, ଦକ୍ଷିଣପନ୍ଥୀ ଗତାନୁଗତିକତାରେ ବିଶ୍ୱାସ କରେ, ସମାଜର ଉଚ୍ଚ ବର୍ଗର ପକ୍ଷ ନିଏ ଏବଂ ସମାଜ ପରିଚାଳନା ପାଇଁ ଉଚ୍ଚ ବର୍ଗର ନେତୃତ୍ୱକୁ ଅପରିହାର୍ଯ୍ୟ ମନେ କରେ। ବିଡ଼ମ୍ବନା ଯେ, ବାମପନ୍ଥୀଙ୍କ ପରି ଦକ୍ଷିଣପନ୍ଥୀ ବି ନିଜକୁ ସମାଜର ତଳ ବର୍ଗର କାର୍‌ପଟଦାର ବୋଲି ଦାବି କରେ, କାରଣ ଭୋଟ ରାଜନୀତିରେ ବହୁସଂଖ୍ୟକ ଦଳ ଓ ମଳିମୁଣ୍ଡିଆ ବର୍ଗକୁ ଖୋଲାଖୋଲି ଉପେକ୍ଷା କରିବା ଏକ ଆତ୍ମଘାତୀ କାର୍ଯ୍ୟ। ଏ ଦୁହିଁଙ୍କଠାରୁ ଭିନ୍ନ ମଧ୍ୟମପନ୍ଥୀ ବିଚାର ଓ ଦଳ ସମସ୍ତ ବର୍ଗଙ୍କୁ ସାଙ୍ଗରେ ନେଇ ଆଗକୁ ବଢ଼ିବାକୁ ତଥା ସମାଜରେ ସ୍ୱ-କର୍ତ୍ତୃତ୍ୱ ବଜାୟ ରଖିବାକୁ ଉଦ୍ୟମ କରେ। ଏହା ପରିବର୍ତ୍ତନ ଚାହେଁ, ମାତ୍ର ତ୍ୱରିତ୍ ପରିବର୍ତ୍ତନ ନୁହେଁ। ଏହା ଗତାନୁଗତିକତା ଓ ପାରମ୍ପରିକତାର ସମ୍ମାନ କରେ। ବର୍ଗୀୟ ଦୃଷ୍ଟିକୋଣରୁ ଦେଖିଲେ, ଉଭୟ ତଳ ବର୍ଗ ଓ ଉଚ୍ଚ ବର୍ଗ ପାଇଁ ଏହା କିଛି ଭଲ, କିଛି ମନ୍ଦ। ରାଜନୀତିରେ ତିନିଟି ଯାକ ପନ୍ଥାର ଆବଶ୍ୟକତା ରହିଛି; ତିନିହେଁ ଗୋଟାଏ ଅନ୍ୟ ପାଇଁ 'ରୋଧକ-ପ୍ରେରକ'ର କାମ କରିଥାନ୍ତି। ମାତ୍ର ଅବସୋସର କଥା ଯେ, ଆଜି ୨୦୧୪ର ନିର୍ବାଚନକୁ ନେଇ ଆଲୋଚନା କଲାବେଳେ ବାମପନ୍ଥୀର ବିଶେଷ ଲୋଡ଼ା ପଡୁନାହିଁ। ସାଂପ୍ରତିକ ରାଜନୀତିକ ପରିଦୃଶ୍ୟରୁ ଏହା ନିରନ୍ତର ତିରୋହିତ ହେବାରେ ଲାଗିଛି। ଫଳରେ କେବଳ ମଧ୍ୟମପନ୍ଥୀ କଂଗ୍ରେସ ଦଳ ଓ ଦକ୍ଷିଣପନ୍ଥୀ ବିଜେପି ଦଳ ରାଜନୀତିର ପ୍ରମୁଖ କେନ୍ଦ୍ର ସାଜିଛନ୍ତି।

ଭାରତୀୟ ରାଜନୀତିରେ ବିଚାରଧାରା ପ୍ରମୁଖତଃ ଦଳଗୁଡ଼ିକର ଜନ୍ମ ଲଗ୍ନକୁ ଆଧାର କରି ସ୍ଥିର ହୋଇଛି ବୋଲି କହିଲେ ବିଶେଷ ଭୁଲ ହେବ ନାହିଁ। କଂଗ୍ରେସ ଦଳର ଜନ୍ମ ସ୍ୱାଧୀନତା ସଂଗ୍ରାମର ଆଦ୍ୟ ପର୍ବରେ; ବିଜେପି (ଓ ତା'ର ପୂର୍ବାବତାର ଜନସଂଘ)ର ଜନ୍ମ (୧୯୫୧) ସ୍ୱାଧୀନତାର ଠିକ୍ ପରେ ପରେ। ଉଭୟ ଦଳ ମଧ୍ୟରେ ବୟସ ପାର୍ଥକ୍ୟ ସାଢ଼େ ଛଅ ଦଶନ୍ଧିର। କଂଗ୍ରେସର ଜନ୍ମ ହୋଇଥିଲା ସାମ୍ରାଜ୍ୟବାଦୀ ଇଂରେଜ ଶକ୍ତି ବିରୁଦ୍ଧରେ ଲଢ଼େଇ କରିବା ଉଦ୍ଦେଶ୍ୟରେ। ସେତେବେଳେ ଇଂରେଜ ଶକ୍ତି ହାତରୁ ଦେଶକୁ ମୁକ୍ତ କରିବା ଥିଲା

ସମସ୍ତ ଜାତୀୟତାବାଦୀଙ୍କ ମୁଖ୍ୟ ଲକ୍ଷ୍ୟ। ସେମାନଙ୍କ ମଧ୍ୟରେ ଆନ୍ତରିକ ଭେଦଭାବ ଥିଲା, କଳହ ଥିଲା। ମାତ୍ର ସେସବୁ ଭେଦଭାବକୁ ସାମୟିକ ଭାବେ ଏଡ଼ିଦେଇ ସମ୍ମିଳିତ ହେବାର, ଏକଜୁଟ ରହିବାର ଦରକାର ଥିଲା। କଂଗ୍ରେସ ଦଳର ବିଶେଷତ୍ୱ ହେଲା ଯେ ଏହା ସବୁ ଗୋଷ୍ଠୀକୁ ଏକଜୁଟ କରିବାର ଭାର ନେଇଥିଲା। ଏହି ଦାୟିତ୍ୱବୋଧ ତାକୁ ମଧ୍ୟମପନ୍ଥୀ କଲା, ସମାବେଷ୍ଟୀ (ଅନ୍ତର୍ଭୁକ୍ତୀ) କଲା। କଂଗ୍ରେସ ଦଳ ଯଦି ମଧ୍ୟମପନ୍ଥାକୁ ନିର୍ବାହ କରିନଥାନ୍ତା, ସମସ୍ତ ଭାରତୀୟ ବୌଦ୍ଧିକ ଗୋଷ୍ଠୀ ଓ ବିଚାରକୁ ସାଙ୍ଗରେ ନେବାର ଦାୟିତ୍ୱବୋଧକୁ ଆବୋରି ନଥାନ୍ତା, ତେବେ ତାକୁ ଭାରତୀୟ ଜାତୀୟତା ସଂଗ୍ରାମ କାଳରେ ମୁଖ୍ୟ ରାଜନୀତିକ ସ୍ରୋତ ହେବାର ଅବସର ମିଳିନଥାନ୍ତା ଏବଂ ଏଭଳି ଏକ ସମାବେଷ୍ଟୀ ଦଳର ଅଭାବରେ ଦେଶର ସ୍ୱାଧୀନତା ପ୍ରାପ୍ତିରେ ବିଳମ୍ବ ଘଟିଥାନ୍ତା।

ସ୍ୱାଧୀନତା ପ୍ରାପ୍ତି ପରେ ଶାସକ କଂଗ୍ରେସ ଦଳର ବିରୋଧ କରୁଥିବା ପ୍ରତିଦ୍ୱନ୍ଦ୍ୱୀ ଦଳର ଅଭ୍ୟୁଦୟ ଭାରତୀୟ ଗଣତାନ୍ତ୍ରିକ ବ୍ୟବସ୍ଥାର ଏକ ଆବଶ୍ୟକତା ଥିଲା। ଅନ୍ୟଥା ରାଜନୀତିରେ କଂଗ୍ରେସର ଏକାଧିକାର ରହିଥାନ୍ତା, ସ୍ୱେଚ୍ଛାଚାର ବଢ଼ିଥାନ୍ତା। ସେହି ପ୍ରେକ୍ଷାପଟରେ ବାମପନ୍ଥୀ ଦଳ ତଥା ଜନସଂଘ ଓ ସ୍ୱତନ୍ତ୍ର ପାର୍ଟିକୁ ଦେଖିହେବ। ସୋସିଆଲିଷ୍ଟ ଦଳର ଆରମ୍ଭ ୧୯୩୪ରେ ଏବଂ କମ୍ୟୁନିଷ୍ଟ ଦଳର ୧୯୨୫ରେ। ମାତ୍ର ପ୍ରାୟ ସ୍ୱାଧୀନତା ପ୍ରାପ୍ତି ଯାଏଁ ଉଭୟ ବାମପନ୍ଥୀ ଦଳ କଂଗ୍ରେସ ଭିତରେ ରହି ଏକ 'ପ୍ରେସର ଗ୍ରୁପ୍' (ଚାପ ପ୍ରଦାୟୀ ଗୋଷ୍ଠୀ) ରୂପେ କାର୍ଯ୍ୟ କରୁଥିଲେ, ଯାହାର ବିଶଦ ଅର୍ଥ ହେଲା କଂଗ୍ରେସ ସାଙ୍ଗରେ ମିଶି ଇଂରେଜର ବିରୋଧ କରିବା ଏବଂ କଂଗ୍ରେସକୁ ଦକ୍ଷିଣପନ୍ଥୀ ହେବାକୁ ନ ଦେବା। ସ୍ୱାଧୀନତା ପରେ ବାମପନ୍ଥୀ ବିଚାରକୁ ପ୍ରଖର କରିବା ଲକ୍ଷ୍ୟରେ ଏହି ଉଭୟ ଦଳ କଂଗ୍ରେସର ବିରୋଧ କରିବା ପାଇଁ ସ୍ୱତନ୍ତ୍ର ରୂପେ କାର୍ଯ୍ୟ କଲେ। ୧୯୫୧ରେ ଜନସଂଘର ଉଦୟ ହେଲା ଏକ ଦକ୍ଷିଣପନ୍ଥୀ ଦଳ ଭାବରେ। ୧୯୭୭ରେ ଏହା ଅନ୍ୟ କେତେକ କଂଗ୍ରେସ ବିରୋଧୀ ଦଳ ସହ ମିଶି ଜନତା ପାର୍ଟି ଗଠନ କଲା ଏବଂ ୧୯୮୦ ଦଶକରୁ ବିଜେପି ହେଲା।

ଭାରତୀୟ ରାଜନୀତିର ଏକ ବାସ୍ତବିକତା ହେଲା ଯେ ମଧ୍ୟମପନ୍ଥୀ ବିଚାରଧାରା ଏଠି ସହଜରେ ଲୋକ ସମର୍ଥନ ହାସଲ କରିପାରିବ। ଏହା

ପଛରେ ମୂଳ କାରଣ ହେଲା ଭାରତର ପାରମ୍ପରିକ ବିବିଧତା। ଜାତି, ଧର୍ମ, ବିଚାରଧାରା, ଭାଷା, ସଂସ୍କୃତି ଏବଂ ଏଭଳିକି ଭୌଗୋଳିକତା କ୍ଷେତ୍ରରେ ଏଠି ବିବିଧତା ହିଁ ବିବିଧତା, ଯାହା ପ୍ରାଚୀନ କାଳରୁ ରହିଆସିଛି। ଯିଏ ବିବିଧତାକୁ ସମ୍ମାନ ଦେବ, ଏକ ସମ୍ପତ୍ତି ବୋଲି ମନେ କରିବ, ସେ ଏଠି ସଫଳତା ପାଇବ। ବିବିଧତା ବଦଳରେ ଯିଏ କେନ୍ଦ୍ରିକତା ଓ ସମରୂପତାକୁ ପ୍ରାଧାନ୍ୟ ଦେବ, ତାକୁ ଲୋକ ପସନ୍ଦ କରିବେ ନାହିଁ। ଭାରତ ଉପମହାଦେଶର ଦୁଇଜଣ ସଫଳ ଶାସକ ହେଲେ ସମ୍ରାଟ ଅଶୋକ ଓ ବାଦ୍‌ଶାହା ଆକବର। ଉଭୟେ ସଂଖ୍ୟାଲଘୁ ବର୍ଗର; ଜଣେ ବୌଦ୍ଧ ଓ ଆଉ ଜଣେ ମୁସଲ୍‌ମାନ। ଉଭୟଙ୍କ କାର୍ଯ୍ୟଶୈଳୀକୁ ଦେଖିଲେ ଲାଗେ, ଧାର୍ମିକ ଓ ସାଂସ୍କୃତିକ ବିବିଧତା ସେତେବେଳେ ଆବଶ୍ୟକ ମହତ୍ତ୍ୱ ପାଇଥିଲା। ବିବିଧତାକୁ ମହତ୍ତ୍ୱ ଦେବା ଥିଲା ସେମାନଙ୍କ ସଫଳତାର ଚାବିକାଠି। ବିଗତ ୬୫ ବର୍ଷର ସ୍ୱାଧୀନୋତ୍ତର କାଳାଂଶରେ କଂଗ୍ରେସକୁ ମିଳିଥିବା ନିର୍ବାଚନୀ ସଫଳତା ପଛରେ ବି ଦଳର ସେହି ସମାବେଶୀ ଚରିତ୍ର ମୂଳ। ଏହି କାରଣରୁ କଂଗ୍ରେସକୁ କ୍ଷମତାଚ୍ୟୁତ କରି ନିଜେ କ୍ଷମତାସୀନ ହେବାକୁ ଆଶା ପାଳୁଥିବା ଦଳର ମଧ୍ୟମପନ୍ଥୀ ହେବା, ସମାବେଶୀ ହେବା, ବିବିଧ ଜାତି, ଧର୍ମ, ଭାଷା, ସଂସ୍କୃତିର ଲୋକଙ୍କୁ ସାଙ୍ଗରେ ନେଇ ବାଟ ଚାଲିବାର ସାମର୍ଥ୍ୟ ରଖିବା ଅପରିହାର୍ଯ୍ୟ। ଅନ୍ୟ ଶବ୍ଦରେ କହିଲେ, କେନ୍ଦ୍ରୀୟ କ୍ଷମତାଧାରୀ କଂଗ୍ରେସକୁ ସ୍ଥାନଚ୍ୟୁତ କରିବାକୁ ହେଲେ ପକ୍କା ବାମପନ୍ଥୀ ବା ପକ୍କା ଦକ୍ଷିଣପନ୍ଥୀ ହେବାର ଲୋଡ଼ା ନାହିଁ। ବରଂ ପକ୍କା ମଧ୍ୟମପନ୍ଥୀ ହେବା ଅଧିକ ଦରକାର।

ଅତୀତରେ ବିଜେପି କେନ୍ଦ୍ରରେ ୧୯୯୯ରୁ ୨୦୦୪ ପର୍ଯ୍ୟନ୍ତ କ୍ଷମତାସୀନ ହୋଇଛି। ତା' ପୂର୍ବରୁ ୧୯୭୭ରେ ଜନତା ପାର୍ଟିରେ ମିଶି କ୍ଷମତା ହାସଲ କରିଛି। ତା'ର ଉଭୟ ଥରର ସଫଳତା ପଛରେ ପକ୍କା ଦକ୍ଷିଣପନ୍ଥୀରୁ ମଧ୍ୟମପନ୍ଥୀ ହେବାର ମାନସିକତାକୁ ଦେଖି ହେବ। ବାଜପେୟୀଙ୍କ ସରକାରରେ (୧୯୯୮ରୁ ୨୦୦୪) ଥିଲେ ପ୍ରାୟ ଦୁଇ ଡଜନ ହେବ ଆଞ୍ଚଳିକ ଦଳ। ୧୯୭୭ରେ ଜନସଂଘ ନିଜେ ଯାଇ ବିଲୀନ ହୋଇଥିଲା ଜନତା ପାର୍ଟିରେ, ଯାହା ଥିଲା ତା'ର ମଧ୍ୟମପନ୍ଥୀ ହେବାର ପ୍ରମାଣ। ମାତ୍ର ବିଜେପି ପାଇଁ ବିଡ଼ମ୍ବନା ହେଲା ଯେ କ୍ଷମତାସୀନ ହେବା ପରେ ଏହା ଅଧିକରୁ ଅଧିକ ମଧ୍ୟମପନ୍ଥୀ ହେବା ବଦଳରେ ପୂର୍ବର ଦକ୍ଷିଣପନ୍ଥୀ କଳେବରକୁ ଫେରିଯିବାକୁ ଉଦ୍ୟମ କରେ। ଇତିହାସରୁ ଶିକ୍ଷା କରିବା ପରିବର୍ତ୍ତେ ଇତିହାସ (ଓ ଇତିହାସ

ବହି)କୁ ବଦଳେଇ ଦେବାକୁ ଚେଷ୍ଟା କରେ। ଅର୍ଥାତ୍ କ୍ଷମତାର ବାହାରେ ଥିଲେ ଧୀରେ ଧୀରେ ମଧ୍ୟମପନ୍ଥା ଆଡ଼କୁ ଅଗ୍ରସର ହେବା ଏବଂ କ୍ଷମତାସୀନ ହେଲା ପରେ ବା ନିର୍ବାଚନୀ ସଫଳତା ଲାଭ କରିବା ପରେ ପକ୍କା ଦକ୍ଷିଣପନ୍ଥା ଆଡ଼କୁ ଫେରିଯିବାକୁ ଉଦ୍ୟମ କରିବା ହେଲା ବିଜେପିର ନିୟତି ! ଏହି କାରଣରୁ ତା'ର ନିର୍ବାଚନୀ ସଫଳତା କ୍ଷଣଭଙ୍ଗୁର।

୨୦୧୪ର ସାଧାରଣ ନିର୍ବାଚନର ଫଳାଫଳ ହୁଏତ କଂଗ୍ରେସ ପାଇଁ ଶୋଚନୀୟ ହେବ ନାହିଁ; ବିଜେପି ପାଇଁ ଶୁଭଙ୍କର ହେବ। ଏଥିରେ କିଛି ଅସ୍ୱାଭାବିକତା ନାହିଁ; ଦେଶ ପାଇଁ ବି କିଛି ଏହା ବଡ଼ କଥା ହେବ ନାହିଁ। ଦଶବର୍ଷର କଂଗ୍ରେସ ଶାସନ ଥରେ ପରାଜୟର ସ୍ୱାଦ ଚାଖୁ; ଗଣତନ୍ତ୍ରର ସ୍ୱାସ୍ଥ୍ୟ ଦୃଷ୍ଟିରୁ ତାହା ଭଲ। ମାତ୍ର ବିଜେପି ପାଇଁ ବି ନିର୍ବାଚନ ଶିକ୍ଷଣୀୟ ହେଉ ! ଦଳରେ ବ୍ୟକ୍ତି କୈନ୍ଦ୍ରିକତା ନ ପଶୁ; ଏହା ଗଣତନ୍ତ୍ର ପାଇଁ ବିପଦ। ବିଜେପି ସମାବେଶୀ ହେଉ; ମଧ୍ୟମପନ୍ଥୀ ରହୁ;  ବିବିଧତାକୁ ବିଶେଷ କରି ଧର୍ମୀୟ ଓ ଆଞ୍ଚଳିକ ବିବିଧତାକୁ ଆଦର କରିବା ଶିଖୁ; ପରମ୍ପରା ନାଁରେ ସବୁ କିସମର ପଛୁଆ ବିଚାର, ଅଯୌକ୍ତିକତାକୁ ସଂଖୋଳିବାର ମାନସିକତା ପରଷିବାରୁ ଏବଂ ରାଷ୍ଟ୍ର ଭକ୍ତି ନାଁରେ 'ଅନ୍ୟ' ପ୍ରତି ତିତିକ୍ଷା ଭାବ ରଖିବାରୁ ଦଳ ନିବୃତ୍ତ ରହୁ। ତେଣକି କଂଗ୍ରେସ ପରି ବିଜେପି ମଧ୍ୟ ନିୟମିତ ଅନ୍ତରାଳରେ କେନ୍ଦ୍ରର ଶାସନ କରିବାର ସୁଯୋଗ ପାଇବ- ଏଥିରେ ସଂଶୟ ନାହିଁ।

ଏକ ନିର୍ଦ୍ଦିଷ୍ଟ ସାଧାରଣ ନିର୍ବାଚନ ଓ ଦୁଇଟି ପ୍ରମୁଖ ରାଜନୈତିକ ଦଳର ନାମୋଲ୍ଲେଖ ଏକ ଉଦାହରଣ ମାତ୍ର। ହେଲେ, ଏହା ବିବିଧତା ଓ ଆଞ୍ଚଳିକତାକୁ ସ୍ୱୀକାର କରିବା ନିମନ୍ତେ ସଂଦର୍ଭ ଯୋଗାଏ। ଯଦି କେନ୍ଦ୍ରୀୟ ଗୋଷ୍ଠୀ ଦୂରଦୃଷ୍ଟିସଂପନ୍ନ, ତେବେ ଆଞ୍ଚଳିକତା ଶୁଦ୍ଧ ଓ ଅର୍ଥପୂର୍ଣ୍ଣ ପ୍ରତୀତ ହେବ। ଏହା ଆଞ୍ଚଳିକତାକୁ ନକାରାତ୍ମକ ହେବାକୁ ବି ଦେବ ନାହିଁ। ଏହି ପରିପ୍ରେକ୍ଷୀରେ ଶୁଦ୍ଧ ମଧ୍ୟମମାର୍ଗୀ ହେବା ହେବ ଦୂରଦୃଷ୍ଟିସଂପନ୍ନତା। ଏହା ଯେ ଭାରତର ଐତିହ୍ୟକୁ ଦୃଢ଼ମୂଳ କରିବ - ଏଥିରେ ସଂଶୟ ନାହିଁ।



(ଏପ୍ରିଲ ୨୦୧୪)

# ସଂବଲପୁରର ଇତିହାସ : ଏକ ଦୃଷ୍ଟି

ସପ୍ତଦଶ ଶତାବ୍ଦୀର ଉତ୍ତରାର୍ଦ୍ଧରେ ବଳିଆର ଦେବଙ୍କ ରାଜତ୍ୱ କାଳରେ (୧୬୫୦-୧୬୮୮) ସଂବଲପୁର ପଶ୍ଚିମ ଓଡ଼ିଶାର ପ୍ରମୁଖ ରାଜ୍ୟ ହେବାର ଗୌରବ ଅର୍ଜନ କଲା। ତା' ପୂର୍ବରୁ ପାଟଣାଗଡ଼ ଥିଲା ପଶ୍ଚିମ ଓଡ଼ିଶାର ପ୍ରମୁଖ ରାଜ୍ୟ। ରମାଇ ଦେବଙ୍କୁ ପାଟଣାଗଡ଼ ରାଜ୍ୟର ପ୍ରତିଷ୍ଠାତା ବୋଲି ମନେ କରାଯାଏ। ସଂବଲପୁର ସମେତ ପଶ୍ଚିମ ଓଡ଼ିଶାର ଅନ୍ୟାନ୍ୟ ଅଞ୍ଚଳ ପାଟଣାଗଡ଼କୁ ସେମାନଙ୍କର ପ୍ରଭୁ ରାଜ୍ୟର ମର୍ଯ୍ୟାଦା ଦେଉଥିଲେ। ଅର୍ଥାତ୍ ମୋଟାମୋଟି ଭାବେ ଆଜି ଯେଉଁକ୍ଷେତ୍ରକୁ ପଶ୍ଚିମ ଓଡ଼ିଶା ରୂପେ ଚିହ୍ନିତ କରାଯାଉଛି, ତା'ର କେନ୍ଦ୍ର ରୂପେ ପାଟଣାଗଡ଼ର ପ୍ରତିଷ୍ଠା ରହିଥିଲା।

କୁହାଯାଏ, ୧୧୯୨ ଖ୍ରୀଷ୍ଟାବ୍ଦରେ ଯେତେବେଳେ ପୃଥ୍ୱୀରାଜ ଚୌହାନ ମହମ୍ମଦ ଘୋରୀଙ୍କ ହାତରେ ପରାଜୟ ବରଣକଲେ, ଚୌହାନ ବଂଶର ରାଜପୁତମାନେ ବିଭିନ୍ନ କ୍ଷେତ୍ରକୁ ଦେଶାନ୍ତରଣ କରି ଚାଲିଗଲେ। ସେହି ସମୟରେ ଜଣେ ଚୌହାନ ରାଜପୁତ ରମଣୀ ଉତ୍ତରପ୍ରଦେଶର ସେ ମୈନାପୁରୀ ଦେଇ ପାଟଣାଗଡ଼ରେ ପହଞ୍ଚିଥିଲେ। ତାଙ୍କ ପୁତ୍ର ଥିଲେ ରମାଇ ଦେବ। ସେତେବେଳକୁ ପାଟଣାଗଡ଼ ଓ ପଶ୍ଚିମ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ସମ୍ଭବତଃ ରାଜାଶାସନ ବା ରାଜ୍ୟମାନ ପ୍ରତିଷ୍ଠା ହୋଇ ନ ଥିଲା; ସର୍ଦ୍ଦାରତନ୍ତ୍ର (chiefdom) ଚାଲିଥିଲା। ରମାଇ ଦେବ ସ୍ଥାନୀୟ ସର୍ଦ୍ଦାରମାନଙ୍କୁ ଯୁଦ୍ଧରେ ପରାଜିତ କରି ରାଜ୍ୟ ପ୍ରତିଷ୍ଠାକଲେ, ନା ସେମାନଙ୍କ ସହ ସନ୍ଧି କରି ଧୀରେ ଧୀରେ ସେମାନଙ୍କୁ ବଶ୍ୟତା ସ୍ୱୀକାର କରିବାକୁ ପ୍ରରୋଚିତ କଲେ- ଏହା ଗବେଷଣାର ବିଷୟ। ସେହିଭଳି ସେ ରାଜା ପୃଥ୍ୱୀରାଜଙ୍କ ବଂଶୀୟ ଥିଲେ ନା ଦେଶାନ୍ତରଣ କଲା ପରେ ସ୍ଥାନୀୟ ସ୍ତରରେ ମର୍ଯ୍ୟାଦା ଲାଭକରିବା ଉଦ୍ଦେଶ୍ୟରେ ନିଜକୁ ଉଚ୍ଚବଂଶଜ ରୂପେ ସ୍ଥାପିତ କରୁଥିଲେ ଏବଂ ସେହି ପ୍ରକ୍ରିୟାରେ କିମ୍ବଦନ୍ତୀର ଆଶ୍ରୟ ନେଇଥିଲେ- ତା' ବି ଏକ ଗବେଷଣାର ବିଷୟ। ଏକଥା ନିଶ୍ଚିତ ଯେ ଉତ୍ତର ଭାରତରେ ରାଜ୍ୟ ପ୍ରତିଷ୍ଠା ହେଲାପରେ ରାଜ୍ୟ ପରିଚାଳନା ପ୍ରଣାଳୀ ସହିତ ପରିଚିତ ରାଜପୁତମାନେ ନୂତନ କ୍ଷେତ୍ରଗୁଡ଼ିକୁ ଦେଶାନ୍ତରଣ

କରୁଥିଲେ ଏବଂ ସେଠାରେ ରାଜ୍ୟ ପରିଚାଳନାର ସ୍ୱ ଅଭିଜ୍ଞତାକୁ ଉପଯୋଗ କରି ରାଜ୍ୟ ପ୍ରତିଷ୍ଠା କରୁଥିଲେ। ସର୍ବଦା କେବଳ ରାଜପୁତମାନେ ଏକଥା କରୁଥିଲେ ବୋଲି ବି ଜୋର ଦେଇ କହିହେବ ନାହିଁ। ରାଜ୍ୟ ପରିଚାଳନା ପାଇଁ ଆବଶ୍ୟକ ଗୁଣ ହେଲା ରାଜସ୍ୱ ସଂଗ୍ରହ ଓ ତା'ର ବିତରଣ ପଦ୍ଧତିରେ ସାମର୍ଥ୍ୟ ହାସଲ କରିବା ଏବଂ ସେହି ପ୍ରକ୍ରିୟାରେ ମଧ୍ୟସ୍ଥି ଭାବରେ ରାଜସ୍ୱର ଏକ ଭାଗକୁ ନିଜ ପାଇଁ ଖର୍ଚ୍ଚ କରିବାର ଯୋଗ୍ୟତା ହାସଲ କରିବା। କେତେକ କ୍ଷେତ୍ରରେ ରାଜପୁତ ଭିନ୍ନ ଅନ୍ୟମାନେ ମଧ୍ୟ ଏହି ଅଭିଜ୍ଞତା ବଳରେ ରାଜ୍ୟର ଶାସକ ହୋଇପାରନ୍ତି ଏବଂ ପ୍ରତିଷ୍ଠା ପାଇବା ସକାଶେ କ୍ଷତ୍ରିୟ ଓ ରାଜପୁତର ମର୍ଯ୍ୟାଦା ଲୋଡ଼ି ଥାଇ ପାରନ୍ତି। ଜାତି ମର୍ଯ୍ୟାଦାର ଆବଶ୍ୟକ ସ୍ଥଳେ ସହଯୋଗ ପାଇବା ସକାଶେ ତଥା ସାମାଜିକ ସଂବଂଧ ସ୍ଥାପନ ନିମିତ୍ତ ଲୋଡ଼ା ପଡୁଥିଲା।

ଆମର ଧାରଣା ଯେ ରାଜ୍ୟ ପ୍ରତିଷ୍ଠା ପାଇଁ ସର୍ବଦା ଯୁଦ୍ଧର ଆବଶ୍ୟକ ହେଉଥିବ। ପ୍ରାରମ୍ଭିକ ସ୍ତରରେ ଏହା ସତ ହୋଇ ନଥାଇପାରେ। ସ୍ଥାନୀୟ ସର୍ଦ୍ଦାରମାନେ ସମ୍ମିଳିତ ଭାବେ ଏହି ବାହାର ବ୍ୟକ୍ତିକୁ ପ୍ରତିରୋଧ କରୁ ନଥିଲେ। ବରଂ ରାଜ୍ୟ ପରିଚାଳନା ପ୍ରଣାଳୀ ସହିତ ପୂର୍ବରୁ ପରିଚିତ ଉକ୍ତ ବାହାର ବ୍ୟକ୍ତି ଜଣ ଜଣ କରି ସର୍ଦ୍ଦାରଙ୍କୁ ନିଜ କର୍ତ୍ତୃତ୍ୱାଧୀନ କରୁଥିଲେ। ସେତେବେଳେ ରାଜବଂଶଜ ବୋଲି ପ୍ରଚାର କରୁଥିବା କିମ୍ବଦନ୍ତୀ ବେଶ୍ କାମରେ ଆସୁଥିଲା; ଯଦି ଜଣେ ସର୍ଦ୍ଦାର ବାର୍ଷିକ ଭେଟି ବା ଦେୟ ଦେବାକୁ ରାଜି ହେଉଥିଲେ, ସେ ନିଜ ପଦରେ ତିଷ୍ଠି ରହିବାର ସୁଯୋଗ ପାଉଥିଲେ। ଏହି ପ୍ରକ୍ରିୟାରେ 'ରାଜା' ସର୍ଦ୍ଦାରମାନଙ୍କୁ କର୍ତ୍ତୃତ୍ୱାଧୀନ କରି ଏବଂ ସେମାନଙ୍କୁ ପଦରେ ରହିବାର ଅବସର ଦେଇ ପ୍ରତିଷ୍ଠା ଦେଉଥିଲେ ଏବଂ ସର୍ଦ୍ଦାରମାନେ ରାଜାଙ୍କର ବଶ୍ୟତା ସ୍ୱୀକାର କରି ରାଜାଙ୍କୁ ପ୍ରତିଷ୍ଠା ଦେଉଥିଲେ। ଏହା ଉଭୟ ରାଜା ଓ ସର୍ଦ୍ଦାରମାନଙ୍କ ପାଇଁ ସୁବିଧାଜନକ ହେଉଥିଲା। ଇଂରାଜୀରେ ଏହାକୁ କହନ୍ତି Integrative Polity, ଯାହାର ଓଡ଼ିଆ ତର୍ଜମା ହେବ ସମନ୍ୱିତ ରାଜ୍ୟବ୍ୟବସ୍ଥା। ସର୍ଦ୍ଦାରମାନେ ରାଜ୍ୟ ପ୍ରଣାଳୀର ନୂତନ ପଦବୀ, ଯଥା ଜମିଦାର, ପ୍ରଶାସକ ଆଦି ପଦବୀ ଲାଭ କରି ରାଜାଙ୍କର ସୁରକ୍ଷା ବଳୟ ଭିତରେ ରହୁଥିଲେ ଏବଂ ରାଜା ଏହି ନୂତନ ଜମିଦାର ଓ ପୁରୁଣା ସର୍ଦ୍ଦାରମାନଙ୍କଠାରୁ ରାଜସ୍ୱ ସଂଗ୍ରହକରି ରାଜ୍ୟ ପରିଚାଳନା କରୁଥିଲେ ତଥା ନିଜେ ବିଳାସପୂର୍ଣ୍ଣ ଜୀବନ ଅତିବାହିତ କରୁଥିଲେ। ସମୟକ୍ରମେ ରାଜା ନିଜ କର୍ତ୍ତୃତ୍ୱାଧୀନ କ୍ଷେତ୍ରରେ ସ୍ୱ-ପରିବାର ଓ କୁଟୁମ୍ବଜନଙ୍କୁ

ସାମନ୍ତ ରାଜା ରୂପେ ଅଧିଷ୍ଠିତ କରୁଥିଲେ। ରାଜାଙ୍କର ଦୁର୍ବଳ ହେବା ସ୍ଥିତିରେ ଏହି ସାମନ୍ତ ରାଜା ନିଜକୁ ସମାନ୍ତର ଅଥବା ସ୍ୱାଧୀନ କ୍ଷମତା କେନ୍ଦ୍ର ରୂପେ ପ୍ରତିଷ୍ଠିତ କରୁଥିଲେ। ପଶ୍ଚିମ ଓଡ଼ିଶାରେ ଆଉ ଅନେକ ରାଜ୍ୟ ସ୍ଥାପିତ ହେବା, ସେଠାରେ କେଉଁଠି କ୍ଷତ୍ରୀୟ ଶାସକ ଅବସ୍ଥାପିତ ହେବା ଏବଂ ଆଉ କେଉଁଠି ସ୍ଥାନୀୟ ଆଦିବାସୀ ଜମିଦାରର ରାଜସ୍ୱସଂଗ୍ରାହକ ପଦରେ ରହିବା ହେଲା ଏହାର ପ୍ରମାଣ। କାଳକ୍ରମେ ବୈବାହିକ ସମ୍ବନ୍ଧ ଆଧାରରେ ସ୍ଥାନୀୟ ଆଦିବାସୀ ପ୍ରଶାସକମାନେ ମଧ୍ୟ କ୍ଷତ୍ରିୟ କୁଳ ମର୍ଯ୍ୟାଦା ଦାବି କରିବା କିମ୍ବା 'ଉଚ୍ଚ' କୁଳର ବୋଲି କିମ୍ବଦନ୍ତୀ ଗଢ଼ିବା ପଛରେ ଉପରୋକ୍ତ କାରଣକୁ ଦେଖିହେବ।

ଏହି ସନ୍ଦର୍ଭରେ ପ୍ରଶ୍ନ ଉଠେ, ସ୍ଥାନୀୟ ସାମାଜିକ ଓ ସାଂସ୍କୃତିକ ପରମ୍ପରା ତଥା ରୀତିନୀତି ପ୍ରତି ଏହି ନୂତନ ରାଜା ଓ ପ୍ରଶାସକମାନଙ୍କ ଦୃଷ୍ଟିକୋଣ କ'ଣ ଥିଲା ? ରାଜ୍ୟ ପ୍ରତିଷ୍ଠା ପରେ ସ୍ଥାନୀୟ ପ୍ରତୀକଗୁଡ଼ିକୁ କ'ଣ ଧ୍ୱଂସ କରାଯାଇଥିବ ନା ସେ ଗୁଡ଼ିକୁ ଆପଣାଇ ନିଆଯାଇଥିବ ? ଦ୍ୱିତୀୟଟିର ସଂଭାବନା ଅଧିକ, କାରଣ ଯୁଦ୍ଧ ଜୟ କରି ନୁହେଁ, ବରଂ ସମନ୍ୱିତ ରାଜ୍ୟବ୍ୟବସ୍ଥା ମାଧ୍ୟମରେ ରାଜ୍ୟର ପ୍ରତିଷ୍ଠା ହୋଇଥିଲା ଏବଂ ରାଜା କର୍ତ୍ତୃତ୍ୱ ହାସଲ କରୁଥିଲେ। ଏବଂ ଆପଣାଇ ନେଲେ ସ୍ଥାନୀୟ ଲୋକଙ୍କ ଉପରେ ତଥା ସମାଜ ଉପରେ ରାଜ୍ୟ କର୍ତ୍ତୃତ୍ୱର ମାତ୍ରା ବୃଦ୍ଧି ପାଇବାର ସଂଭାବନା ରହିବ। ବଳ ପ୍ରୟୋଗ ତୁଳନାରେ ଏହି ଉପାୟରେ କର୍ତ୍ତୃତ୍ୱ ଜାହିର କରିବା ନୂତନ ରାଜାଙ୍କ ପକ୍ଷେ ସୁବିଧାଜନକ ହୋଇ ଥିବ କି ? ଯାହା ମନେହୁଏ, ରାଜ୍ୟ ପ୍ରତିଷ୍ଠା କରିବା ପ୍ରକ୍ରିୟାରେ ରାଜାମାନେ ସ୍ଥାନୀୟ ରୀତିନୀତି, କର୍ମକାଣ୍ଡ ତଥା ସଂସ୍କୃତିକୁ ଅର୍ଥାତ ଦେବା-ଦେବୀଙ୍କୁ ସ୍ୱୀକାର କରି ନେଉଥିଲେ, କାରଣ ପୂର୍ବରୁ ପ୍ରତିଷ୍ଠା ଲାଭ କରିଥିବା ଉକ୍ତ ଦେବାଦେବୀ ଆଞ୍ଚଳିକ ସ୍ୱାଭିମାନ ଓ ଅସ୍ମିତାର ପ୍ରତୀକ ଥିଲେ। ଆଗରୁ ପ୍ରତିଷ୍ଠିତ ଥିବା ସ୍ଥାନୀୟ ପୂଜାବିଧି ଓ କର୍ମକାଣ୍ଡକୁ ଗ୍ରହଣ କରିବା ଦ୍ୱାରା ରାଜାଙ୍କୁ ସ୍ଥାନୀୟ ପୂଜାବିଧି ଓ କର୍ମକାଣ୍ଡକୁ ଗ୍ରହଣ କରିବା ଦ୍ୱାରା ରାଜାଙ୍କୁ ସ୍ଥାନୀୟତାର ସମର୍ଥନ ମିଳୁଥିଲା। ସେହି ସୂତ୍ରରେ ଯେମିତି ଜଗନ୍ନାଥ ଉତ୍କଳର ମୁଖ୍ୟ ଦେବତା ହେଲେ, ସମଲାଇ, ପାଟଣେଶ୍ୱରୀ, ରମାଇ, ଖମ୍ବେଶ୍ୱରୀ ଆଦି ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ଅଞ୍ଚଳର ଅଧିଷ୍ଠାତ୍ରୀ ଦେବୀ ହେଲେ। ସଂବଲପୁର ମୁଖ୍ୟକେନ୍ଦ୍ରର ମାନ୍ୟତା ପାଇବାଯୋଗୁଁ ଯେମିତି ଜଗନ୍ନାଥ ପୁରୀ ବାହାରେ ଅନ୍ୟାନ୍ୟ ସ୍ଥାନରେ ପ୍ରତିଷ୍ଠିତ ହେଲେ, ସେମିତି ସମଲାଇଙ୍କୁ ସଂବଲପୁର ବାହାରେ ମଧ୍ୟ ସ୍ଥାପିତ କରାଗଲା।

ରାଜାଙ୍କର ପ୍ରତିପତ୍ତି ବୃଦ୍ଧି ହେବା ଯୋଗୁଁ ଅଧିଷ୍ଠାତ୍ରୀ ଦେବୀଙ୍କ ପୂଜାପୀଠ ଭବ୍ୟରୁ ଭବ୍ୟତର ହେଲା। ରାଜ୍ୟ, ଅଧିଷ୍ଠାତ୍ରୀ ଦେବାଦେବୀ ଓ ପୂଜାପୀଠ ଏବଂ ପୂଜାବିଧି ପରସ୍ପର ପାଇଁ ଅନୁରୂପକର କାର୍ଯ୍ୟ କଲେ।

ସାଧାରଣତଃ ଦେଖାଯାଏ ଯେ, ଜଗନ୍ନାଥଙ୍କୁ ବାଦ୍‌ଦେଲେ ଅନ୍ୟାନ୍ୟ କ୍ଷେତ୍ରରେ ଦେବାଦେବୀଙ୍କୁ ହିଁ ମାନ୍ୟତା ମିଳିଥିଲା। କାରଣ ରାଜ୍ୟ ପ୍ରତିଷ୍ଠା ପୂର୍ବରୁ ସମାଜରେ ଉତ୍ପାଦିକା ପୂଜାବିଧି ବା ଶକ୍ତିପୂଜାର ବିଶେଷ ପ୍ରଚଳନ ଥିଲା। ଇଂରାଜୀରେ ଏହାକୁ କହିବା fertility cult। ଉତ୍ପାଦିକା ଶକ୍ତିକୁ ପୃଥିବୀ ପରି ନାରୀ ରୂପରେ କଳ୍ପନା କରାଯାଉଥିଲା। ଏହା କେବଳ ଓଡ଼ିଶାରେ ନୁହେଁ, ଓଡ଼ିଶା ବାହାରେ ବି ଦେଖିବାକୁ ମିଳେ। ଉତ୍ପାଦିକା ପୂଜାବିଧିର ବିଶେଷତ୍ୱ ହେଲା ଯେ ଏହି ଦେବୀ ସ୍ଥାନୀୟ ହେବା ସହିତ ନିଜେ ଶକ୍ତିର ଅଧିକାରିଣୀ ରୂପେ ଆରାଧନା ପାଉଥିଲେ। ଦ୍ୱିତୀୟତଃ, ସେ ଉତ୍ପାଦିକା ହେବା ସତ୍ତ୍ୱେ କୌଣସି ପୁରୁଷ ଦେବତାଙ୍କର ସହଗାମିନୀ, ସହକର୍ମିଣୀ ବା ସହଧର୍ମିଣୀ ନଥିଲେ. ତାଙ୍କର ନିଜର ସତ୍ତା ରହିଥିଲା। ଏହା ପୁରୁଷସତ୍ତାତ୍ମକତାଠାରୁ ପୃଥକ ଥିଲା। ଏହି ଆଧାରରେ ବିଚାର କଲେ ଜଗନ୍ନାଥଙ୍କୁ କାହିଁକି ପୁରୁଷ ଦେବତା ରୂପେ କଳ୍ପନା କରାଗଲା ? ନା, ଆରଂଭରେ ଜଗନ୍ନାଥଙ୍କୁ ମଧ୍ୟ ଉତ୍ପାଦିକା ଶକ୍ତି ରୂପେ ପୂଜା କରାଯାଉଥିଲା ? ରାଜ୍ୟ ପ୍ରତିଷ୍ଠା ପାଇବା ସହିତ ବ୍ରାହ୍ମଣମାନେ ନୂତନ କ୍ଷେତ୍ରଗୁଡ଼ିକରେ ପହଞ୍ଚି ସାରିଥିଲେ ଓ ରାଜ୍ୟପ୍ରତିଷ୍ଠା ପାଇଁ ଆବଶ୍ୟକ କ୍ଷେତ୍ର ପ୍ରସ୍ତୁତି କରୁଥିଲେ। କିମ୍ବଦନ୍ତୀ ସୃଷ୍ଟିକରି ଏହି ବ୍ରାହ୍ମଣ ଓ ଚାରଣକବିମାନେ ରାଜାଙ୍କୁ ଉଚ୍ଚ କୁଳସମ୍ଭୂତ ବୋଲି କହିଲେ ଏବଂ ସ୍ଥାନୀୟ ଦେବୀଙ୍କୁ ପୁରାଣର ଦେବାଦେବୀଙ୍କ ସହିତ ଯୋଡ଼ିଲେ। କେତେକକ୍ଷେତ୍ରରେ ଚାରଣକବିମାନେ ସ୍ଥାନୀୟ ଦେବୀଙ୍କ ନାଁରେ ନୂଆ ଆଖ୍ୟାୟିକା ସୃଷ୍ଟି କଲେ ଯାହା ଦେବୀଙ୍କର ମାନ୍ୟତାକୁ ଲେଖନୀବଦ୍ଧ କଲା, ଶ୍ରୁତିବଦ୍ଧ କଲା। ଯେଉଁ ରୀତିରେ ସ୍ଥାନୀୟ ରାଜାଙ୍କୁ ସୂର୍ଯ୍ୟବଂଶ-ଚନ୍ଦ୍ରବଂଶ ଭଳି 'ମହାନ' ବଂଶ ସହିତ ଯୋଡ଼ାଗଲା, ସେହି ରୀତିରେ ବ୍ରାହ୍ମଣ ଓ ଚାରଣକବିମାନଙ୍କର ପ୍ରୟାସରେ ସ୍ଥାନୀୟଦେବୀଙ୍କୁ ଲକ୍ଷ୍ମୀ, ଦୁର୍ଗା ଆଦିଙ୍କର ପ୍ରତିରୂପ ବୋଲି ମନେ କରାଗଲେ। ଏହିକ୍ରମରେ ବ୍ରାହ୍ମଣ ପୂଜକ ସ୍ଥାନୀୟ ଦେବୀଙ୍କର ପୂଜା କର୍ମକାଣ୍ଡରେ ସାମିଲ ହେଲେ ଏବଂ ପୂର୍ବରୁ ରହିଥିବା ସ୍ଥାନୀୟ ପୂଜକ କୁଳ ଉଚ୍ଚ ଜାତି ଓ ଉଚ୍ଚ କୁଳର ସମ୍ମାନ ଲାଭକଲେ। ପୌରାଣିକ ପୂଜାବିଧି ଓ ସ୍ଥାନୀୟ ପୂଜାବିଧିକୁ ସମନ୍ୱିତ କରିବା ଫଳରେ

ବ୍ରାହ୍ମଣମାନଙ୍କୁ କର୍ମକାଣ୍ଡ ମାନ କରିବାକୁ ସୁବିଧା ହେଲା, ଯାହା ସେମାନଙ୍କୁ ସାମାଜିକ ପ୍ରତିଷ୍ଠା ଓ ଆର୍ଥିକ ଦୃଷ୍ଟିରୁ ସମ୍ପନ୍ନତା ପ୍ରଦାନ କଲା।

ରମାଇଦେବ ଉପକୂଳ ଓଡ଼ିଶାରେ ସ୍ଥାପିତ ଗଙ୍ଗରାଜାମାନଙ୍କର ବଶ୍ୟତା ସ୍ୱୀକାର କରିଥିଲେ। ସେ ଓ ତାଙ୍କ ଉତ୍ତରାଧିକାରୀମାନେ ପାଟଣାଗଡ଼କୁ କେନ୍ଦ୍ରକରି ପାଖାପାଖି ଆଉ ସାମନ୍ତ ରାଜ୍ୟମାନ ପ୍ରତିଷ୍ଠା କରିଥିଲେ। ଏ ସବୁର ଐତିହାସିକ ପ୍ରମାଣ ରହିଛି। ସେହି ପ୍ରକ୍ରିୟାରେ ଷୋଡ଼ଶ ଶତାବ୍ଦୀର ମଧ୍ୟକାଳ ପର୍ଯ୍ୟନ୍ତ ପାଟଣାଗଡ଼ ଥିଲା ପଶ୍ଚିମ ଓଡ଼ିଶାର ମୂଳ ଓ ମୁଖ୍ୟ ରାଜ୍ୟ। ଷୋଡ଼ଶ ଶତାବ୍ଦୀର ଶେଷଆଡ଼କୁ ପାଟଣାଗଡ଼ ରାଜ୍ୟର ଦ୍ରୁତପତନ ହେଲା ଏବଂ ବଳରାମ ଦେବଙ୍କ ରାଜତ୍ୱରେ ସମ୍ବଲପୁରର ପ୍ରଭୂତ୍ୱ ବିସ୍ତାର ହେଲା। ଆରମ୍ଭରେ ସଂବଲପୁର ଥିଲା ପାଟଣାଗଡ଼ର କରଦ ରାଜ୍ୟ। ପାଟଣାଗଡ଼ର ରାଜା ନରସିଂହ ଦେବ ଦାନସୂତ୍ରରେ ଏହାକୁ ବଳରାମ ଦେବଙ୍କୁ ପ୍ରଦାନ କରିଥିଲେ। ପରେ ଏହା ବିଭିନ୍ନ ସାମାଜିକ ଓ ଭୌଗୋଳିକ କାରଣରୁ ପ୍ରମୁଖତା ପାଇଲା।

## ସଂବଲପୁର ରାଜ୍ୟର ପ୍ରତିଷ୍ଠା ବୃଦ୍ଧି

ସପ୍ତଦଶ ଶତାବ୍ଦୀର ଉତ୍ତରାର୍ଦ୍ଧରେ ବଳିଆର ଦେବଙ୍କ ରାଜତ୍ୱକାଳରେ ସଂବଲପୁର ରାଜା 'ଅଠରଗଡ଼ ମଉଡ଼ମଣି' ଉପାଧି ଧାରଣକଲେ, ଯାହା ସଂବଲପୁରର ବର୍ଦ୍ଧିଷ୍ଣୁ ପ୍ରଭୂତ୍ୱକୁ ଚିହ୍ନିତ କରେ। ଏହି ଅଠରଟି ଗଡ଼ ବା କରଦ ରାଜ୍ୟ ହେଲେ: ସଂବଲପୁର, ପାଟଣା (ପାଟମାଗଡ଼ଃ, ସୋନପୁର, ବଉଦ, ଆଠମଲ୍ଲିକ, ଖରିଆର, ରେଢ଼ାଖୋଲ, ବାମଣ୍ଡା, ଗାଙ୍ଗପୁର, ବଣାଇ, ରାୟଗଡ଼, ବରଗଡ଼, ସାରଂଗଡ଼, ଶକ୍ତି, ଫୁଲଝର, ଚନ୍ଦ୍ରପୁର, ବିନ୍ଦ୍ରା-ନୂଆଗଡ଼ ଓ ସରଗୁଜା। ଏହିସବୁ ରାଜ୍ୟକୁ ସେ ଯୁଦ୍ଧରେ ଜିଣିଥିବାର କୌଣସି ପ୍ରମାଣ ନାହିଁ। ଦ୍ୱିତୀୟତଃ ଏହିସବୁ ରାଜ୍ୟ ସଂବଲପୁର ରାଜ୍ୟର ପରାକ୍ରମରେ ଭୟଭୀତ ହୋଇ ସେଠାକାର ରାଜାଙ୍କୁ ପ୍ରଭୂତ୍ୱ ଦେବାର ମଧ୍ୟ କୌଣସି ପ୍ରମାଣ ନାହିଁ। ପ୍ରାରମ୍ଭିକ ସ୍ତରର ଏହି ରାଜ୍ୟମାନଙ୍କ ମଧ୍ୟରୁ ଅଧିକାଂଶ ଆଗରୁ ପାଟଣାଗଡ଼କୁ ମଧ୍ୟ ମାନ୍ୟତା ଦେଉଥିଲେ। ସମ୍ଭବତଃ ଯେଉଁ ଆଧାରରେ ପୁରୀରର ଗଜପତି ରାଜାଙ୍କୁ ଓଡ଼ିଶାର ଅନ୍ୟ ରାଜା ଓ ରାଜ୍ୟମାନେ ନିଜର ସୁରକ୍ଷା ପାଇଁ, ବହିଃସମ୍ବନ୍ଧ ସ୍ଥାପନ ବେଳେ ସୁବିଧା ପାଇଁ ତଥା ଆନ୍ତରିକ କଳହବେଳେ ଆପୋସ ସମାଧାନ ପାଇବାପାଇଁ ଜ୍ୟେଷ୍ଠର ମାନ୍ୟତା ଦେଉଥିଲେ, ସେହି

ଆଧାରରେ ସଂବଲପୁର ରାଜାଙ୍କୁ ମଧ୍ୟ ପଶ୍ଚିମ ଓଡ଼ିଶା କ୍ଷେତ୍ରରେ ପ୍ରମୁଖଭାବେ ମାନ୍ୟତାପ୍ରାପ୍ତ ହେଲା। ଆଧୁନିକ ଓଡ଼ିଶାରେ ପଶ୍ଚିମାଞ୍ଚଳ ଓ ପଶ୍ଚିମ ଓଡ଼ିଶା ନାମରେ ଖ୍ୟାତ ଏହି କ୍ଷେତ୍ରର ଏକ ରକମର ରାଜଧାନୀ ଭଳି ମର୍ଯ୍ୟାଦା ସେହି ସମୟରୁ ସଂବଲପୁରକୁ ମିଳିଲା। ଏହି ମର୍ମରେ ଏହା ସୁସ୍ପଷ୍ଟ ହେବା କଥା ଯେ, ପଶ୍ଚିମ ଓଡ଼ିଶା ହେଲା ଏକ ଆଧୁନିକ ସମୟର ଅବଧାରଣା। ତା'ର ଆଦିମୂଳକୁ ମଧ୍ୟକାଳୀନ ଇତିହାସରେ ଖୋଜି ହେବ ସିନା, ହେଲେ ସେହି ଆଧାରରେ ପୂର୍ବ ଓଡ଼ିଶାର ପ୍ରତିଦ୍ୱନ୍ଦ୍ୱୀ ରୂପେ ତାକୁ ଦେଖି ହେବ ନାହିଁ।

ସପ୍ତଦଶ ଶତାବ୍ଦୀର ଶେଷାର୍ଦ୍ଧରୁ ସଂବଲପୁରକୁ ପ୍ରମୁଖତା ମିଳିବାପଛରେ ତା'ର ଭୌଗୋଳିକ ସ୍ଥିତି ମଧ୍ୟ ଅନେକାଂଶରେ ଦାୟୀ। ଏହି ସମୟରେ ବାଣିଜ୍ୟିକ ଗତିବିଧି ବଢ଼ିଲା। ଏହି କାରଣରୁ ମହାନଦୀ କୂଳରେ ଅବସ୍ଥିତ ସଂବଲପୁର ସମଗ୍ର ଓଡ଼ିଶା ପାଇଁ ଏକ ଅର୍ଥନୈତିକ କେନ୍ଦ୍ରର ମର୍ଯ୍ୟାଦା ଲାଭକଲା। ପୁଣି ସ୍ଥଳ ପଥରେ ମଧ୍ୟ ଭାରତ ଓ ଛୋଟନାଗପୁର ପାଇଁ ଏବଂ ଜଳ ପଥରେ ପୂର୍ବ ଓଡ଼ିଶା ପାଇଁ ସଂବଲପୁର ଏକ ଛକ ଜାଗା ହେବାର ସାମର୍ଥ୍ୟ ରଖୁଥିଲା। ପଶ୍ଚିମ ଓଡ଼ିଶାର ଅନ୍ତର୍ବାଣିଜ୍ୟ ଓ ବାହାର କ୍ଷେତ୍ର ସହିତ ବହିଃବାଣିଜ୍ୟ ପାଇଁ ସଂବଲପୁର ଏକ ପ୍ରମୁଖ କେନ୍ଦ୍ର ହେଲା। ଏହି କାରଣରୁ ପଶ୍ଚିମ ଓଡ଼ିଶାର ବିଭିନ୍ନ ସ୍ଥାନରେ ହାତରେ ବୁଣା ହେଉଥିବା ଶାଢ଼ିକୁ 'ସଂବଲପୁରୀ' ଶାଢ଼ି କୁହାଗଲା। ଏହା ରୋମ ବଜାରରେ ମଧ୍ୟ ଉପଲବ୍ଧ ହେଉଥିଲା ବୋଲି ବିଶ୍ୱାସ କରାଯାଏ। ଏଥିରୁ ମନେହୁଏ ଯେ ୟୁରୋପର ବଜାର ପର୍ଯ୍ୟନ୍ତ ଶିଳ୍ପ ବିପ୍ଲବ ପୂର୍ବରୁ ପଶ୍ଚିମ ଓଡ଼ିଶାରୁ ହସ୍ତତନ୍ତ ସାମଗ୍ରୀ ସଂବଲପୁର ଦେଇ ପହଞ୍ଚି ପାରୁଥିଲା।

ସମୟ କ୍ରମେ ରାଜ୍ୟର ପ୍ରତିଷ୍ଠା ବୃଦ୍ଧି ପାଇଁ ଅଧିକରୁ ଅଧିକ ଆର୍ଥିକ ଉତ୍ସର ଆବଶ୍ୟକତା ପଡ଼ିଲା। ସେହି ବେଳାରେ ସଂବଲପୁର ଅନ୍ୟ ୧୭ଟି ଗଡ଼ ତୁଳନାରେ ଅଧିକ ସମର୍ଥସିଦ୍ଧ ହେଲା, କାରଣ ବାଣିଜ୍ୟ କରରୁ ରାଜ୍ୟକୁ ପ୍ରଭୂତ ରାଜସ୍ୱ ଅସୁଲ କରିବାର ଅବସର ମିଳିଲା। ସାଧାରଣତଃ ଦେଖାଯାଏ ଯେ ଯେଉଁ ସହର ବାଣିଜ୍ୟ କେନ୍ଦ୍ର, ତାହା ସମତାଳରେ ସାମାଜିକ ଓ ସାଂସ୍କୃତିକ କେନ୍ଦ୍ର ହେବାର ସାମର୍ଥ୍ୟ ରଖେ। ବାଣିଜ୍ୟ ମାଧ୍ୟମର ସାମାଜିକ ଓ ସାଂସ୍କୃତିକ ଆଦାନ ପ୍ରଦାନ ବୃଦ୍ଧି ପାଇଥାଏ। ସଂବଲପୁର ସନ୍ଦର୍ଭରେ ମଧ୍ୟ ଏହା ଦେଖିବାକୁ

ମିଳିଲା। ପଶ୍ଚିମ ଓଡ଼ିଶା ବାହାରେ ପଶ୍ଚିମ ଓଡ଼ିଶାର ଭାଷା, ସଂସ୍କୃତି ଓ ବିସ୍ତୃତ କ୍ଷେତ୍ରକୁ ଯଥାକ୍ରମେ ସଂବଲପୁରୀ ଭାଷା, ସଂବଲପୁରୀ ସଂସ୍କୃତି ଓ ସଂବଲପୁର ବୋଲି କୁହାଯିବା ପଛରେ ବୋଧହୁଏ ଏହା ହେବ ପ୍ରମୁଖ କାରଣ। ନାନା ଆଞ୍ଚଳିକ ବିବିଧତା ସତ୍ତ୍ୱେ ବାହାର ଜଗତରେ ଓଡ଼ିଶାକୁ ଉତ୍କଳ, କଳିଙ୍ଗ ଓ ଉଡ୍ର ଆଦି ନାମରେ ଯେମିତି ପରିଚିତି ମିଳୁଥିଲା, ସେହିଭଳି ସଂବଲପୁରକୁ ସପ୍ତଦଶ ଶତାବ୍ଦୀର ଉତ୍ତରାର୍ଦ୍ଧରୁ ପଶ୍ଚିମ ଓଡ଼ିଶାର ସମାର୍ଥବୋଧକ ଶବ୍ଦ ଭାବରେ ବ୍ୟବହାର କରାଗଲା।

ଏହି କାଳାଂଶରେ ପଶ୍ଚିମଓଡ଼ିଶା ପାଇଁ 'କୋଶଳ' ନାମର ମଧ୍ୟ ବୌଦ୍ଧିକସ୍ତରରେ ବ୍ୟବହାର ଆରମ୍ଭ ହେଲାବୋଲି ମନେ କରାଯାଏ। 'ରାମାୟଣ' ଓ 'ମହାଭାରତ'ରେ କୋଶଳ ରାଜ୍ୟର ଉଲ୍ଲେଖ ରହିଛି, ଯାହାର ଅର୍ଥହେଲା ଉକ୍ତ ମହାକାବ୍ୟ ରଚନା କାଳରେ (ଖ୍ରୀ.ପୂ. ଷଷ୍ଠ ଶତାବ୍ଦୀ) ମଧ୍ୟ ଭାରତର ଏକ କ୍ଷେତ୍ର କୋଶଳ ନାମରେ ପରିଚିତ ଥିଲା। ଏହି କ୍ଷେତ୍ର ଆଧୁନିକ ଛତିଶଗଡ଼ ଓ ବର୍ତ୍ତମାନର ପଶ୍ଚିମ ଓଡ଼ିଶାର କେତେକ ଅଂଶଯାଏପରିବ୍ୟାପ୍ତ ଥିଲା। ଯଦି ଆଜିର ପଶ୍ଚିମଓଡ଼ିଶାର ଅବଧାରଣା ସହିତ ଉକ୍ତ ଶବ୍ଦକୁ ଯୋଡ଼ାଯାଏ, ତାହା ଏକ ଐତିହାସିକ ଭୁଲ ହେବ। ଅବଶ୍ୟ ସୋନପୁରରେ କବି ଗଙ୍ଗାଧର ମିଶ୍ର 'କୋଶଳାନନ୍ଦ କାବ୍ୟ' ରଚନା କରି ଅଷ୍ଟାଦଶ ଶତାବ୍ଦୀରେ ଆଞ୍ଚଳିକ ସ୍ୱାଭିମାନର ଅବଧାରଣାକୁ ଜୀବନ୍ୟାସ ଦେଇଥିଲେ। ମାତ୍ର ଲୌକିକ ସ୍ତରରେ ଏହି ନାମକୁ ଯଥେଷ୍ଟ ସ୍ୱୀକୃତି ବହୁ ଦିନଯାଏ ମିଳିଥିବାର ବିଶେଷ ପ୍ରମାଣ ନାହିଁ। ଅର୍ଥାତ ବହୁଦିନ ଧରି ପଶ୍ଚିମଓଡ଼ିଶା ପାଇଁ ଲୋକସ୍ତରରେ ନାଁ ହେଲା 'ସଂବଲପୁର' ଏବଂ ଅତି ବେଶିହେଲେ କେବଳ ଅଭିଜାତ ସ୍ତରରେ ନାଁହେଲା 'କୋଶଳ'। ବିଂଶ ଶତାବ୍ଦୀର ଶେଷ ଦୁଇ ଦଶନ୍ଧିରୁ ଆରମ୍ଭ କରି ଆଞ୍ଚଳିକ ସ୍ୱାଭିମାନ ଓ ଅସ୍ମିତାକୁ ନେଇ ଯେତେବେଳେ ଆନ୍ଦୋଳନ ତେଜିଲା, ସେତେବେଳେ ସମଗ୍ର ପଶ୍ଚିମ ଓଡ଼ିଶାର ଭାଷା, ସଂସ୍କୃତି, ପରମ୍ପରା ଏବଂ ସର୍ବୋପରି ବିବିଧତାକୁ ଧରି ରଖିବା ପାଇଁ ଏକ ସର୍ବମାନ୍ୟ ନାମର ଆବଶ୍ୟକତା ପଡ଼ିଲା। ଏଣିକି ସଂବଲପୁରକୁ ଏକ ସହରର ନାମ ରୂପରେ ଲୋକ ଗଣିଲେ; କୋଶଳ ଅଧିକ ସର୍ବମାନ୍ୟ ହେବାର ସାମର୍ଥ୍ୟ ରଖିଲା। ସଂବଲପୁର ସ୍ଥାନରେ 'କୋଶଳ'କୁ ପଶ୍ଚିମ ଓଡ଼ିଶାର ସମାର୍ଥବୋଧକ ଶବ୍ଦ ଭାବରେ ଗ୍ରହଣ କରିବା ପଛରେ ଉକ୍ତ ବିଶାଳ କ୍ଷେତ୍ରର ସଂସ୍କୃତି ଓ ଭାଷାଭିତ୍ତିକ ବିବିଧତାକୁ ଆପଣେଇ

ନେବାର ଓ ଭାଷା ଅସ୍ମିତାର ଆନ୍ଦୋଳନକୁ ବ୍ୟାପକ ରୂପ ଦେବାର ଆଗ୍ରହକୁ ଦେଖି ହୁଏ। ଏହି ଆଗ୍ରହ କେବଳ ନାଁ ସ୍ତରରେ ସୀମିତ ନରହି ପ୍ରକୃତ ଅର୍ଥରେ ଦୃଶ୍ୟମାନ ହେବା କଥା। ଅର୍ଥାତ ପଶ୍ଚିମଓଡ଼ିଶା ଭିତରେ ଥିବା ବିବିଧତା ଅଣଦେଖା ନହେବା କଥା। ଏତିକି ହୋଇପାରିଲେ ଅସ୍ମିତା ଆନ୍ଦୋଳନ ଅଧିକ ସୁସ୍ଥ, ସବଳ, କ୍ଷୀପ୍ର ଓ ମାନବୀୟ ହେବ-ଏଥିରେ ଦ୍ୱିରୁକ୍ତି ନାହିଁ। ଆଗରୁ ପଶ୍ଚିମଓଡ଼ିଶା ପାଇଁ ଗୋଟାଏ ନାଁ ଥିଲା ସଂବଲପୁର; ଏବଂ ଆଉ ଗୋଟାଏ ନାଁ ଯୋଡ଼ିଲା 'କୋଶଳ'। ଏହା କୌଣସି ବିଡ଼ମ୍ବନାର ବିଷୟ ନୁହେଁ। ସେହିକ୍ରମରେ ଦେଖିଲେ ଆମରାଜ୍ୟ, ଦେଶ ଓ ଦେବାଦେବୀଙ୍କର ମଧ୍ୟ ଏକାଧିକ ନାଁ।

## ମରାଠାମାନଙ୍କ ପ୍ରତିପ୍ରତ୍ତି ବୃଦ୍ଧି

ଅଷ୍ଟାଦଶ ଶତାବ୍ଦୀର ଉତ୍ତରାର୍ଦ୍ଧରେ ସଂବଲପୁର ରାଜବଂଶର ଦ୍ରୁତ ପତନ ହେଲା। ତା'ର ଅନ୍ୟତମ ପ୍ରମୁଖ କାରଣ ଥିଲା ଆନ୍ତରିକ କଳହ। ୧୭୬୬ ମସିହାରେ ଚୌହାନ ରାଜା ଅଭୟ ସିଂହ ଓ ଦେଓ୍ୱାନ ଆକବର ରାୟଙ୍କ ମଧ୍ୟରେ କଳହ ଆରମ୍ଭ ହୋଇ କୁଳଭିତ୍ତିକ ଗୃହଯୁଦ୍ଧ ପରିସ୍ଥିତି ସୃଷ୍ଟିକଲା। ପ୍ରଥମେ ଆକବର ରାୟଙ୍କୁ ରାଜା ଦେଓ୍ୱାନ ପଦରୁ ବରଖାସ୍ତ କଲେ ଏବଂ ଏହାର ପରିଣାମସ୍ୱରୂପ ବରଖାସ୍ତ ଦେଓ୍ୱାନ ରାଜାଙ୍କୁ ବନ୍ଦୀକରି ରାଜାଙ୍କର ପ୍ରାୟ ୩୦୦ ସମର୍ଥକଙ୍କୁ ହତ୍ୟାକଲେ; ନିଜେ ରାଜାହେଲେ। ପୁଣି, ଅଭୟ ସିଂହଙ୍କ ଭାଇ ଜୟନ୍ତ ସିଂହ ଅନ୍ୟ କେତେକ ସାମନ୍ତ ରାଜାଙ୍କ ସମର୍ଥନରେ ସଂବଲପୁର ଅଧିକାର କଲେ। ଏହି ସମୟବେଳକୁ ମରାଠା ମାନଙ୍କ ପ୍ରତିପତ୍ତି ବୃଦ୍ଧିପାଇ ସାରିଥିଲା, ଯାହା ମୋଗଲ ପତନ ପରେ ଏକ ଶୂନ୍ୟସ୍ଥାନ ପୂରଣକାରୀ ଉପାଦାନ ସାବ୍ୟସ୍ତ ହୋଇଥିଲା। ଶିବାଜୀଙ୍କ ଅନ୍ତେ ମରାଠାମାନେ ଭାଗ ଭାଗ ହୋଇ ଏକ ମହାସଂଘ ରୂପେ କାର୍ଯ୍ୟ କରୁଥିଲେ। ଅର୍ଥାତ୍ ଗୋଟାଏ ଗୋଟାଏ ନିର୍ଦ୍ଦିଷ୍ଟ କ୍ଷେତ୍ରରେ ସ୍ଥାପିତ ହୋଇ ମରାଠା ଦଳଗୁଡ଼ିକ ଅଣ-ମରାଠା ଅଞ୍ଚଳଗୁଡ଼ିକୁ ସ୍ୱ-କର୍ତ୍ତୃତ୍ୱାଧୀନ କରୁଥିଲେ। ଆବଶ୍ୟକ ସ୍ଥଳେ ସେମାନେ ଏକଜୁଟ ହୋଇ ପରସ୍ପରକୁ ସାହାଯ୍ୟ କରୁଥିବାରୁ ଅନ୍ୟ ଶକ୍ତିମାନେ ସେମାନଙ୍କର ସମତୁଲ ହୋଇପାରୁ ନ ଥିଲେ। ନାଗପୁରରେ ସ୍ଥାପିତ ମରାଠାଦଳ ଥିଲା ଭୌଁସଲେ ରାଜାଙ୍କ ଅଧୀନରେ। ତାଙ୍କ ନେତୃତ୍ୱରେ ପୂର୍ବ ଭାରତରେ ମରାଠା ଶକ୍ତିର କାର୍ଯ୍ୟ ବିସ୍ତାର କାର୍ଯ୍ୟ ଚାଲିଥିଲା। ସେହି ସୂତ୍ରରେ ଭୌଁସଲେ ରାଜା ସଂବଲପୁର ବାଟ

ଦେଇ କଟକ ଏବଂ ସେଠାରୁ ବଙ୍ଗଉପରେ ଆକ୍ରମଣ କରୁଥିଲେ। ୧୭୫୧ ଖ୍ରୀ. ବେଳକୁ କଟକ ସମେତ ବାକି ପୂର୍ବଓଡ଼ିଶା ମରାଠାକବଳକୁ ଆସିଲା। ପୂର୍ବ ଓଡ଼ିଶାରେ ୧୭୫୧ରୁ ୧୮୦୩ ପର୍ଯ୍ୟନ୍ତ ମରାଠା ଶାସନ ଚାଲିଲା। ବଙ୍ଗ ଉପରେ ମଧ୍ୟ ବାରମ୍ବାର ଆକ୍ରମଣ ହେଲା। ନାଗପୁରରୁ କଟକ ଓ ବଙ୍ଗଆଡ଼କୁ ମରାଠା ସୈନ୍ୟ ଅଭିଯାନ ଚାଲିଲେ ବିଶେଷ କ୍ଷତିଗ୍ରସ୍ତ ହେଉଥିଲା ସଂବଲପୁର ଓ ରାସ୍ତାକଡ଼ର ଅନ୍ୟାନ୍ୟ ଗାଁ ଗଣ୍ଡା। ମରାଠା ସେନାର ଉଦ୍ଦେଶ୍ୟ ଥିଲା ଖାଦ୍ୟ ସଂଗ୍ରହ ଓ ଧନରତ୍ନ ଲୁଣ୍ଠନ। ହାତରେ ବଳ ଥିବାରୁ ସ୍ଥାନୀୟ ମହିଳାମାନଙ୍କ ଉପରେ ଧର୍ଷଣ ଓ ବଳାତ୍କାର କରିବାକୁ ମଧ୍ୟ ସେନା ହେଳା କରୁ ନଥିଲେ, ଯଦିଓ ତା' ପାଇଁ ମରାଠା ସେନାପତିଙ୍କର ଖୋଲା ଅନୁମତି ଦିଆଯାଇ ଥିବାର କୌଣସି ପ୍ରମାଣ ନାହିଁ। ଆକ୍ରମଣକାରୀ ମରାଠା ସେନାକୁ ଅନେକ ସମୟରେ ସଂବଲପୁର ରାଜା ଖଣ୍ଡଯୁଦ୍ଧ ଓ ଗରିଲା ଯୁଦ୍ଧରେ ପରାଜିତ କରିଥିବାର ମଧ୍ୟ ନଜିର ରହିଛି। ଏଥିରେ ତାଙ୍କୁ ନାଗପୁର-ସଂବଲପୁର ରାସ୍ତାକଡ଼ର ଗାଁମାନଙ୍କର ଗୌନ୍ତିଆ ଓ ଗାଁ ଲୋକ ବିଶେଷତଃ ସାହାଯ୍ୟ କରୁଥିଲେ କାରଣ ଏମାନେ ମରାଠା ଆକ୍ରମଣ ଯୋଗୁଁ ବିଶେଷ କ୍ଷତିଗ୍ରସ୍ତ ହେଉଥିଲେ। ଏଭଳି ଏକ ଖଣ୍ଡ ଯୁଦ୍ଧର କ୍ଷେତ୍ରପୀଠ ଥିଲା ସୋହେଲା ପାଖରେ ଥିବା ସିଂଘୋଡ଼ା ଘାଟି। ଗର୍ଭଣା ଗାଁର ଚମରା ଗୌନ୍ତିଆଙ୍କର ନେତୃତ୍ୱରେ ସେଠାରେ ସ୍ଥାନୀୟ ଲୋକ ମରାଠା ସେନାକୁ ପରାଜିତ କରିଥିବାର ସଂବଲପୁର ଗେଜେଟିଅର ଓ ଲୋକଶ୍ରୁତିରେ ଉଲ୍ଲେଖ ରହିଛି। ମରାଠା ସେନାରେ ଯେହେତୁ ଗଣ୍ଡ ଆଦିବାସୀ ରହିଥିଲେ, ସେମାନଙ୍କ ଆକ୍ରମଣ 'ଗଣ୍ଡମାରୁ' ନାମରେ କୁଖ୍ୟାତ ଥିଲା। ଏହି ଗଣ୍ଡମାରୁ ବା ମରାଠା ଆକ୍ରମଣ କଥା ଆଜି ମଧ୍ୟ ପଶ୍ଚିମ ଓଡ଼ିଶାର ପୁରପଲ୍ଲୀରେ ଶ୍ରୁତିରେ ବିଦ୍ୟମାନ।

୧୭୬୬ର ଗୃହଯୁଦ୍ଧ ସ୍ଥିତି ମରାଠାମାନଙ୍କୁ ସଂବଲପୁର ରାଜନୀତିରେ ହସ୍ତକ୍ଷେପ କରିବାକୁ ଅବସର ଦେଲା। ଆଗରୁ ସେମାନେ ଏହାକୁ ଏକ ରହଣିସ୍ଥଳ ରୂପେ ବ୍ୟବହାର କରୁଥିଲେ। ୧୭୯୩ରେ ଭୋଁସଲେ ରାଜା ସଂବଲପୁର ଅଧିକାର କଲେ। ମରାଠା ଆକ୍ରମଣରୁ ସୁରକ୍ଷା ପାଇଁ ସଂବଲପୁର ରାଜା ବାର୍ଷିକ ୩୨ ହଜାର ସଂବଲପୁରୀ ଟଙ୍କା, ଯାହାର ବଜାର ମୂଲ୍ୟ ଥିଲା ୧୬ ହଜାର ଟଙ୍କା, ପେଶକଶ ଦେବାକୁ ରାଜି ହେଲେ ଏବଂ

ଭୋଁସଲେମାନଙ୍କର ସାର୍ବଭୌମତ୍ୱକୁ ସ୍ୱୀକାର କଲେ। ପ୍ରତି ବଦଳରେ, ତାଙ୍କୁ ସଂବଲପୁରର(କରଦ) ରାଜା ରୂପରେ ମରାଠା ସ୍ୱୀକୃତି ପ୍ରାପ୍ତ ହେଲା। ଏହି ବ୍ୟବସ୍ଥା ୧୮୦୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଚାଲୁ ରହିଲା। ଅର୍ଥାତ୍ ପୂର୍ବ ଓଡ଼ିଶା ଯଦି ୧୭୫୧ରେ ମରାଠା ଅଧିକୃତ ହେଲା, ପଶ୍ଚିମ ଓଡ଼ିଶା ଅଧିକୃତ ହେଲା ୧୭୯୩ରେ। ଦ୍ୱିତୀୟତଃ ଅଧିକାରଭୁକ୍ତ ହେବାପୂର୍ବରୁ ପଶ୍ଚିମ ଓଡ଼ିଶା ମରାଠା ଲୁଟର ଯଥେଷ୍ଟ ଶିକାର ହୋଇସାରିଥିଲା। ତୃତୀୟତଃ, ମରାଠାମାନେ ବଙ୍ଗ ଅଧିକାରକୁ ପ୍ରମୁଖତା ଦେଉଥିବାରୁ ଆରମ୍ଭରେ କେତେ ବର୍ଷ ସଂବଲପୁର ଉପରେ ଧ୍ୟାନ କେନ୍ଦ୍ରିତ କରି ପାରିନଥିଲେ। ଊନବିଂଶ ଶତାବ୍ଦୀର ଆରମ୍ଭ ବେଳକୁ ପୁଣିଥରେ ରାଜନୀତିର ପୃଷ୍ଠଭୂମି ବଦଳିଲା। ଭାରତୀୟ ରାଜନୀତିରେ ଇଂରେଜମାନଙ୍କର ଉତ୍‌ଥାନ ଯୋଗୁଁ ମରାଠାମାନେ ନିରନ୍ତର ଯୁଦ୍ଧରତ ରହିଲେ। ତତ୍‌କାଳୀନ ଅନ୍ୟାନ୍ୟ ଭାରତୀୟ ଶକ୍ତିମାନେ ମରାଠାବିରୋଧୀ ହୋଇଥିବାରୁ ଅଧିକାଂଶ ସମୟରେ ଯୁଦ୍ଧ ମରାଠା ବନାମ ବାକିମାନେ(ଇଂରେଜ ସମେତ) ଭଳି ହେଉଥିଲା। ଏହାର ଅର୍ଥ ହେଲା ମରାଠାମାନଙ୍କର ଯୁଦ୍ଧ ଖର୍ଚ୍ଚ ଖୁବ୍ ବଢ଼ିଗଲା, ଯାହାକୁ ଭରଣା କରିବାପାଇଁ ରାଜସ୍ୱ ଅସୁଲି ଉପରେ ଜୋର୍ ଦିଆଗଲା। ଏହି ପରିପ୍ରେକ୍ଷୀରେ ୧୮୦୦ ମସିହାରେ ଭୋଁସଲେ ରାଜା ସଂବଲପୁରକୁ ପ୍ରତ୍ୟକ୍ଷ ଶାସନାଧୀନ କରିବାକୁ ଚାହିଁଲେ, କାରଣ ତଦ୍ୱାରା ଅଧିକ ରାଜସ୍ୱ ଅସୁଲିର ସମ୍ଭାବନା ରହିଥିଲା। ଏହି ସମୟରେ ଯାହିଁ ଯେଉଁଠି ମରାଠା ଅଧିକାରୀ ନିଯୁକ୍ତ ହୋଇଥିଲେ, ସେମାନଙ୍କୁ କମ୍ ସମୟର ବ୍ୟବଧାନରେ ପଦଚ୍ୟୁତ ହେବାକୁ ପଡୁଥିଲା, କାରଣ ସେମାନେ ଧାର୍ଯ୍ୟମତେ ରାଜସ୍ୱ ଅସୁଲି କରିପାରୁ ନଥିଲେ। ୧୭୫୧ରୁ ୧୮୦୩ ମଧ୍ୟରେ ଓଡ଼ିଶାରେ ମୋଟ ଦଶଜଣ ସୁବାଦାର (ସର୍ବୋଚ୍ଚ ମରାଠା ଅଧିକାରୀ ବା ପ୍ରଶାସକ) ନିଯୁକ୍ତ ହୋଇଥିଲେ। ଏମାନେ ସମସ୍ତେ ବର୍ଦ୍ଧିଷ୍ଣୁ ରାଜସ୍ୱ ଅସୁଲ କରି ନପାରି ଗାଦିଚ୍ୟୁତ ହୋଇଥିଲେ। ସମସ୍ୟା ହେଲା ଯେ, ଇଂଲଣ୍ଡରେ ଶିଳ୍ପ ବିପ୍ଳବ ସାଙ୍ଗକୁ କୃଷିବିପ୍ଳବ ମଧ୍ୟ ଘଟିଥିଲା ଓ କୃଷି ଉତ୍ପାଦନର ପରିମାଣ ବୃଦ୍ଧି ପାଇଥିଲା। ହେଲେ, ଭାରତରେ ସେହି ପୁରୁଣା କୃଷିପଦ୍ଧତିରୁ ରାଜାମାନେ ରାଜସ୍ୱ ବୃଦ୍ଧିକରି ରାଜ୍ୟ ବ୍ୟବସ୍ଥାର ବର୍ଦ୍ଧିତ ବ୍ୟୟଭାରକୁ ପୂରଣ କରିବାକୁ ଚେଷ୍ଟା କରୁଥିଲେ। ଆୟର ବିକଳ୍ପ ସ୍ରୋତ ନଥିଲା। ରାଜା ଆଧୁନିକ ଅସ୍ତ୍ର ଶସ୍ତ୍ର ଯୋଗାଡ଼ କରିବାପାଇଁ କୃଷି ରାଜସ୍ୱ ଆଶ୍ରିତ ରହୁଥିଲେ। କର ଅସୁଲି ପାଇଁ ରାଜା ଓ ଅଧିକାରୀ ବର୍ଗର ଯଥେଚ୍ଛାଚାରକୁ ମଧ୍ୟ

ଏହି ସନ୍ଦର୍ଭରେ ଦେଖିହେବ। ମୋଟ କଥା ହେଲା ଯେ, ଏହି ଜଟିଳ ପରିସ୍ଥିତି ଯୋଗୁଁ ସ୍ଥାନୀୟ ସମୁଦାୟ ଓ ମରାଠା ଶାସକଙ୍କ ମଧ୍ୟରେ ବୈରଭାବ କ୍ରମାଗତ ବୃଦ୍ଧି ପାଇଲା।

## ଇଂରେଜ କବଳରେ ସଂବଲପୁର

୧୮୦୩ରେ ଇଂରେଜ ସେନା ଜର୍ଜ ହାରକୋର୍ଟଙ୍କ ନେତୃତ୍ୱରେ ମରାଠାମାନଙ୍କଠାରୁ କଟକ ଅଧିକାର କଲେ। ତା' ପୂର୍ବରୁ ଦକ୍ଷିଣ ଓଡ଼ିଶା ହାଇଦ୍ରାବାଦର ନିଜାମଙ୍କଠାରୁ ସେମାନଙ୍କୁ ପ୍ରାପ୍ତ ହୋଇସାରିଥିଲା। ୧୮୦୪ରୁ ଇଂରେଜମାନେ ସଂବଲପୁର ଅଧିକାର କରିବାକୁ କୂଟନୀତି ପ୍ରୟୋଗକଲେ। ସ୍ଥାନୀୟ ରାଜାଙ୍କର ମରାଠା ପ୍ରତି ଥିବା ବୈରଭାବ ଏହି ବେଳାରେ କାମରେ ଆସିଲା। ସେତେବେଳକୁ ସଂବଲପୁର, ସୋନପୁର ଓ ବଉଦ ରାଜାଙ୍କୁ ନାଗପୁରରେ ଭୋଁସଲେ ରାଜା ରଘୁଜୀ ରାଓ (ଦ୍ୱିତୀୟ) ବନ୍ଦୀ କରି ରଖିଥାନ୍ତି। ମରାଠା ସ୍ଥାନରେ ଇଂରେଜର ବଶ୍ୟତା ସ୍ୱୀକାରକଲେ ବାର୍ଷିକ ଦେୟଦେବାକୁ ପଡ଼ିବ ନାହିଁ, ରାଜା କାରାଗାରରୁ ମୁକ୍ତିପାଇବେ ତଥା ମରାଠା ଅତ୍ୟାଚାରରୁ ନିବୃତ୍ତି ମିଳିବ- ଏହି ଆଶାରେ ସଂବଲପୁର ରାଣୀ ରତନକୁମାରୀ, ସୋନପୁରର ରାଣୀ ଲକ୍ଷ୍ମୀପ୍ରିୟା ଓ ବଉଦର ରାଣୀ ଜଗଦୀଶ୍ୱରୀ ଦେଓ ୧୮୦୪ ଜାନୁଆରୀ ୪ ତାରିଖରେ ଇଂରେଜମାନଙ୍କ ସହ ଏକ ଚୁକ୍ତିନାମା ସ୍ୱାକ୍ଷରକଲେ। ଏହା ଫଳରେ ମରାଠା ତିରୋହିତ ହେଲା ଏବଂ ମରାଠା ପ୍ରଶାସକ ତାନ୍ତିଆ ଫଡ଼ନାବିଶଙ୍କ ସ୍ଥାନରେ ସଂବଲପୁରରେ ପ୍ରଶାସକ ରୂପରେ ମେଜର ବ୍ରାଉଟନ ଅବସ୍ଥାପିତ ହୋଇ ଆସିଲେ। ଏହା ପରେ ପରେ ରାୟଗଡ଼, ସାରଂଗଡ଼, ରେଢ଼ାଖୋଲ, ଗାଙ୍ଗପୁର, ବାମଣ୍ଡା, ଶକ୍ତି ଓ ବରଗଡ଼ର ରାଜା-ଜମିଦାରମାନେ ମଧ୍ୟ ବ୍ରାଉଟନଙ୍କ ସହ ଇଂରେଜମାନଙ୍କ ବଶ୍ୟତା ସ୍ୱୀକାର କରି ଚୁକ୍ତିନାମା ସ୍ୱାକ୍ଷର କଲେ। ଅର୍ଥାତ୍ ୧୮୦୪ରେ ପଶ୍ଚିମ ଓଡ଼ିଶା ଅଧିକାରପାଇଁ ଇଂରେଜମାନଙ୍କୁ ସ୍ଥାନୀୟ ରାଜା-ଜମିଦାରମାନଙ୍କ ବିରୁଦ୍ଧରେ ଯୁଦ୍ଧ କରିବାକୁ ପଡ଼ି ନ ଥିଲା। ବରଂ ମରାଠା ଅତ୍ୟାଚାରର ବିକଳ୍ପ, ତ୍ରାଣକର୍ତ୍ତାଭାବରେ ସେମାନଙ୍କୁ ସ୍ୱାଗତ କରାଯାଇଥିଲା। ପୂର୍ବରୁ ୧୮୦୩ରେ ପୂର୍ବ ଓଡ଼ିଶା ଅଧିକାର ବେଳେ ମଧ୍ୟ ଇଂରେଜମାନଙ୍କର ସମାନ ଅନୁଭୂତି ହୋଇଥିଲା।

ଊନବିଂଶ ଶତାବ୍ଦୀର ପ୍ରଥମ ଦଶକରେ କଂପାନି ଶାସନର ବିଶେଷତ୍ୱ

ହେଲା ଏହାର ଯୁଦ୍ଧଖୋର ପ୍ରବୃତ୍ତି ଏବଂ ରାଜ୍ୟବିସ୍ତାର ନୀତି। ଏହି ନୀତିର କର୍ଣ୍ଣଧାର ଥିଲେ ଗଭର୍ଣ୍ଣର ଜେନେରାଲ ଲର୍ଡ ୱେଲସଲି। ତାଙ୍କର ଆକ୍ରମଣାତ୍ମକ ରାଜ୍ୟବିସ୍ତାର ନୀତି ଯୋଗୁଁ ଇଷ୍ଟ ଇଣ୍ଡିଆ କଂପାନିର ଋଣ ପରିମାଣ ବୃଦ୍ଧି ପାଇଲା। ୧୭୯୯ରେ କଂପାନିର ମୋଟ ଋଣ ଥିଲା ୧୭୦ ଲକ୍ଷ ପାଉଣ୍ଡ, ଯାହା ୧୮୦୬ ବେଳକୁ ବୃଦ୍ଧି ପାଇ ହେଲା ୩୧୦ ଲକ୍ଷ ପାଉଣ୍ଡ। ଏଠାରେ କଂପାନିର ଋଣକୁ ରାଜ୍ୟ ବିସ୍ତାର ପାଇଁ ପୁଞ୍ଜିନିବେଶ ଅର୍ଥରେ ଦେଖାଯିବା କଥା। ସେପଟେ ୟୁରୋପରେ ନେପୋଲିଅନଙ୍କ ରାଜନୀତି ଓ ସାମରିକ ଆବିର୍ଭାବ ଯୋଗୁଁ ଇଂଲଣ୍ଡ ପ୍ରମାଦ ଗଣିଲା। ଏହି ସ୍ଥିତିରେ ଇଂଲଣ୍ଡର ପାର୍ଲାମେଣ୍ଟରେ ଓ କଂପାନିର ନିର୍ଦ୍ଦେଶକ ମଣ୍ଡଳୀରେ କଂପାନିର ଆକ୍ରମଣାତ୍ମକ ରାଜ୍ୟବିସ୍ତାର ନୀତିକୁ କଟୁ ସମାଲୋଚନା କରାଗଲା। ଏହାର ଶିକାର ହେଲେ ଲର୍ଡ ୱେଲସଲି; ତାଙ୍କୁ ପଦମୁକ୍ତ କରାଗଲା। ତାଙ୍କ ସ୍ଥାନରେ ଗଭର୍ଣ୍ଣର ଜେନେରାଲ ହୋଇଆସିଲେ ଜି.ଏଚ୍.ବାର୍ଲୋ। ସେ ଶାନ୍ତି ନୀତି ଅବଲମ୍ବନ କଲେ; ଭୋଁସଲେଙ୍କ ସହିତ ଶାନ୍ତି ଚୁକ୍ତିକଲେ; ସଂବଲପୁର ଓ ପାଟଣା ରାଜ୍ୟ ଭୋଁସଲେଙ୍କ ହାତକୁ ଫେରାଇଦେଲେ। ଭୋଁସଲେଙ୍କ ପକ୍ଷରୁ ରାଣୀ ରତନକୁମାରୀ ହେଲେ ସଂବଲପୁରର କରଦରାଣୀ। ଏଠାରେ ସ୍ପଷ୍ଟ ହେବା କଥା ଯେ ଲର୍ଡ ୱେଲସଲିଙ୍କ ଯୁଦ୍ଧନୀତି ବା ବାର୍ଲୋଙ୍କର ଶାନ୍ତିନୀତି ସେମାନଙ୍କର ବ୍ୟକ୍ତିକ ଉପଲବ୍ଧି ନ ଥିଲା; ବରଂ କଂପାନି ନୀତିର ପରିଣାମ ଥିଲା।

ଏହି ମରାଠା ବ୍ୟବସ୍ଥା ଲାଗୁ ହେବା ଉତ୍ତାରୁ ସଂବଲପୁରରେ ପୁଣି ମରାଠା ଶାସନ ଓ ଅତ୍ୟାଚାର ଆରମ୍ଭ ହେଲା। ଅନ୍ୟପକ୍ଷରେ ଇଂରେଜମାନେ ରାଣୀଙ୍କୁ ମରାଠା ବିରୁଦ୍ଧରେ ଲଢ଼ିବା ପାଇଁ ପ୍ରୋତ୍ସାହିତ କଲେ। ଏହା ଏକ ଜଟିଳ ପରିସ୍ଥିତି ସୃଷ୍ଟିକଲା। ଇଂରେଜ ଓ ମରାଠା ମଧ୍ୟରେ ଛକାପଂଝା ଚାଲିଲା ଓ ତହିଁରେ ରାଣୀଙ୍କୁ ଉପଯୋଗ କରାଗଲା। ଶେଷକୁ ରାଣୀ ପରିସ୍ଥିତିର ମୁକାବିଲା କରି ନପାରି ମାସିକ ୬୦୦ ଟଙ୍କା ପେନସନ ନେଇ (ଇଂରେଜମାନଙ୍କ ପାଖରୁ) କଟକରେ ଇଂରେଜ ସୁରକ୍ଷାରେ ଅବସ୍ଥାନ କଲେ। ୧୯୬୧ରେ କାଶୀ ତୀର୍ଥଯାତ୍ରା କାଳରେ ତାଙ୍କର ଦେହାନ୍ତ ହେଲା। ଏପଟେ୧୮୧୭ରେ ଇଂରେଜମାନେ ମିଳିତ ମରାଠା ଶକ୍ତିକୁ ପରାଜିତ କଲେ। ଏଣିକି ସଂବଲପୁର ଇଂରେଜ କର୍ତ୍ତୃତ୍ୱକୁ ଆସିଲା। ୧୮୦୪ରୁ ମରାଠାମାନଙ୍କ ହାତରେ ବନ୍ଦୀଥିବା ସଂବଲପୁରର ରାଜା ଜୟନ୍ତ ସିଂହ ଓ ତାଙ୍କପୁଅ ମହାରାଜ ସାଏ ମୁକ୍ତି ପାଇଲେ;

ଜୟନ୍ତ ସିଂହ ସଂବଲପୁରର ସାମନ୍ତ ରାଜା ଘୋଷିତ ହେଲେ।

## ସ୍ୱାଧୀନତା ସଂଗ୍ରାମର ପରିଭାଷା

୧୮୧୭ ପର୍ଯ୍ୟନ୍ତ ସଂବଲପୁରର ରାଜନୀତିକ ସ୍ଥିତିକୁ ଯଦି ବିଚାର କରାଯାଏ, ମରାଠା ଅତ୍ୟାଚାର ଓ ମରାଟା ଶାସନରୁ ମୁକ୍ତି ପାଇବା ପାଇଁ ପ୍ରୟାସ କରିବା ଥିଲା ଏଠାକାର ସ୍ୱାଧୀନତା ସଂଗ୍ରାମ। ସେତେବେଳେ ସଂବଲପୁରର ନେତୃତ୍ୱ ଅଭିଜାତବର୍ଗ ଯାଏଁ ସୀମିତ। ଏହି ନେତୃତ୍ୱ ଇଂରେଜମାନଙ୍କ ସହଯୋଗ କାମନା କରୁଥିଲା, କାରଣ ମରାଠାମାନେ ଥିଲେ ଉଭୟ ସଂବଲପୁର ଓ ଇଂରେଜର ସାଧାରଣ ଶତ୍ରୁ। ୧୮୧୭ ବେଳକୁ ସଂବଲପୁର ଇଂରେଜର ସହଯୋଗ କାମନା କଲାବେଳେ, ପୂର୍ବରୁ ଇଂରେଜ ଅଧିକାରକୁ ଆସିଥିବା କ୍ଷେତ୍ରଗୁଡ଼ିକରେ ଇଂରେଜ ବିରୋଧି ବିଦ୍ରୋହମାନ ଆରମ୍ଭ ହୋଇସାରିଥିଲା। ୧୮୦୪ର ଜୟୀ ରାଜଗୁରୁଙ୍କ ବିଦ୍ରୋହ ଓ ୧୮୧୭ର ବକ୍ସି ଜଗବନ୍ଧୁଙ୍କ ବିଦ୍ରୋହ ହେବ ଏହାର ବଡ଼ ଉଦାହରଣ, କାରଣ ବିଦ୍ରୋହ ଘଟିଥିବା କ୍ଷେତ୍ର ଖୋର୍ଦ୍ଧା ୧୮୦୩ରେ ଇଂରେଜ ଉପନିବେଶର ଅଧୀନ ହୋଇସାରିଥିଲା। ତା' ପୂର୍ବରୁ ବଙ୍ଗରେ ୧୭୬୭ରେ ସନ୍ନ୍ୟାସୀ ବିଦ୍ରୋହ ଦେଖିବାକୁ ମିଳିଥିଲା, କାରଣ ବଙ୍ଗ ୧୭୫୭ରେ ଇଂରେଜ ଅଧିକାରଭୁକ୍ତ ହୋଇଥିଲା। ଏହି ଦୃଷ୍ଟିରୁ ସ୍ୱାଧୀନତା ସଂଗ୍ରାମକୁ ଏକ ବ୍ୟାପକ ପରିଧିରେ ଦେଖାଯିବା କଥା। ଇଂରେଜ ବିରୋଧିତାରେ ତାକୁ ସୀମିତ ନ ରଖି ଅତ୍ୟାଚାର, ଅନାଚାର ଓ ଆକ୍ରମଣରୁ ନିବୃତ୍ତି ପାଇଁ ସଂଗ୍ରାମ ପରିପ୍ରେକ୍ଷୀରେ ଦେଖାଯିବା କଥା, ତେଣିକି ତାହା ଇଂରେଜ ବିରୋଧୀ ହେଉ ବା ମରାଠା ବିରୋଧୀ ! ଶାନ୍ତି, ସ୍ୱାଭିମାନ ଓ ସ୍ୱାଧିକାର ପାଇଁ ଏକ ଲଢ଼େଇ ଭାବରେ ତାକୁ ଚିହ୍ନିତ କରାଯିବା କଥା। ସ୍ୱାଧୀନତା ସଂଗ୍ରାମର ପରିଭାଷା ବଦଳିରେ ସଂବଲପୁର ପଛେଇ ନଥିଲା ବୋଲି ଜାଣି ହେବ। ପରବର୍ତ୍ତୀ ସମୟରେ ଯେତେବେଳେ ସଂବଲପୁରରେ ଇଂରେଜ ଶାସନ ଦୃଢ଼ତର ହେଲା, ତାହାରି ମାଧ୍ୟମରେ ଆର୍ଥିକ ଶୋଷଣର ମାତ୍ରା ବୃଦ୍ଧି ପାଇଲା। କର ଅସୁଲିକୁ ପ୍ରମୁଖତା ଦେଇ କଂପାନୀ ସରକାର ପୂର୍ବରୁ ପାରମ୍ପରିକ ଭାବେ ନିଷ୍କର ଜମି ଭୋଗ କରୁଥିବା ସାମନ୍ତ ଓ ପ୍ରତିପତ୍ତିଶାଳୀ ବର୍ଗ ଉପରେ କର ଧାର୍ଯ୍ୟ କଲେ। ସଂବଲପୁର ରାଜାଙ୍କୁ କଣ୍ଢେଇ ତୁଲ୍ୟ ବ୍ୟବହାର କରି ସ୍ଥାନୀୟ ସ୍ୱାଭିମାନକୁ ଆହତ କଲେ। ସାମାଜିକ ଓ ସାଂସ୍କୃତିକ କ୍ଷେତ୍ରରେ ମଧ୍ୟ ଜାତ୍ୟାଭିମାନକୁ ଉପେକ୍ଷା କରାଗଲା। ପରିଣାମସ୍ୱରୂପ, ସ୍ଥାନୀୟ ଅଭିଜାତ ବର୍ଗର ନେତୃତ୍ୱରେ

ଲୋକ ଇଂରେଜ ଶାସନର ବିରୋଧ କଲେ। ସୁରେନ୍ଦ୍ର ସାଏ ହେଲେ ଉକ୍ତ ବିରୋଧର ପ୍ରତୀକ। ଏହି ପ୍ରକ୍ରିୟାକୁ ଅନନ୍ୟ ବୋଲି ଦାବି କରିବାର କୌଣସି କାରଣ ନାହିଁ, କାରଣ ସେହି କାଳାବଧିରେ ୧୮୫୭ର ଗଣସଂଗ୍ରାମ ସମେତ ଅନ୍ୟୁନ ୯୬୬ଟି ସାନବଡ଼ ନାଗରିକ ଓ ଗଣବିଦ୍ରୋହ (Civil and pupular uprisings) ଏହି ଭୂଖଣ୍ଡରେ ସଂଘଟିତ ହୋଇଥିଲା। ଏହିସବୁ ବିଦ୍ରୋହରେ ପ୍ରତିଭାଗୀ ଥିଲେ ସାଧାରଣ କୃଷକ, କାରିଗର ଏବଂ ସ୍ଥାନୀୟ କୁଳୀନ ଓ ଅଭିଜାତ ବର୍ଗ; ନେତୃତ୍ୱ ରହିଥିଲା ଦେଶୀୟ ରାଜା ଜମିଦାର ଓ ସେମାନଙ୍କ ଉଚ୍ଚାଧିକାରୀ ବର୍ଗ (ଯେମିତି ଦେୱାନ, ମନ୍ତ୍ରୀ) ହାତରେ। ବିଦ୍ରୋହୀମାନେ ଯେତେବେଳେ ଇଂରେଜମାନଙ୍କର ଆଧୁନିକ ଅସ୍ତ୍ରଶସ୍ତ୍ରର ମୁକାବିଲା କରିବା ପାଇଁ ପାରମ୍ପରିକ ଅସ୍ତ୍ରର ବ୍ୟବହାର କରୁଥିଲେ। ରାଜନୀତିକ ପରିବର୍ତ୍ତନ ସକାଶେ ଅହିଂସ ମାର୍ଗର ପ୍ରଚଳନ କଥା ଜଣାନଥିଲା। ବିଦ୍ରୋହୀମାନଙ୍କୁ ମହାର୍ଘ ପାଶ୍ଚାତ୍ୟ ଅସ୍ତ୍ରଶସ୍ତ୍ର ମିଳି ପାରି ନଥିଲା।

୧୮୫୭ ଗଣସଂଗ୍ରାମ ପରେ ଭାରତର ରାଜନୀତିରେ ପଟ୍ଟ ପରିବର୍ତ୍ତନ ହେଲା। ଏଣିକି ଅର୍ଥାତ୍ ଊନବିଂଶ ଶତାବ୍ଦୀର ଉତ୍ତରାର୍ଦ୍ଧରେ ଆଧୁନିକ ଶିକ୍ଷିତବର୍ଗ ରାଜନୀତିର ମଞ୍ଚ ଧରିଲେ। ରାଜନୀତି ରାଜଦ୍ୱାରକୁ ଆସି ଜନପଥରେ ପହଞ୍ଚିଲା। ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗରେ ଫରାସୀ ବିପ୍ଳବ(୧୭୮୯) ସଂଘଟିତ ହୋଇ କୁଳୀନ ଓ ଅଭିଜାତ ବର୍ଗ (ସାମନ୍ତ ବର୍ଗ) ସ୍ଥାନରେ ମଧ୍ୟବର୍ଗକୁ ରାଜନୀତିର କେନ୍ଦ୍ରକୁ ଆଣିଥିଲା। ସାଧାରଣ ବର୍ଗର ନାଁ ନେଇ ମଧ୍ୟବର୍ଗ ରାଜନୀତିକୁ ନିଜ ହାତକୁ ନେଇଥିଲା। ୧୮୫୭ର ପରେ ଭାରତରେ ମଧ୍ୟ ତଦ୍ରୂପ ନେତୃତ୍ୱର ବିକାଶ ଘଟିଲା। ଫଳତଃ ମହାତ୍ମାଗାନ୍ଧିଙ୍କ ରାଜନୀତିକ ଉତ୍ଥାନର ବହୁ ପୂର୍ବରୁ ଭାରତର ବୌଦ୍ଧିକବର୍ଗ କେବଳ ରାଜନୀତିକ ସଂଗ୍ରାମର ପ୍ରମୁଖ ସାଜି ନଥିଲେ, ତା' ସହିତ ଅହିଂସା ମାର୍ଗରେ ଇଂରେଜ ଉପନିବେଶବାଦର ବିରୋଧ କରିବାକୁ ମଧ୍ୟ ସ୍ଥିର ନିଶ୍ଚିତ ହୋଇସାରିଥିଲେ। ଇତିହାସର ଏହି ଘଡ଼ିସନ୍ଧି ମୁହୂର୍ତ୍ତରେ ଅହିଂସା ମାର୍ଗରେ ଉପନିବେଶବାଦର ବିରୋଧ କରିବା ହେଲା ସ୍ୱାଧୀନତା ସଂଗ୍ରାମର ନୂଆ ଅବଧାରଣା। ସଂବଲପୁରରେ ଓଡ଼ିଆ ଭାଷାର ରକ୍ଷାପାଇଁ ଯେଉଁ ଆନ୍ଦୋଳନ, ତାକୁ ସ୍ୱାଧୀନତା ସଂଗ୍ରାମର ସେହି ବ୍ୟାପକ ପରିଧି ଭିତରେ ଦେଖିହେବ। ଆନ୍ଦୋଳନ ଓ ଅନ୍ୟାନ୍ୟ ପ୍ରଶାସନିକ କାରଣରୁ ସଂବଲପୁର କେନ୍ଦ୍ର ପ୍ରଦେଶରୁ ଆସି ବଙ୍ଗର ଓଡ଼ିଶା ଡିଭିଜନ ସହିତ ୧୯୦୫ରେ ସମିଶ୍ରିତ ହେଲା, ହିନ୍ଦୀବଦଳରେ ଓଡ଼ିଆ ପଶ୍ଚିମ ଓଡ଼ିଶାର ରାଜଭାଷା ହେଲା ଓ ଅଧ୍ୟୟନ ଓ ଶିକ୍ଷାଳୟର ଭାଷା ରୂପେ

ଓଡ଼ିଆକୁ ସ୍ୱୀକୃତି ମିଳିଲା। ଏହାକୁ ସ୍ଥାନୀୟ ସ୍ତରରେ ଭାଷା ଆନ୍ଦୋଳନର ତଥା ସର୍ବଭାରତୀୟ ସ୍ତରରେ ଉଦାରପନ୍ଥୀ ରାଜନୀତିର ଏକ ବିଶେଷ ଉପଲବ୍ଧିରୂପେ ଦେଖିହେବ।

## ଗଣ ଆନ୍ଦୋଳନର ଝଡ଼

୧୯୨୦ରେ ଉଦାରପନ୍ଥୀ ରାଜନୀତି ଗଲା; ତା' ସ୍ଥାନରେ ଆସିଲା ଗଣ ଆନ୍ଦୋଳନର ଝଡ଼। ୧୯୧୫ରେ ଦକ୍ଷିଣ ଆଫ୍ରିକାରୁ ଫେରି ମହାତ୍ମାଗାନ୍ଧି ହେଲେ ଭାରତୀୟ ସ୍ୱାଧୀନତା ସଂଗ୍ରାମର ଅଘୋଷିତ ମୁଖ୍ୟକର୍ତ୍ତା। ଓଡ଼ିଶାରେ ଆନ୍ଦୋଳନର ନେତୃତ୍ୱ ନେଲେ ଗୋପବନ୍ଧୁ ଦାସ ଏବଂ ତାଙ୍କ ସହକର୍ମୀମାନେ। ସେମାନେ ଆଞ୍ଚଳିକତା ଓ ମହାଭାରତୀୟତା ପରସ୍ପରର ଅନୁପୂରକ ବୋଲି ସାବ୍ୟସ୍ତ କଲେ। ୧୯୨୦ରେ ଉତ୍କଳ ସମ୍ମିଳନୀ (ସ୍ଥାପନ-୧୯୦୩) ଯାଇ ମିଶିଲା ଭାରତୀୟ ଜାତୀୟ କଂଗ୍ରେସରେ। ଓଡ଼ିଶା ରାଜନୀତିକୁ ଜାତୀୟ ସ୍ରୋତରେ ସାମିଲ କରିବାରେ ଗୋପବନ୍ଧୁ ଦାସଙ୍କୁ ଯେତେ ସହଯୋଗ କରିଥିଲେ ସତ୍ୟବାଦୀ ବନ ବିଦ୍ୟାଳୟ (ସ୍ଥାପନ-୧୯୦୯)ର ଶିକ୍ଷକ ଓ ଛାତ୍ରଗଣ, ତତୋଽଧିକ ମାତ୍ରାରେ ସାହାଯ୍ୟ କରିଥିଲେ ସଂବଲପୁରର ଚନ୍ଦ୍ରଶେଖର ବେହେରା, ଯିଏ ୧୯୧୯ରେ ପୁରୀଠାରେ ଅନୁଷ୍ଠିତ ହୋଇଥିବା ଉତ୍କଳ ସମ୍ମିଳନୀରେ ଅଧ୍ୟକ୍ଷତା ମଧ୍ୟ କରିଥିଲେ। ୧୯୨୦ରେ ଆଞ୍ଚଳିକ ନେତୃତ୍ୱ ଯଦି ଓଡ଼ିଶା ରାଜନୀତିକ ଆନ୍ଦୋଳନକୁ ଜାତୀୟ ସ୍ରୋତରେ ମିଶିବାକୁ ଦେଇ ନଥାନ୍ତେ, ତାହା କେତେ ବଡ଼ ଐତିହାସିକ ଭୁଲ ହୋଇନଥାନ୍ତା ! ସେମିତି, ଚନ୍ଦ୍ରଶେଖର ବେହେରାଙ୍କ ଭଳି ସ୍ଥାନୀୟ କର୍ମୀ ଓ ନେତାଙ୍କ ସହଯୋଗ ବିନା ଯେ ଗୋପବନ୍ଧୁ ଦାସ ଓଡ଼ିଶାରେ ଜାତୀୟତାର ମହାସ୍ରୋତ ବୁହାଇ ପାରିନଥାନ୍ତେ, ତାହା ଅନୁମାନ କରିହୁଏ।

୧୯୨୧ରେ ମହାତ୍ମାଗାନ୍ଧିଙ୍କ ଆହ୍ୱାନରେ ଅସହଯୋଗ ଆନ୍ଦୋଳନ ଯେତେବେଳେ ଆରମ୍ଭ ହେଲା, ସମଗ୍ର ପୂର୍ବଭାରତରେ ସମ୍ଭବତଃ ତହିଁରେ ପ୍ରଥମେ ଝାସ ଦେଇଥିଲା ସଂବଲପୁର ଏବଂ ତା ବି ସ୍ଥାନୀୟ ଜିଲ୍ଲାସ୍କୁଲର ଦଶମ ଓ ଏକାଦଶ ଶ୍ରେଣୀର ଛାତ୍ରମାନଙ୍କ ମାଧ୍ୟମରେ। ଜିଲ୍ଲା ସ୍କୁଲର ଛାତ୍ରମାନେ ୧୯୨୧ ଜାନୁଆରୀ ୩ ତାରିଖରେ, ଅର୍ଥାତ୍ ୧୯୨୦ ଡିସେମ୍ବର ୩୧ ତାରିଖରେ ନାଗପୁରଠାରେ ଅସହଯୋଗ ପାଇଁ କଂଗ୍ରେସ ଆହ୍ୱାନ ଦେବାର ମାତ୍ର ତିନି ଦିନ ମଧ୍ୟରେ ସ୍କୁଲ ବର୍ଜନକଲେ ଏବଂ ଅସହଯୋଗର ସମର୍ଥନରେ

ପଟୁଆରରେ ବାହାରିଲେ, ସଭା କଲେ। ସଂବଲପୁର ଜିଲ୍ଲା ସ୍କୁଲ କଥା ଯେତେବେଳେ ପାଟନାରୁ ପ୍ରକାଶିତ 'ସାର୍ଚ୍ଚ ଲାଇଟ' ଓ କଲିକତାରୁ ପ୍ରକାଶିତ 'ଆନନ୍ଦବଜାର ପତ୍ରିକା'ରେ ବାହାରିଲା, ଆନ୍ଦୋଳନରେ ଝାସଦେବା ପାଇଁ ଛାତ୍ର ଓ ଯୁବକମାନଙ୍କୁ ଓଡ଼ିଶା ଓ ଓଡ଼ିଶା ବାହାରେ ପ୍ରେରଣା ମିଳିଲା। ଅପେକ୍ଷାକୃତ ଅଜ୍ଞାତ ସଂବଲପୁରର କିଶୋର ଛାତ୍ରମାନେ, ତନ୍ମଧ୍ୟରୁ ଅଧିକାଂଶ ମୁସଲିମ ଛାତ୍ର, ଯେତେବେଳେ ଆନ୍ଦୋଳନକୁ ଡେଇଁ ଜାତୀୟ ସ୍ରୋତରେ ମିଶିଲେଣି, ବଡ଼ ବଡ଼ ସହରର ଛାତ୍ର ଯୁବକ ବି ଅସହଯୋଗକୁ ଆଦିର ନେବା କଥା ବୋଲି ଜାତୀତାବାଦୀମାନେ ଆହ୍ୱାନ ଦେଲେ। ଏହାର ପ୍ରତ୍ୟକ୍ଷ ପ୍ରମାଣ ଖୁବଶୀଘ୍ର ଅନୁଭୂତ ହେଲା। କଲିକତାରେ ଓକିଲାତି ପଢୁଥିଲେ ସଂବଲପୁରର ଭାଗିରଥୀ ମିଶ୍ର। ନୀଳକଣ୍ଠ ଦାସ 'ସତ୍ୟବାଦୀ' ସ୍କୁଲର ପ୍ରତିଷ୍ଠା ପରେ ନିରାଶ ହୋଇ ୧୯୧୮ରେ କଲିକତା ବିଶ୍ୱ ବିଦ୍ୟାଳୟରେ ଅଧ୍ୟାପକ ପଦରେ ଯୋଗ ଦେଇଥିଲେ। ସଂବଲପୁରର ଅସହଯୋଗ କଥା ଶୁଣି ଦୁହେଁ କଲିକତାରୁ ସଂବଲପୁର ଆସିଲେ; ଆନ୍ଦୋଳନରେ ଯୋଗ ଦେଲେ। ତେଣିକି ସଂବଲପୁରରେ (ଫ୍ରେଜର କ୍ଲବଠାରେ) ଜାତୀୟ ସ୍କୁଲ ପ୍ରତିଷ୍ଠା ହେଲା, 'ସେବା' ଓ 'ଉତ୍କଳ ସେବକ' ନାମରେ ଜାତୀୟବାଦୀ ପତ୍ରିକା ପ୍ରକାଶିତ ହେଲା; ପ୍ରତିଦିନ ସନ୍ଧ୍ୟାରେ ସଭାସମିତି ହେଲା। କିଶୋର ଛାତ୍ର ଓ  ନୀଳକଣ୍ଠ ଦାସଙ୍କ ଭଳି ଅଭିଜ୍ଞ ଶିକ୍ଷକ ମିଶି ଅସହଯୋଗକୁ ସଂବଲପୁରରେ ନେତୃତ୍ୱ ଦେଲେ। ଓଡ଼ିଶାର ଅନ୍ୟଆଡ଼କୁ ଆନ୍ଦୋଳନ ବ୍ୟାପିଲା। ଅନ୍ୟଅର୍ଥରେ କହିଲେ ଓଡ଼ିଶାର ଭାଷା ଆନ୍ଦୋଳନର ଯେମିତି ଶୁଭାରମ୍ଭ ହୋଇଥିଲା ସଂବଲପୁରରେ, ଗାନ୍ଧି ଆନ୍ଦୋଳନର ମଧ୍ୟ ମୂର୍ତ୍ତରୂପ ଦେଖିବାକୁ ମିଳିଲା ସଂବଲପୁରରେ। କିଶୋର ଓ ଅବୋଧ ପ୍ରତୀତ ହେଉଥିବା ଛାତ୍ରମାନେଥିଲେ ଗାନ୍ଧି ଆନ୍ଦୋଳନର ମଶାଲଧାରୀ। ସେମାନଙ୍କ ଆହ୍ୱାନରେ ବଡ଼ ଓ ଜ୍ୟେଷ୍ଠମାନେ ଆନ୍ଦୋଳନକୁ ଫେରି ଆସିଥିଲେ। ଫଳରେ, ଉପକୂଳ, ପଶ୍ଚିମ ଓଡ଼ିଶା, ଆଞ୍ଚଳିକତା, ଜାତୀୟତା, ଛାତ୍ର, ଶିକ୍ଷକ, ହିନ୍ଦୁ ଓ ମୁସଲିମ୍ ଆଦି ବିବିଧ ଉପାଦାନ ପରସ୍ପର ସହିତ ସମାହିତ ହେଲେ ଓ ଉପନିବେଶବାଦ ବିରୋଧୀ ମହାସ୍ରୋତ ଗଢ଼ିଲେ। ସଂବଲପୁର ପରି ଅଳ୍ପଜ୍ଞାତ ଅଞ୍ଚଳରେ ତେଜିଥିବା ସେହି ଦୀପଶିଖାମାନ ଯେ ଗାନ୍ଧି ଆନ୍ଦୋଳନକୁ ତେଜିଆନ କଲା, ଭାରତୀୟ ରାଷ୍ଟ୍ରୀୟ ଅସ୍ମିତାର ନିଅଁ ହେଲା-ଏହା ଅନସ୍ୱୀକାର୍ଯ୍ୟ।

ସଂବଲପୁରର ଅସହଯୋଗ ଆନ୍ଦୋଳନର ଏକ ବଡ଼ ବିଶେଷତ୍ୱ ଥିଲା ସାମ୍ପ୍ରଦାୟିକ ସଦ୍‌ଭାବ। ଯେଉଁ ପିଲାମାନେ ଜିଲ୍ଲା ସ୍କୁଲ ବର୍ଜନ କରିଥିଲେ,

ସେମାନଙ୍କ ମଧ୍ୟରେ ଆଗରେ ଥିଲେ ଲକ୍ଷ୍ମୀନାରାୟଣ ମିଶ୍ର, ଜଗନ୍ନାଥ ମିଶ୍ର, ବେଣୀମାନଧବ ସୁପକାର, କୃତାର୍ଥ ଆଚାର୍ଯ୍ୟ ଓ ଅବଦୁଲ ମାଜିଦ୍ ଆଦି। ସେତେବେଳର ସମ୍ବାଦପତ୍ରର ରିପୋର୍ଟ ଅନୁଯାୟୀ ପ୍ରାୟ ହଷ୍ଟେଲ ପିଲା ଓ ମୁସଲିମ ବ୍ୟବସାୟୀ, କେବଳ ସ୍ୱରାଜ ସଭାସମିତିରେ ସଭାପତିତ୍ୱ କରୁନଥିଲେ, ତା' ସହିତ ଆନ୍ଦୋଳନକୁ ପାଣ୍ଠଇ ସାହାଯ୍ୟ ମଧ୍ୟ ଦେଉଥିଲେ। ସଂବଲପୁରର ବ୍ରହ୍ମପୁରା ଗୁଡ଼ିରେ ମନ୍ଦିରରେ ଅନୁଷ୍ଠିତ ଏକ ସ୍ୱରାଜସଭାରେ ସେ ହିନ୍ଦୁ ଭାଇମାନଙ୍କ ସମ୍ମାନରେ ମୁସଲମାନ ଗୋହତ୍ୟା କରିବ ନାହିଁ ବୋଲି ଘୋଷଣା କରିଥିଲେ। ୧୯୨୦ ନଭେମ୍ବରରେ ଅନୁଷ୍ଠିତ ଲେଜିସଲେଟିଭ କାଉନସିଲ ନିର୍ବାଚନକୁ କଂଗ୍ରେସ ବହିଷ୍କାର କଲା ବୋଲି, ସଂବଲପୁରରେ ଜଣେ ବି ମୁସଲିମ ଭୋଟ ଦେଇନଥିଲେ। ଅସହଯୋଗକୁ ଏଭଳି ମୁସଲିମ ସମର୍ଥନ ମୂଳରେ ଥିଲା ଖିଲାଫତ ଆନ୍ଦୋଳନର ପ୍ରଭାବ। ମାତ୍ର ସ୍ଥାନୀୟ ମୁସଲିମ ସମାଜର ଉତ୍ସାହ ବିନା ଖିଲାଫତ ଯେ ପ୍ରଭାବହୀନ ହୋଇଥାନ୍ତା, ତାହା ସହଜରେ ଅନୁମେୟ।

ଭାରତଛାଡ଼ ଆନ୍ଦୋଳନ (୧୯୪୨) ସମୟରେ ମଧ୍ୟ ସଂବଲପୁର ପଛେଇ ଯାଇ ନଥିଲା। ଜିଲ୍ଲାରୁ ମୋଟ ୧୫୫ ଜଣ କଂଗ୍ରେସ କର୍ମୀ ଗିରଫ ହୋଇ ଜେଲଦଣ୍ଡ ଭୋଗିଥିଲେ। ସଂବଲପୁରରେ ଅନୁଷ୍ଠିତ ଅଗଷ୍ଟ ବିପ୍ଳବର ବିଶେଷତ୍ୱ ହେଲା ନାରୀ ନେତୃତ୍ୱ ଓ ଶାନ୍ତିପୂର୍ଣ୍ଣ ଆନ୍ଦୋଳନ। ଭାଗିରଥୀ ପଟ୍ଟନାୟକଙ୍କ ପତ୍ନୀ ଜମ୍ବୁବତୀ ଦେବୀ, ସମଲାଇ ପଦର (ବିଜେପୁର) ଗ୍ରାମର ପାର୍ବତୀ ଗିରି ଓ ତେଲିପଡ଼ାର ପାର୍ବତୀ ଦେବୀ ନିଜ ନିଜ ସ୍ତରରେ ଆନ୍ଦୋଳନକୁ ନେତୃତ୍ୱ ଦେଇଥିଲେ, ଯାହା ଆନ୍ଦୋଳନର ପୁରୁଷତାନ୍ତ୍ରିକତାକୁ ସାଧ୍ୟମତେ ଅବରୋଧ କଲା। ଅଗଷ୍ଟ ବିପ୍ଳବ ଚାଲିଆଡ଼େ ହିଂସାତ୍ମକ ରୂପ ନେଇଥିବା ବେଳେ ସଂବଲପୁରରେ ଏହା ଶାନ୍ତିପୂର୍ଣ୍ଣ ଥିଲା। ବରଗଡ଼ ନିକଟସ୍ଥ ପାଣିମୋରା ନାମକ ଗୋଟାଏ ଗାଁରୁ ୩୨ ଜଣ ଆନ୍ଦୋଳନରେ ଭାଗ ନେଇ ଜେଲ ଦଣ୍ଡ ଭୋଗିଥିଲେ। ସେମାନେ ସମସ୍ତେ ଥିଲେ ସାଧାରମ ଚାଷୀ ଓ ମଜୁରିଆ ପରିବାରର। ସ୍ୱାଧୀନତା ଆନ୍ଦୋଳନର ଖିଅ ଯେ ସମାଜର ଅତି ସାଧାରଣ ସ୍ତରକୁ ସଂକ୍ରମିତ ହୋଇସାରିଥିଲା, ତାହା ପାଣିମୋରାର ଉଦାହରଣରୁ ସୁସ୍ପଷ୍ଟ ହୁଏ।

ସଂବଲପୁରରେ ଇତିହାସକୁ ପର୍ଯ୍ୟାଲୋଚନା କଲେ ଜଣାଯାଏ ଯେ, ତାକୁ

ଓଡ଼ିଶା, ଭାରତ ଓ ବିଶ୍ୱର ଇତିହାସରୁ ବିଚ୍ଛିନ୍ନ କରି ଦେଖିବା ଅଯୌକ୍ତିକ ହେବ। ସଂବଲପୁରରେ ସଂଘଟିତ ଘଟଣା ଉପରେ ଯେମିତି ବାହାର ଘଟଣାର ପ୍ରଭାବ, ସେମିତି ବାହାର ଘଟଣା ଗୁଡ଼ିକର ପ୍ରଭାବ ସଂବଲପୁର ଉପରେ। ତେଣୁ ଏ ମଧ୍ୟରୁ କିଏ କାହାକୁ ପ୍ରଭାବିତ କଲା, କିଏ ମୁଖ୍ୟ, କିଏ ଗୌଣ, ତା'ର ଆକଳନ ନକରି ସବୁଗୁଡ଼ିକ 'କାରଣ', ପରସ୍ପର ସହିତ ସମ୍ବନ୍ଧିତ ଓ ସେଗୁଡ଼ିକର ସମନ୍ୱୟରେ କାର୍ଯ୍ୟର ସଂଘଟନ ହେଲା ବୋଲି ବୁଝିଲେ କାର୍ଯ୍ୟ ଓ କାରଣ ମଧ୍ୟରେ ରହିଥିବା ପ୍ରକ୍ରିୟାଟି ଅଧିକ ତର୍କସିଦ୍ଧ ମନେହେବ। କାର୍ଯ୍ୟପଛରେ ଥିବା ଅନେକ କାରଣ ମଧ୍ୟରେ hierarchy ବା ଅନୁକ୍ରମ ଖୋଜିବା ଅପେକ୍ଷା ପ୍ରକ୍ରିୟାକୁ ବିଶ୍ଳେଷଣ କରିବା ଅଧିକ ଇତିହାସସମ୍ମତ। ଇତିହାସରେ ସଂବଲପୁରର ଭୂମିକା ଖୋଜିବା ପଛରେ ଯଦି ସ୍ଥାନୀୟତାକୁ ଅନ୍ୟ ଅଞ୍ଚଳ ତୁଳନାରେ ମୁଖ୍ୟ ଓ ଅନ୍ୟ ଅଞ୍ଚଳଗୁଡ଼ିକୁ ସଂବଲପୁର ତୁଳନାରେ ଗୌଣ ସିଦ୍ଧ କରିବା ଉଦ୍ଦେଶ୍ୟ ହୁଏ, ତାହା ବିକୃତ ଆଞ୍ଚଳିକତା, ସଂକୀର୍ଣ୍ଣତା ସୃଷ୍ଟି କରିବ। ଏମିତିରେ ବି ପଶ୍ଚିମ ଓଡ଼ିଶାର ବାକି କ୍ଷେତ୍ରରେ ଗଡ଼ଜାତ ଶାସନ ରହିଥିଲା, ଯାହା ଉପନିବେଶବାଦ ବିରୋଧୀ ଆନ୍ଦୋଳନକୁ ଅଟକେଇ ରଖୁଥିଲା। ତେଣୁ, ୧୮୧୭ ପୂର୍ବରୁ ଯେମିତି ସଂବଲପୁରରେ ଇଂରେଜ ଶାସନକୁ ନିମନ୍ତ୍ରଣ କରାଯାଇଥିଲା, ଗଡ଼ଜାତ ଓ ରାଜା-ରାଜୁଡ଼ା ଶାସିତ ଅଂଚଳରେ ବି ସେମିତି ଇଂରେଜକୁ ଗଡ଼ଜାତ ଶାସନର ବିକଳ୍ପ ମନେ କରାଯାଉଥିଲା। ମୋଟ କଥା ହେଲା ଯେ ସଂବଲପୁର ପରି ଆଞ୍ଚଳିକ ଇତିହାସରେ ଅଧ୍ୟୟନ ଖୁବ୍ ଆବଶ୍ୟକ। ମାତ୍ର ତାକୁ ରାଷ୍ଟ୍ର ଓ ବିଶ୍ୱ ଇତିହାସର ସନ୍ଦର୍ଭରେ ଦେଖାଯିବା କଥା। ଦ୍ୱିତୀୟତଃ, ଆଞ୍ଚଳିକତାର ଉପେକ୍ଷା କରିବା ଯେମିତି ବିବିଧତାର ଅନାଦର କରିବା ହୁଏ, ଆଞ୍ଚଳିକତାକୁ ଆଧାର କରି ବୃଥା ଆସ୍ଫାଳନ କରିବା, ସତ୍ୟନିଷ୍ଠାରୁ ଓହରିଯିବା ସେମିତି ସଂକୀର୍ଣ୍ଣତାକୁ ପ୍ରଶ୍ରୟ ଦେବା ହୁଏ। ଅଞ୍ଚଳ, ରାଷ୍ଟ୍ର ଓ ବିଶ୍ୱ ମଧ୍ୟରେ ଥିବା ଅନୁପୂରକତାକୁ ଦେଖି ପାରିଲେ ହିଁ ଇତିହାସ ଚର୍ଚ୍ଚା ତର୍କସିଦ୍ଧ ହେବ ଓ ମୂଲ୍ୟାୟନ ବସ୍ତୁନିଷ୍ଠ ହେବ। ଅନ୍ୟଥା ତାହା ବିଭେଦର ମଞ୍ଜି ବୁଣିବ - ଏକଥା ଅନୁମାନ କରିହୁଏ।



# ଦୁଇ ବିପ୍ଳବୀ - ଭିନ୍ନ ସମୟ, ଏକା ସ୍ୱର

ଜାନୁଆରି ୨୩ ତାରିଖ ହେଲା ସୁରେନ୍ଦ୍ର ସାଏ (୧୮୦୯-୧୮୮୪) ଏବଂ ସୁଭାଷ ବୋଷ୍ (୧୮୯୭-୧୯୪୫(!))ଙ୍କ ଜନ୍ମ ଦିନ। ଉଭୟେ ଓଡ଼ିଶାରେ ଜନ୍ମିତ ବରପୁତ୍ର। ଜଣେ ସୁରେନ୍ଦ୍ର ସାଏ, ସମ୍ବଲପୁରର ଖିଣ୍ଡା ଗ୍ରାମରେ ଏବଂ ଆଉ ଜଣେ ସୁଭାଷ ବୋଷ୍, କଟକ ସହରରେ। ସ୍ୱାଧୀନତା ସଂଗ୍ରାମରେ ଉଭୟଙ୍କର ଏତେ ଅଧିକ ପରିଚିତି ଯେ ସୁରେନ୍ଦ୍ର ସାଏଙ୍କ ନାମ ଆଗରେ 'ବୀର' ଓ ସୁଭାଷ ବୋଷ୍‌ଙ୍କ ନାମ ଆଗରେ 'ନେତାଜି' ବିଶେଷଣ ସ୍ୱତଃ ନାମ ଉଚ୍ଚାରଣ ମାତ୍ରକେ ଚାଲିଆସେ। ସୁରେନ୍ଦ୍ର ସାଏଙ୍କ କର୍ମଭୂମି ଥିଲା 'ସମ୍ବଲପୁର' ନାମରେ ଲୋକସ୍ତରରେ ପରିଚିତ ପଶ୍ଚିମ ଓଡ଼ିଶା କ୍ଷେତ୍ର। ତାଙ୍କର ଦାବି ଥିଲା ସମ୍ବଲପୁର ରାଜଗାଦି। ଊନବିଂଶ ଶତାବ୍ଦୀର ଆରମ୍ଭ ଦଶକରେ ଇଂରେଜମାନେ ଓଡ଼ିଶା ଅଧିକାର କଲେ। ତେଣିକି, ସେମାନେ ଭାରତର ବାକି ଅଞ୍ଚଳ ପରି ଏଠାକାର ରାଜ୍ୟଗୁଡ଼ିକୁ ନିଜ ଶାସନାଧୀନ କଲେ। ସେହି କ୍ରମରେ ପ୍ରଥମେ ସେମାନେ ସମ୍ବଲପୁର ରାଜ୍ୟକୁ ନିଜ ଅନୁଗତଙ୍କ ହାତରେ ଦେଲେ ଏବଂ ପରେ ୧୮୪୮ରେ ରାଜ୍ୟ ସତ୍ତ୍ୱ ଲୋପ ନୀତି ପ୍ରଣୟନ କରି ପ୍ରତ୍ୟକ୍ଷ ଶାସନାଧୀନ କଲେ। ସୁରେନ୍ଦ୍ର ସମ୍ବଲପୁର ରାଜାଙ୍କର ଇଂରେଜ ହାତରେ କଣ୍ଢେଇ ହେବାଟାକୁ ବିରୋଧ କରି ରାଜଗାଦି ଦାବି କରିଥିଲେ। ଶେଷ ପର୍ଯ୍ୟନ୍ତ ସେ ଏଥିପାଇଁ ସଂଘର୍ଷ କରିଥିଲେ। ଏମିତିରେ ଦେଖିଲେ, ତାଙ୍କର ଏହା ଏକ ବ୍ୟକ୍ତିଗତ ଲଢ଼େଇ ହେବା କଥା। ହେଲେ, ଇଂରେଜ ଶାସନର ଆସିବା ପଛରେ ଉପନିବେଶବାଦର କଥା ରହିଥିଲା। ଖାଲି ରାଜ୍ୟର ମାଲିକାନା ଅଦଳାବଦଳିରେ କଥା ସୀମିତ ନ ଥିଲା। ସ୍ଥାନୀୟ ଲୋକ ଇଂରେଜ ଶାସନ ଆସିବା ଯୋଗୁଁ ଅଣାଯାଇଥିବା ଆର୍ଥିକ ଓ ସାମାଜିକ ପରିବର୍ତ୍ତନକୁ ସହ୍ୟ କରିପାରୁ ନ ଥିଲେ। ତେଣୁ ସୁରେନ୍ଦ୍ରଙ୍କୁ ନାଭିକେନ୍ଦ୍ର କରି ପଶ୍ଚିମ ଓଡ଼ିଶାରେ ଇଂରେଜ ବିରୋଧୀ ସଂଘର୍ଷ ହେଲା। ତା'ର ପ୍ରତୀକ ଭାବରେ ସୁରେନ୍ଦ୍ର ସାଏ କଷ୍ଟ ପାଇଲେ, ବାରମ୍ବାର ଜେଲ୍ ଗଲେ; ରାଜବଂଶଜ ହୋଇ ସୁଦ୍ଧା କେବେ ରାଜ୍ୟ ସୁଖ ପାଇଲେ ନାହିଁ; ଭାଇମାନଙ୍କୁ ଓ ସମର୍ଥକମାନଙ୍କୁ ଇଂରେଜ ହାତରେ ନିହତ ହେବାର ଦେଖିଲେ; ଶେଷରେ

୧୮୮୪ରେ ମୃତ୍ୟୁ ବି ଲଭିଲେ ନାଗପୁର ନିକଟସ୍ଥ ଅସିରଗଡ଼ ଜେଲ୍‌ରେ। ସୁରେନ୍ଦ୍ର ସାଏଙ୍କ ମୃତ୍ୟୁର ପରବର୍ଷ ଜାତୀୟ କଂଗ୍ରେସର ସ୍ଥାପନା ହୋଇଥିଲା। ତାଙ୍କ ଜୀବିତାବସ୍ଥାରେ ୧୮୬୫ରେ କଟକରୁ 'ଉତ୍କଳ ଦୀପିକା'ର ପ୍ରକାଶନ ହୋଇଥିଲା; ୧୮୮୨ରେ କଟକରେ ଉତ୍କଳ ସଭାର ସ୍ଥାପନା ହୋଇଥିଲା। ମାତ୍ର ଏସବୁ ବୌଦ୍ଧିକ ପରିବେଶରେ ସୁରେନ୍ଦ୍ରଙ୍କୁ ସମ୍ମାନ ତ ପଛ କଥା, ପରିଚ଼ିତି ବି ମିଳି ନ ଥିଲା। ସ୍ୱାଧୀନତା ପରେ ଯେତେବେଳେ ଇଂରେଜମାନଙ୍କ ବିରୋଧରେ ଲଢ଼ିଥିବା ବ୍ୟକ୍ତିଙ୍କୁ ସମ୍ମାନ ମିଳିବାର ପରମ୍ପରା ଚାଲିଲା, ସେତେବେଳେ ସୁରେନ୍ଦ୍ର ସାଏ ପୂଜ୍ୟ ହେଲେ। ଆଜି ସେ ଆମର ଯେତେ ପରିମାଣରେ ପୂଜ୍ୟ, ତାଙ୍କ ଜୀବିତାବସ୍ଥାରେ ସରକାରୀ ସ୍ତରରେ ସେତେ ମାତ୍ରାରେ ସେ 'ଅ-ପୂଜ୍ୟ' ଥିଲେ ! (ଅବଶ୍ୟ ଲୋକସ୍ତରରେ ଜୀବିତାବସ୍ଥାରେ ବି ସେ ବେଶ୍ ସମ୍ମାନର ଅଧିକାରୀ ଥିଲେ।) ସମୟର ଚକରେ କିଏ କେତେବେଳେ କେଉଁଠି ରହିବ ତା'ର କ'ଣ ଆଗତୁରା ନିର୍ଦ୍ଧାରଣ କରିହେବ ? ସୁରେନ୍ଦ୍ର ସାଏଙ୍କୁ ଦେଖିଲେ ଏହି ପ୍ରଶ୍ନର ଯଥାର୍ଥତା ବୁଝି ହେବ।

ସୁଭାଷ ବୋଷ୍‌ଙ୍କର ସୁରେନ୍ଦ୍ର ସାଏଙ୍କ ସହ ସବୁଠାରୁ ବଡ଼ ଅସାମଞ୍ଜସ୍ୟ ହେଲା ସମୟର ପାର୍ଥକ୍ୟ। ଯଦିଓ ଉଭୟେ ନିଜ ନିଜ ବାଗରେ ଉପନିବେଶବାଦ ବିରୋଧରେ ଜୀବନର ଶେଷ ପର୍ଯ୍ୟନ୍ତ ସାଲିସ୍ ନ କରି ସଂଘର୍ଷ କରିଥିଲେ, ଦୁହିଁଙ୍କ ମଧ୍ୟରେ ପ୍ରାୟ ଗୋଟାଏ ଶତାବ୍ଦୀର ସମୟ ପାର୍ଥକ୍ୟ ଥିଲା। ସୁରେନ୍ଦ୍ର ସାଏଙ୍କ ବିପରୀତ, ସୁଭାଷ ବୋଷ୍ ଆଧୁନିକ ଶିକ୍ଷିତ ଥିଲେ; ଆଇସିଏସ୍ ପାଇଥିଲେ; କଟକର ଷ୍ଟୁଆର୍ଟ ସ୍କୁଲ୍, ରେଭେନ୍‌ସା କଲେଜିଏଟ୍ ସ୍କୁଲ୍‌ରୁ ଶିକ୍ଷା ଆରମ୍ଭ କରି କଲିକତାର 'ପ୍ରେସିଡ଼େନ୍‌ସି' କଲେଜ ଓ ସ୍କଟିସ୍ ଚର୍ଚ୍ଚ ଭଳି ଶିକ୍ଷାନୁଷ୍ଠାନମାନଙ୍କରେ ପାଠ ପଢ଼ିଥିଲେ; ନିଜର ବିଚ଼ାରଧାରାକୁ ଅଭିବ୍ୟକ୍ତ କରିବା ପାଇଁ ସାମର୍ଥ୍ୟ ପାଇଥିଲେ। ତେଣୁ ଆମେ ତାଙ୍କୁ ତାଙ୍କର କ୍ରିୟାକଳାପରୁ ଯେତେ ଜାଣନ୍ତି, ତତୋଽଧିକ ମାତ୍ରାରେ ଜାଣନ୍ତି ତାଙ୍କ ଲେଖନୀ ଓ ତାଙ୍କ ସମ୍ପର୍କିତ ଲେଖାରୁ। ଇଂରେଜ ଶାସନର ପ୍ରାରମ୍ଭିକ ସମୟରେ ସୁରେନ୍ଦ୍ର ସାଏ, ଜୟୀ ରାଜଗୁରୁ, ବକ୍ସି ଜଗବନ୍ଧୁ ପରି ବ୍ୟକ୍ତିଗଣ ସ୍ୱତଃସ୍ଫୂର୍ତ୍ତ ଭାବେ, ଉପନିବେଶବାଦର ତତ୍ତ୍ୱ ଓ ତନ୍ତ୍ରକୁ ଖୁବ୍ ନ ଜାଣିବା ସତ୍ତ୍ୱେ ବିରୋଧ କରିଥିଲେ। ସେମାନେ ସଫଳ ହୋଇ ନଥିଲେ। ଫଳରେ ଇଂରେଜ ଶାସନ ତା'ର କାୟ

ବିସ୍ତାର କଲା; ନୂଆ ଶିକ୍ଷା ବ୍ୟବସ୍ଥା ଆସିଲା, ଆଇନ ବ୍ୟବସ୍ଥା ଆସିଲା। ସେହି ଉପନିବେଶବାଦୀ ରୀତି ନୀତି ଓ ପରମ୍ପରା ସମ୍ଭୂତ ହୋଇ ଯେଉଁ ଆଧୁନିକ ଶିକ୍ଷିତ ଗୋଷ୍ଠୀ ଜନ୍ମ ନେଲେ, ତହିଁରେ ଥିଲେ ସୁଭାଷ ବୋଷ। ପାରଂପାରିକ ସୈନିକ ଓ ଆଧୁନିକ ସୈନିକ ମଧ୍ୟରେ ଯେଉଁ ଫରକ, ସେ ବେଶଭୂଷାକୁ ନେଇ ହେଉ, ବା ଲଢ଼େଇର ପଦ୍ଧତିକୁ ନେଇ ହେଉ ବା ଜଟିଳତାକୁ ବୁଝିବାର ଦୃଷ୍ଟିକୋଣକୁ ନେଇ ହେଉ ତାହା ଫୁଙ୍ଗୁଲା ଦେହ ବିଶିଷ୍ଟ ସୁରେନ୍ଦ୍ର ସାଏ ଓ ସେନା ପୋଷାକ ପରିହିତ ସୁଭାଷ ବୋଷ୍ଙ୍କ ଛବିକୁ ଦେଖିଲେ ବେଶ୍ ବୁଝିହୁଏ। ଉଭୟେ ସ୍ୱାଧୀନତା ଓ ସ୍ୱାଭିମାନର ସିପାହୀ- ହେଲେ ଜଣେ ସଂଗ୍ରାମର ଶୁଭାରମ୍ଭ ବେଳର ଏବଂ ଆଉ ଜଣେ ସଂଗ୍ରାମର ପୂର୍ଣ୍ଣାହୁତି ବେଳର। ଏହି ଦୃଷ୍ଟିରୁ ବିଚାର କଲେ ଉଭୟଙ୍କ ମଧ୍ୟରୁ କିଏ 'କମ୍' ବା 'ବେଶି', ତା'ର ମାପ ଓଜନ କରିବା ଆଦୌ ଇତିହାସସମ୍ମତ ହେବ ନାହିଁ।

ଇତିହାସସମ୍ମତ ହେବ ଉଭୟ ସଂଗ୍ରାମୀଙ୍କୁ ସେମାନଙ୍କ ନିଜ ନିଜ ସମୟର ସନ୍ତାନ ବା ଇଂରେଜୀରେ ଯାହା କହନ୍ତି 'ପ୍ରଡ଼କ୍ଟ ଅଫ୍ ଦେଆର୍ ଟାଇମ୍' ଭାବରେ ଦେଖିବା। ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଓଡ଼ିଶାକୁ ଇଂରେଜମାନେ ଅଧିକାର କଲେ ସତ, ହେଲେ ଓଡ଼ିଶାର ଗୋଟି ଗୋଟି କରି ରାଜ୍ୟ ଓ ଅଞ୍ଚଳକୁ କିଣିବା ବାକି ଥିଲା। କିଣିବା ଅର୍ଥ ପ୍ରଭୂତ ମାତ୍ରାରେ ଲାଭ ନେବା। ଏକ ବ୍ୟାବସାୟିକ ସଂଗଠନ ଭାବରେ 'ଇଂରେଜ ଇଷ୍ଟ୍ ଇଣ୍ଡିଆ କମ୍ପାନି' ବିଜିତ କ୍ଷେତ୍ରରୁ ଲାଭ ଉପାର୍ଜନ କରିବା ଏକ ସ୍ୱାଭାବିକ କଥା। ଲାଭ ପାଇଁ ରାଜସ୍ୱ ଉପରେ ଜୋର୍ ଦିଆଗଲା। ରାଜସ୍ୱ ବୃଦ୍ଧି ପାଇଁ ତେଣିକି ପାରମ୍ପରିକ ସୂତ୍ରରେ ରାଜସ୍ୱ ଛାଡ଼ ପାଇଥିବା ଜମିକୁ ରାଜସ୍ୱ ଅନ୍ତର୍ଭୁକ୍ତ କରାଗଲା। ଦ୍ୱିତୀୟତଃ ଧାର୍ଯ୍ୟ ରାଜସ୍ୱକୁ ନିର୍ଦ୍ଧାରିତ ସମୟରେ ଆଦାୟ କରିବାକୁ କଡ଼ାକଡ଼ି କରାଗଲା। ଅର୍ଥାତ୍ ଆଗରୁ ଖଜଣା ଛାଡ଼ ପାଇଥିବା ଅନେକ ଜମି ଉପରେ ଗୌନ୍ତିଆ, ଜମିଦାର, ପୁରୋହିତ, ବ୍ରାହ୍ମଣ ଆଦି ଖଜଣା ଦେବାକୁ ବାଧ୍ୟ ହେଲେ; ନିର୍ଦ୍ଧାରିତ ସମୟରେ ଏବଂ ପୂରା ଖଜଣା ଦେବାକୁ ପଡ଼ିଲା। ଧୋଇ ମରୁଡ଼ି ବା ସାମୟିକ ବିପର୍ଯ୍ୟୟକୁ ମଧ୍ୟ ଇଂରେଜ ସରକାର ଖଜଣା ଛାଡ଼ ପାଇଁ ଗଣିଲା ନାହିଁ। ଆହୁରି ଅନେକ କାରଣ ସହିତ ଏହା ସମାଜର କୁଳୀନ ବର୍ଗକୁ ଇଂରେଜ ବିରୋଧୀ କଲା। ଏହି ବର୍ଗ ଥିଲେ ଗାଁ ଓ ରାଜ୍ୟ ସ୍ତରରେ ହର୍ତ୍ତାକର୍ତ୍ତା। ଅର୍ନ୍ତବିରୋଧ ସତ୍ତ୍ୱେ ସାଧାରଣ

ବର୍ଗ ଓ କୁଳୀନ ବର୍ଗ ଖଜଣା ପ୍ରଶ୍ନରେ ପରସ୍ପରର ପରିପୂରକ ଥିଲେ। ତେଣୁ ସୁରେନ୍ଦ୍ର ସାଏ ଯେତେବେଳେ ଇଂରେଜମାନଙ୍କଠାରୁ ସମ୍ବଲପୁରରୁ ରାଜଗାଦି ଦାବି କଲେ, ସ୍ୱାଭାବିକ ଭାବରେ ସେମାନେ ସମସ୍ତେ ସୁରେନ୍ଦ୍ରଙ୍କୁ ନିଜର ନେତା ସ୍ୱୀକାର କରିନେଲେ। ସୁରେନ୍ଦ୍ରଙ୍କ ବିଦ୍ରୋହରେ, ହାତ ଗଣତି ଜେତେଜଣ ଜମିଦାର, ଗୌନ୍ତିଆଙ୍କୁ ବାଦ ଦେଲେ, ସମସ୍ତେ ସାଧାରଣ ବର୍ଗର। ସେମାନେ ସମସ୍ତେ ଇଂରେଜଙ୍କ ବିପକ୍ଷରେ ଏବଂ ସୁରେନ୍ଦ୍ରଙ୍କ ସପକ୍ଷରେ। ବିଶେଷ ଲେଖା ସାମଗ୍ରୀ ସୁରେନ୍ଦ୍ରଙ୍କ ବିଦ୍ରୋହ ସମ୍ପର୍କରେ ନାହିଁ; ଯାହା ବି ଥିଲା ସବୁ ଶାସକ ପ୍ରସ୍ତୁତ ଓ ବିଦ୍ରୋହୀମାନଙ୍କୁ 'ଖଳନାୟକ', 'ଲୁଣ୍ଠନକାରୀ' ରୂପେ ଚିତ୍ରଣ କରି। ଏ ସବୁ ସତ୍ତ୍ୱେ ସେତେବେଳେ ସୁରେନ୍ଦ୍ର ଓ ତାଙ୍କ ସାଥୀମାନେ ଲୋକନାୟକ, ଅନେକ କିମ୍ବଦନ୍ତୀ, ଜନଶ୍ରୁତି ସେମାନଙ୍କ ନାଁରେ ! ଏହା ବିଦ୍ରୋହର ଗଣଭିତ୍ତିକୁ ଦର୍ଶାଏ।

ସୁଭାଷ ବୋଷ୍ ପ୍ରଥମ କରି ଅସହଯୋଗ ଆନ୍ଦୋଳନ ବେଳେ (୧୯୨୦-୨୨) ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଲେ। ଚୌରୀଚୋରା ଘଟଣା ପରେ ଯେତେବେଳେ ଅସହଯୋଗକୁ ମହାତ୍ମା ଗାନ୍ଧି ବିଲମ୍ବିତ କରିଦେଲେ, ତା'ର ସେ ତୀବ୍ର ବିରୋଧ କରିଥିଲେ। ସୁଭାଷଙ୍କର ରାଜନୈତିକ ପ୍ରବେଶ ହୋଇଥିଲା କଲିକତା ଓ ବଙ୍ଗର ବଡ଼ ନେତା ଚିତ୍ତରଞ୍ଜନ ଦାସଙ୍କ ମାର୍ଫତରେ। ଗାନ୍ଧି ତାଙ୍କର ଦୀକ୍ଷାଗୁରୁ ନ ଥିଲେ; ଗାନ୍ଧିଙ୍କ ନେତୃତ୍ୱକୁ ହୁଙ୍କାର ଦେବା ତାଙ୍କ ପାଇଁ କାଠିକର ନ ଥିଲା। ପରବର୍ତ୍ତୀ ସମୟରେ ଏହି ଗାନ୍ଧି-ବିରୋଧ ଭାବ ସୁଭାଷଙ୍କୁ ଯୁବ ଓ ପ୍ରଗତିଶୀଳ ଜାତୀୟତାବାଦୀ ରାଜନୀତିର ନାଭିକେନ୍ଦ୍ର କଲା। ୧୯୧୭ରେ ରୁଷ୍ ବିପ୍ଳବ ଏବଂ ପ୍ରଥମ ବିଶ୍ୱଯୁଦ୍ଧ ପରେ ପୁଞ୍ଜିବାଦର ସଙ୍କଟ ଓ ଏହି ସଂକଟକୁ ନିୟନ୍ତ୍ରଣରେ ରଖିଥିବା ରୁଷ୍‌ର ସମାଜବାଦୀ ଚିନ୍ତନ ଭାରତର ଯୁବ ଓ ପ୍ରଗତିଶୀଳଙ୍କ ମନରେ ନୂତନ ଆଶାର ସଂଚାର କରିଥିଲା। ଭାରତର ସ୍ୱାଧୀନତା ସଂଗ୍ରାମ ପ୍ରକୃତ ଅର୍ଥରେ ବିଶ୍ୱ ସ୍ତରରେ ଆରମ୍ଭ ହୋଇଥିବା ସାମ୍ରାଜ୍ୟବାଦ ବିରୋଧୀ ଆନ୍ଦୋଳନରେ ପ୍ରତ୍ୟକ୍ଷ ଭାବେ ସମ୍ପୃକ୍ତ ହେଉ ବୋଲି ଏହି ଦ୍ୱିତୀୟ ପିଢ଼ିର ଯୁବ ସଂଗ୍ରାମୀମାନେ ଦୃଷ୍ଟି ରଖୁଥିଲେ। ତନ୍ମଧ୍ୟରେ ଅନେକଙ୍କୁ ଲାଗୁଥିଲା, ଗାନ୍ଧି ଏହି ମାର୍ଗରେ ବାଧକ। ସେହି ଗାନ୍ଧି ବିରୋଧୀ ସ୍ୱରର ପ୍ରତିନିଧିତ୍ୱ କରି ସୁଭାଷ ବୋଷ ୧୯୩୮ ଓ ୧୯୩୯ରେ, ଗାନ୍ଧିଙ୍କ

ବିରୋଧ ସତ୍ତ୍ୱେ, ଜାତୀୟ କଂଗ୍ରେସର ସଭାପତି ହେଲେ। ଦ୍ୱିତୀୟ ବିଶ୍ୱଯୁଦ୍ଧ ବେଳେ ପୁଣି ସେ ଇଂରେଜମାନଙ୍କୁ ହରାଇବା ସହଜ ମନେ କରି ଇଂରେଜ ଶତ୍ରୁ ନାଜି ଜର୍ମାନି ଓ ଜାପାନ ସହ ବନ୍ଧୁତା କଲେ। ଏ ସବୁରେ ଗାନ୍ଧି ଓ କଂଗ୍ରେସର ସମର୍ଥନ ନ ଥିଲା ବୋଲି ସେ ଗାନ୍ଧି ଓ କଂଗ୍ରେସ ଛାଡ଼ିଲେ। ଆଜାଦ ହିନ୍ଦ୍ ଫଉଜ ମାଧ୍ୟମରେ ଇଂରେଜମାନଙ୍କ ଉପରେ ଆକ୍ରମଣ କଲେ। ଗୋଟାଏ ଦୃଷ୍ଟିରୁ ଦେଖିଲେ, ଏ ସବୁ ପଛରେ ଥିଲା ଗାନ୍ଧି ବିରୋଧର କଥା। ତା' ସହିତ ଏ କଥା ବି ସତ ଯେ ସେ ଗାନ୍ଧିଙ୍କୁ 'ଜାତିର ଜନକ' ବୋଲି ସମ୍ବୋଧନ କରିଥିଲେ ଏବଂ ତାଙ୍କ ଯୁଦ୍ଧ ଅଭିଯାନ ଗାନ୍ଧିଙ୍କ 'ଭାରତ ଛାଡ଼' ଡାକରାର ଅନୁକୂଳ ବୋଲି କହିଥିଲେ; ପ୍ରମାଣ ବି କରିଥିଲେ। ଅର୍ଥାତ୍ ସୁଭାଷ ବୋଷ୍‌ଙ୍କ ଗାନ୍ଧି ନେତୃତ୍ୱର ବିରୋଧ ପଛରେ କୌଣସି ବ୍ୟକ୍ତିଗତ ମହତ୍ୱାକାଂକ୍ଷା ନ ଥିଲା। ବରଂ ଗାନ୍ଧି ନେତୃତ୍ୱରେ ପରିଚାଳିତ ଗଣ ଆନ୍ଦୋଳନକୁ ଅଧିକ ବେଗ ଦେବାକୁ, ଅଧିକ ଶକ୍ତିଶାଳୀ କରିବାକୁ ଏବଂ ଶତ୍ରୁ ପକ୍ଷକୁ ଗୋଟାଏ ଦିଗରୁ ନୁହେଁ, ବରଂ ଚାରି ଦିଗରୁ ଘେରି ଯିବାକୁ ସେ ବାଟ କରୁଥିଲେ। ଯଦି 'ଭାରତ ଛାଡ଼' ଆନ୍ଦୋଳନ ସହିତ ତାଳ ଦେଇ 'ଆଜାଦ୍ ହିନ୍ଦ୍ ଫଉଜ'ର ସେନା ଅଭିଯାନ ହୋଇ ନ ଥାନ୍ତା, ଆଜାଦ ହିନ୍ଦ୍ ସମର୍ଥନରେ ଲୋକ ଓ ସେନା ରାସ୍ତାକୁ ଆସି ନ ଥାନ୍ତେ, ହୁଏତ ଇଂରେଜ ଶାସନ ଭାରତରେ ଆହୁରି କିଛି ବର୍ଷ ରହିଯାଇଥାନ୍ତା। ଆଜି ଏଭଳି କଳ୍ପନା କରିବା ଆଦୌ ଇତିହାସ ଅ-ସମ୍ମତ ମନେ ହୁଏ ନାହିଁ।

ସେ ଯାହାହେଉ, ପରବର୍ତ୍ତୀ ସମୟରେ ସୁଭାଷ ବୋଷ୍ କେବଳ ମାତ୍ର ଚିତ୍ତରଞ୍ଜନ ଦାସଙ୍କର ଜଣେ ଶିଷ୍ୟ ବା ଓଡ଼ିଶା ଓ ବଙ୍ଗର ଯୁବ ନେତା ହୋଇ ରହନ୍ତି ନାହିଁ, ବରଂ ସମଗ୍ର ଦେଶର ଯୁବ ସମାଜ, ସେନାବାହିନୀ ଓ ପ୍ରଗତିଶୀଳ ଗୋଷ୍ଠୀ ପାଇଁ 'ନେତାଜି' ହୋଇ ଯାଆନ୍ତି। ସେ ଏମିତି ଜଣେ 'ନେତାଜି', ଯିଏ ସ୍ୱାଧୀନତା ସଂଗ୍ରାମରେ ପଛ ଘୁଞ୍ଚା ଦେବାକୁ ଗ୍ରହଣ କରିବ ନାହିଁ, ତେଣିକି ପଛଘୁଞ୍ଚା ଦେବାକୁ ଗାନ୍ଧି ଭଳି ଶୀର୍ଷ ସ୍ଥାନୀୟ ନେତା ନିର୍ଦ୍ଦେଶ ଦେଇଥାନ୍ତୁ ପଛକେ। ସୁଭାଷଙ୍କର ସଂଗ୍ରାମ ଓ ନେତୃତ୍ୱକୁ ଆଗକୁ ଟାଣି ନେବାର ଗୁଣ ଯୋଗୁଁ 'ନେତାଜି' ବିଶେଷଣ ତାଙ୍କ ନାମ ଆଗରେ ଠିକ୍ ଖାପ ଖାଏ।

ଓଡ଼ିଶା ସ୍ଥିତିରେ ସୁରେନ୍ଦ୍ର ସାଏ ଓ ସୁଭାଷ ବୋଷ୍ ଆଉ ଯେଉଁ କାରଣରୁ ମହତ୍ତ୍ୱପୂର୍ଣ୍ଣ ମନେ ହୁଅନ୍ତି, ସେ ହେଲା ସେମାନଙ୍କର ପ୍ରକୃତ 'ବୀର' ଓ

'ନେତାଜି' ହେବାର ସାମର୍ଥ୍ୟ। ସଂକୀର୍ଣ୍ଣତାରୁ ଉର୍ଦ୍ଧ୍ୱକୁ ଉଠିପାରିବାର ଗୁଣ। ଆଜି ସମ୍ବଲପୁର ବାହାରେ ରାଜ୍ୟର ପ୍ରାୟ ସମସ୍ତ ସ୍ଥାନରେ କେଉଁଠି ନା କେଉଁଠି ସୁରେନ୍ଦ୍ର ସାଏଙ୍କ ନାଁରେ ରାସ୍ତାଘାଟ, କଲୋନି, ଅନୁଷ୍ଠାନ ଆଦି ରହିଛି। ସମସ୍ତ ଓଡ଼ିଶାବାସୀଙ୍କୁ ସେ ଅସ୍ମିତା ଦେବାର ସାମର୍ଥ୍ୟ ରଖନ୍ତି, ସଂକୀର୍ଣ୍ଣତାରୁ, ଆଞ୍ଚଳିକତାରୁ ଉର୍ଦ୍ଧ୍ୱକୁ ଉଠିବା ଲାଗି ପ୍ରତୀକ ଭାବେ ଛିଡ଼ା ହୁଅନ୍ତି। ଠିକ୍ ସେମିତି ଓଡ଼ିଶାରେ ଜନ୍ମିଥିବା, ପାଠ ପଢ଼ିଥିବା ସୁଭାଷ ବୋଷ୍ ହୁଅନ୍ତି ମହାଭାରତୀୟ ଅସ୍ମିତାର ପ୍ରତୀକ। ସୁଭାଷ ବୋଷ୍‌ଙ୍କୁ ଓଡ଼ିଶାରେ ସୀମିତ କରି ଦେବା ଯାହା, ସୁରେନ୍ଦ୍ର ସାଏଙ୍କୁ ପଶ୍ଚିମ ଓଡ଼ିଶାରେ ସୀମିତ କରିଦେବା ତାହା। ତାଙ୍କ ଜନ୍ମ ଲଗ୍ନରେ ଆମେ ସମସ୍ତେ ସେମାନଙ୍କ ଭଳି ବିସ୍ତାରିତ ହେଉ, ଜଗତ୍ ଦୃଷ୍ଟି ରଖୁ, ଓ ମନରେ ସମଗ୍ର ଦେଶକୁ ଦିଗ୍ ଦର୍ଶନ ଦେବାର ସ୍ୱପ୍ନ ପାଳୁ- ଏହା କେବଳ ଆଶା କରିବା କଥା।



(ଜାନୁଆରୀ ୨୦୧୨)

# ପ୍ୟାରୀମୋହନ : ଏକ ଦୃଷ୍ଟି

ପ୍ୟାରୀମୋହନ ଆଚାର୍ଯ୍ୟଙ୍କୁ (୧୮୫୧-୧୮୮୧) ଓଡ଼ିଶାରେ ଇତିହାସ ଛାତ୍ର ବି ବିଶେଷ ଜାଣନ୍ତି ନାହିଁ। ସେ ଉତ୍କଳପୁତ୍ର ନାମରେ ଏକ ପତ୍ରିକା ପ୍ରକାଶନ କରିଥିଲେ ୧୮୭୦ ମସିହାରେ। ସେ ଥିଲେ ପ୍ରଥମ ଓଡ଼ିଆ ଯିଏ 'ଓଡ଼ିଶା ଇତିହାସ' (୧୮୭୫) ଲେଖିଥିଲେ। ବିନା ସରକାରୀ କିଂବା ଅନ୍ୟ ଆନୁଷ୍ଠାନିକ ସାହାଯ୍ୟରେ ୧୮୭୦ ଦଶକର ଆଦ୍ୟଭାଗରେ କଟକଠାରେ ସେ ଏକ ସ୍କୁଲ ସ୍ଥାପନ କରିଥିଲେ, ଯାହା ଆଜି ପ୍ୟାରୀମୋହନ ଏକାଡ଼େମୀ ନାମରେ ପରିଚିତ ! ଏହି ସବୁ ଐତିହାସିକ ଘଟଣା ପରିପ୍ରେକ୍ଷୀରେ ତାଂକ ନାଁର କାହିଁ କେଉଁଠି ଉଲ୍ଲେଖ ରହେ, ମାତ୍ର ସ୍ୱତନ୍ତ୍ର ଭାବରେ ତାଂକର ଯୋଗଦାନକୁ ନେଇ ବିଶେଷ ଚର୍ଚ୍ଚା ନଜରକୁ ଆସେନି। ଏହା କ'ଣ ଆମ ଭିତରେ ଥିବା ଇତିହାସବୋଧର ଅଭାବକୁ ଦର୍ଶାଏ ? ଯେହେତୁ ପ୍ୟାରୀମୋହନ ବଂଗାଳି ଥିଲେ, ଓଡ଼ିଶା ଅସ୍ମିତା ନିମନ୍ତେ ତାଂକ ଯୋଗଦାନକୁ ଅଣଦେଖା କରାଯାଏ କି ? ଯଦି ଓଡ଼ିଶାରେ ଜାତୀୟତା ଆଂଦୋଳନର ଇତିହାସକୁ ପରଖା ଯାଏ, ତେବେ ପ୍ୟାରୀମୋହନ ହେବେ ବୋଧହୁଏ ଏକ ଅତି ବୈଶିଷ୍ଟ୍ୟପୂର୍ଣ୍ଣ ବ୍ୟକ୍ତିତ୍ୱ।

ପ୍ୟାରୀମୋହନ ୧୮୫୭ ଗଣସଂଗ୍ରାମର ୬ ବର୍ଷ ଆଗରୁ ଜନ୍ମ ଗ୍ରହଣ କରିଥିଲେ ଏବଂ ୧୮୮୫ରେ ଜାତୀୟ କଂଗ୍ରେସର ସ୍ଥାପନାର ଚାରି ବର୍ଷ ପୂର୍ବରୁ ମାତ୍ର ୩୦ ବର୍ଷ ବୟସରେ ମୃତ୍ୟୁବରଣ କରିଥିଲେ। ଭାରତର ଆଧୁନିକ ଇତିହାସର ଏହା ଥିଲା ଏକ ସଂଧିକ୍ଷଣ। ୧୮୫୭ର ଗଣସଂଗ୍ରାମର ଅନୁଭବରୁ ସଶସ୍ତ୍ର ସଂଗ୍ରାମକୁ ମାଧ୍ୟମ କରି ଯେ ବିଦେଶୀ ଇଂରେଜ ସରକାରକୁ ଦେଶରୁ ବିତାଡ଼ିତ କରାଯାଇ ପାରିବ ନାହିଁ ! ଏହା ଆଧୁନିକ ଶିକ୍ଷିତ ବର୍ଗ ଅନୁଭବ କଲେ, କାରଣ ପ୍ରସିଦ୍ଧ ଫରାସୀ ବିପ୍ଳବ ତୁଳନାରେ ମଧ୍ୟ ଅଧିକ 'ସଶସ୍ତ୍ର' ହେବା ସତ୍ତ୍ୱେ ୧୮୫୭ରେ ଭାରତୀୟ ସିପାହୀମାନେ ଇଂରେଜ ଶକ୍ତିକୁ ପରାଜିତ କରି ପାରିଲେ ନାହିଁ। ଦ୍ୱିତୀୟତଃ, ଆଧୁନିକ ଶିକ୍ଷିତ ଗୋଷ୍ଠୀ ଏକଥା ମଧ୍ୟ ଅନୁଭବ କଲେ ଯେ ଇଂରେଜ ଶକ୍ତିକୁ ବିତାଡ଼ିତ କରି ତା' ବଦଳରେ ଦେଶୀୟ ସାମନ୍ତ ବର୍ଗ ହାତରେ ନେତୃତ୍ୱ ରହିଲେ ଭାରତରେ ଜାତୀୟ ଜୀବନ ସଂଭବପର

ହେବ ନାହିଁ। ତେଣୁ ନୂଆଁ ଚିନ୍ତା ଓ ଚେତନାର ପ୍ରତୀକ ଭାବରେ ଶିକ୍ଷିତ ବର୍ଗକୁ ହିଁ ରାଜନୀତିକୁ ଆସିବାକୁ ହେବ। ଅର୍ଥାତ୍ ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ପ୍ରଥମ କରି ରାଜନୀତି ସାମନ୍ତ ବର୍ଗ ହାତରୁ ଶିକ୍ଷିତ ବୌଦ୍ଧିକ ବର୍ଗର ନିୟନ୍ତ୍ରଣକୁ ଆସିବାର ପ୍ରକ୍ରିୟା ଆରଂଭ ହେଲା। ଏହି ନୂଆଁ ରାଜନୈତିକ ପ୍ରକ୍ରିୟା ୧୮୮୫ରେ ଜାତୀୟ କଂଗ୍ରେସର ସ୍ଥାପନା ହେଲା ପରେ ଏକ ବାସ୍ତବ ସ୍ୱରୂପ ପାଇଲା। ତେଣିକି ପ୍ରାୟତଃ ଦେଶର ସର୍ବତ୍ର ଜାତୀୟ କାର୍ଯ୍ୟ ଗୋଷ୍ଠୀ ଭିତ୍ତିକ ହେଲା। ଏହା ପୂର୍ବରୁ ଜଣେ କବି ବା ଅନ୍ୟ ସୃଜନଶୀଳ ବ୍ୟକ୍ତି ଏକା ଏକା ନିଜ ସ୍ତରରେ ଯେଭଳି ସାମାଜିକ କାମ କରୁଥାଏ ଠିକ୍ ସେହିଭଳି ସମାଜ ପାଇଁ ଚିନ୍ତାଶୀଳ ଆଧୁନିକ ବୌଦ୍ଧିକ ବ୍ୟକ୍ତି ମଧ୍ୟ ବ୍ୟକ୍ତିଗତ ସ୍ତରରେ କିଂବା ଅତିବେଶୀ ହେଲେ ଆଂଚ଼ଳିକ ସ୍ତରରେ ଦଳବଦ୍ଧ ହୋଇ ଜାତୀୟ କାମ କରୁଥିଲେ। ଏହା ଖାସ୍ କରି ଓଡ଼ିଶାରେ ବିଶେଷ ଭାବେ ଅନୁଭୂତ ହୁଏ, କାରଣ ବଂଗ ଓ ମହାରାଷ୍ଟ୍ର ଆଦି ଅଂଚ଼ଳରେ ଆରଂଭ ହୋଇଥିବା 'ବ୍ରାହ୍ମ ସମାଜ', 'ପ୍ରାର୍ଥନା ସମାଜ', 'ୟଂଗ ବେଂଗଲ ଆଂଦୋଳନ', 'ପରମହଂସ ମଣ୍ଡଳ' ପରି ଗୋଷ୍ଠୀଭିତ୍ତିକ ଜାତୀୟ କାମ ଓଡ଼ିଶା ପାଇଁ ଅଦେଖା ଅଶୁଣା ପ୍ରାୟ ଥିଲା ! ଏହିଭଳି ଏକ ସଂଧିକ୍ଷଣରେ ପ୍ୟାରୀମୋହନ ଉଲକା ଭଳି ଓଡ଼ିଶାର ରାଜନୈତିକ ଆକାଶରେ ଆସିଲେ ଏବଂ ଉଭେଇ ମଧ୍ୟ ଗଲେ। କିଛି ଅଧିକ ଅବଧି ରହିଥିଲେ ତାଂକ ଜାତୀୟ କାମ ଗୋଷ୍ଠୀଭିତ୍ତିକ ହୋଇଥାନ୍ତା, ସାଂଗରେ ଅଧିକ ପରିପକ୍ୱତା ମଧ୍ୟ ଲାଭ କରିଥାନ୍ତା। ଫଳରେ, ଇତିହାସ ମନେ ରଖିବା ପାଇଁ ତାଂକ ଠାରୁ ଯଥେଷ୍ଟ ସାମଗ୍ରୀ ପାଇଥାନ୍ତା।

ପ୍ୟାରୀମୋହନ କଟକ ଜିଲ୍ଲା ସାଲେପୁର ନିକଟସ୍ଥ କୁଆଁପାଳ, ପଶୁଲୁଣ୍ଡା ଗାଁରେ ଜନ୍ମ ଗ୍ରହଣ କରିଥିଲେ; ବାଲ୍ୟକାଳ ମଧ୍ୟ ଗାଁରେ ଅତିବାହିତ ହୋଇଥିଲା। ତାଂକ ପୂର୍ବପୁରୁଷ ବଂଗରୁ ଆସିଥିଲେ ଏବଂ ବାପା ଭୁବନ ମୋହନ ଆଚାର୍ଯ୍ୟ କଟକରେ ଓକିଲାତି କରୁଥିଲେ। ୧୮୬୩ରେ ବାର ବର୍ଷ ବୟସରେ ବାପାଂକ ସାଂଗରେ ରହି ସେ ପାଠ ପଢ଼ିବା ପାଇଁ କଟକ ଆସିଲେ। ଯେତେବେଳେ ପ୍ୟାରୀମୋହନଂକୁ ୧୮ ବର୍ଷ ବୟସ, ସେ ବଂଧୁ ଭକ୍ତକବି ମଧୁସୂଦନ ରାଓଂକ ସାଂଗେ ମିଶି 'ବ୍ରାହ୍ମ' ଦୀକ୍ଷାରେ ଦିକ୍ଷିତ ହେଲେ। ସେତେବେଳେ ପାରଂପାରିକ ଧାର୍ମିକ ଅଂଧବିଶ୍ୱାସ ଓ ରଢ଼ିବାଦିତାରୁ ମୁକ୍ତ ହୋଇ ହେତୁବାଦିତାକୁ ଗ୍ରହଣ

କରିବାର ମୂର୍ତ୍ତ ରୂପ ଥିଲା ନିଜକୁ 'ବ୍ରାହ୍ମ' ଘୋଷଣା କରିବା । ବିଶେଷ କରି ବଂଗ ଓ ଓଡ଼ିଶାର ଆଧୁନିକ ଶିକ୍ଷିତ ଗୋଷ୍ଠୀରେ ଏହା ଅନୁଭୂତ ହେଉଥିଲା । ସେଥିପାଇଁ କେବଳ ପ୍ୟାରୀମୋହନ କିଂବା ମଧୁସୂଦନ ରାଓ ନୁହନ୍ତି, କବିବର ରାଧାନାଥ ରାୟ, ଫକୀରମୋହନ ସେନାପତି, ବାଗ୍ମୀ ବିଶ୍ୱନାଥ କର ଆଦି ମଧ୍ୟ ନିଜକୁ ବ୍ରାହ୍ମ ଘୋଷଣା କରିଥିଲେ । ଅର୍ଥାତ୍ ଧର୍ମ, ପୁରାଣ, ପରଂପରା ଆଦିକୁ ଅଂଧ ଭାବରେ ଗ୍ରହଣ ନ କରି ତର୍କ, ହେତୁ, ଯୁକ୍ତି ଆଧାରରେ ସବୁଗୁଡ଼ିକୁ ପରଖିବା ଥିଲା 'ବ୍ରାହ୍ମ'ର ଉଦ୍ଦେଶ୍ୟ । ବ୍ରାହ୍ମମାନେ ସତୀପ୍ରଥା ଓ ବାଲ୍ୟବିବାହ ପ୍ରଥାର ବିରୋଧ କରୁଥିଲେ, କାରଣ ଏକ ଆଧୁନିକ ସମାଜ ବ୍ୟବସ୍ଥାର ସେଗୁଡ଼ିକ ଥିଲେ ପରିପନ୍ଥୀ ! ପ୍ୟାରୀମୋହନ କେବଳ ଦେଖାଣିଆ ବ୍ରାହ୍ମ ନ ଥିଲେ । ଯେତେବେଳେ ପ୍ରସିଦ୍ଧ ବ୍ରାହ୍ମ କେଶବ ଚଂଦ୍ର ସେନ ବ୍ରାହ୍ମ ସଂସ୍କାରକୁ ଉପେକ୍ଷା କରି ନିଜ ନାବାଳିକା କନ୍ୟାକୁ କୁଚ୍‌ବିହାରର ବୟସ୍କ ରାଜାଂକ ସହିତ ବିବାହ କଲେ, ସେତେବେଳେ ପ୍ୟାରୀମୋହନ ତା'ର ତୀବ୍ର ବିରୋଧ କରିଥିଲେ । ଏଥିରୁ ସୂଚନା ମିଳେ ଯେ ସେ ଆଦର୍ଶକୁ କଦାଚିତ ବଳି ଦେଇ ନ ପାରନ୍ତି ।

ଜାତୀୟତାର ଏହି ଉନ୍ମେଷ କାଳରେ ବିଦେଶୀ ଶତ୍ରୁ ବିରୁଦ୍ଧରେ ଲଢ଼ିବା ପାଇଁ ତଥା ବିଶ୍ୱର ଅନ୍ୟ ସଭ୍ୟ, ସୁସଂସ୍କୃତ ରାଷ୍ଟ୍ର ଭଳି ଭାରତରେ ଜାତୀୟ ଜୀବନକୁ ଗଢ଼ିବା ପାଇଁ ପାରଂପାରିକ ଅସ୍ତ୍ରଶସ୍ତ୍ର ବଦଳରେ ପତ୍ର-ପତ୍ରିକା, ସଭା-ସମିତି ଓ ଯୁକ୍ତି-ତର୍କ ଯେ ପ୍ରମୁଖ ସାଧନ ହେବେ, ତାହା '୧୮୫୭'ର କ୍ରୂର ଦମନ ପରେ ସ୍ୱତଃସିଦ୍ଧ ମନେ ହେଲା । ସେହି ଆଧାରରେ ୧୮୬୫ରେ ଓଡ଼ିଶାରେ ଗୌରୀଶଂକର ରାୟଙ୍କ ସଂପାଦନାରେ 'ଉତ୍କଳ ଦୀପିକା' ପ୍ରକାଶିତ ହେଲା । ପରେ ଫକୀରମୋହନ ଆଦିଂକ ତତ୍ତ୍ୱାବଧାନରେ ବାଲେଶ୍ୱରରୁ 'ସଂବାଦ ବାହିକା' ମଧ୍ୟ ପ୍ରକାଶିତ ହେଲା । ମାତ୍ର ଗୋଟାଏ ବା ଦୁଇଟି ପତ୍ର-ପତ୍ରିକା ଓଡ଼ିଶାର ଜନମତକୁ ପ୍ରତିଫଳିତ କରିବା ପାଇଁ ଯଥେଷ୍ଟ ନୁହେଁ ମନେ କରି ଛାତ୍ର ପ୍ୟାରୀମୋହନ ୧୮୭୦ରେ 'ଉତ୍କଳ ପୁତ୍ର' ନାମରେ ଏକ ହାତଲେଖା ପତ୍ରିକା କାଢ଼ିଲେ । 'ଉତ୍କଳଦୀପିକା'ର 'ସହଯୋଗୀ' ଭାବରେ ଯଦିଓ 'ଉତ୍କଳପୁତ୍ର'କୁ ସଂପାଦକ ପରିଭାଷିତ କରୁଥିଲେ, ତା'ର (ଉତ୍କଳପୁତ୍ର) ଭାଷା ନିଶ୍ଚିତ ରୂପେ ଅନ୍ୟ ପତ୍ରିକାଗୁଡ଼ିକ ଅପେକ୍ଷା ଅଧିକ ଉଗ୍ର ଓ ତୀବ୍ର ମନେ ହେଉଥିଲା । ସେ

ଥିଲା ଉଦାରପନ୍ଥୀ ସମୟ; ଜାତୀୟତାବାଦୀ ମାନେ ନମ୍ର, ବିନମ୍ର ହୋଇ ସରକାରର ସମାଲୋଚନା କରୁଥିଲେ। ମାତ୍ର ପ୍ୟାରୀମୋହନ ଦୁଇପାଦ ଆଗକୁ ଯାଇ ଉଗ୍ର ସ୍ୱର ରଖୁଥିଲେ। ସେତେବେଳେ ସରକାର ଦେଶୀୟ ପତ୍ର-ପତ୍ରିକା ବା 'ନେଟିଭ ନ୍ୟୁଜପେପର୍ସ' ଉପରେ ପ୍ରତି ସପ୍ତାହରେ ଗୋଟାଏ ରିପୋର୍ଟ ପ୍ରସ୍ତୁତ କରୁଥିଲେ। ତହିଁରେ 'ଉତ୍କଳପୁତ୍ର'ର ମନ୍ତବ୍ୟକୁ ଯେଉଁ ପ୍ରାଧାନ୍ୟ ଦିଆଯାଏ, ତାହା ଅଧ୍ୟୟନ କଲେ ମନେହେବ ସରକାରର ସମାଲୋଚନା ଦୃଷ୍ଟିରୁ 'ଉତ୍କଳପୁତ୍ର' ଯେମିତି ଅନନ୍ୟ। ଜଣେ ୧୯-୨୦ ବର୍ଷର କଲେଜ ଛାତ୍ର ଯେ ଏକା ଏକା ବ୍ୟକ୍ତିଗତ ସ୍ତରରେ ଲଢ଼ି ଇଂରେଜ ଶାସନ କଳକୁ ବ୍ୟତିବ୍ୟସ୍ତ କରି ଦେଇ ପାରେ ଏହା ସେହି 'ରିପୋର୍ଟ'କୁ ଦେଖିଲେ ଯାଇ ହିଁ ଅନୁମାନ କରିହୁଏ।

'ଉତ୍କଳପୁତ୍ର'ର ଉଗ୍ରତାର ପ୍ରମାଣ ମିଳେ ତହିଁରେ ପ୍ରକାଶିତ ଏକ ଲେଖା 'ଦରଖାସ୍ତ ଯୁତିୟ୍ୟନ'ରୁ। ଶୀର୍ଷକର ଅର୍ଥ ହେଲା 'ହଳେ ଯୋତାର ଆବେଦନ'। ମାତ୍ର ଲେଖାର ଭାଷାରେ ଆବେଦନ ନ ଥିଲା, ବରଂ କଟକର ରାସ୍ତାଘାଟର ଦୁରବସ୍ଥାରେ ବ୍ୟତିବ୍ୟସ୍ତ ହଳେ ଯୋତା ଯେମିତି କର୍ତ୍ତୃପକ୍ଷଂକ ପିଠି ଉପରେ ଆଘାତ କରୁଥିଲେ। ଯାହା ପୂର୍ବରୁ ଉଲ୍ଲିଖିତ, ସେତେବେଳେ ଜାତୀୟତାରେ ହାରିଗୁହାରିର ସମୟ। ବିନୟ ଭାବରେ ଲୋକଂକର ସୁଖ-ଦୁଃଖ ଜଣାଇଲେ, ସରକାର ସଦୟ ହୋଇ ନ୍ୟାୟପୂର୍ଣ୍ଣ ଶାସନ ଦେବେ ବୋଲି ଆଧୁନିକ ବୌଦ୍ଧିକ ବର୍ଗ ମନରେ ଦୃଢ଼ ଆଶା ବାଂଧି ଥିଲେ। ଜାତୀୟ ରାଜନୀତିର ଏହିଭଳି ଏକ କାଳାଂଶରେ ପ୍ୟାରୀମୋହନଂକ ତୀବ୍ର ସମାଲୋଚନା ବା ସରକାର କେମିତି ସହ୍ୟ କରନ୍ତେ ! କଟକ ଜିଲ୍ଲାପାଳ ଏରଭିଂ ସାହେବ ଆଦେଶ ଦେଲେ ପ୍ୟାରୀମୋହନଂକୁ କଲେଜରୁ ବହିଷ୍କାର କରାଯାଉ। କଟକରେ ସେତେବେଳେ ଗୋଟାଏ ମାତ୍ର କଲେଜ। ସାମାନ୍ୟ ଲେଖାଟିଏ ପାଇଁ ଛାତ୍ର ପ୍ୟାରୀମୋହନଂକ ଉଚ୍ଚଶିକ୍ଷାର ଅନ୍ତ ହେଉ ବୋଲି ବା କଲେଜ ଅଧ୍ୟକ୍ଷ ଚଣ୍ଡୀଚରଣ ଦାସ ଚାହାନ୍ତେ କେମିତି ! ତାଂକର ପରାମର୍ଶ ହେଲା, ସାହେବଂକ ଠାରେ କ୍ଷମା ଭିକ୍ଷା କରି ଛାତ୍ରଟି ବହିଷ୍କାର ଦଣ୍ଡରୁ ମୁକ୍ତି ପାଉ ! ମାତ୍ର ସ୍ୱାଧୀନଚେତା ପ୍ୟାରୀମୋହନ କଦାପି ଏହି ପରାମର୍ଶକୁ ଗ୍ରହଣ କରିପାରିଲେ ନାହିଁ। ସେ ଜାଣିଥିଲେ ଯେ ଜାତୀୟତାର ଭିତ୍ତି ପଡ଼ିବା ବେଳେ ଉଚ୍ଚଶିକ୍ଷା ପାଇବା ଠାରୁ ଅଧିକ ଆବଶ୍ୟକ ବୈଚାରିକ ସ୍ୱତନ୍ତ୍ରତାକୁ ବଳି ନ ଦେବା। ଫଳରେ ସେ କଲେଜରୁ ବହିଷ୍କୃତ

ହେଲେ। କେବଳ ଏତିକି ନୁହେଁ, ପିତା ତଥା ସରକାରୀ ଓକିଲ ଭୁବନ ମୋହନ ମଧ୍ୟ ତାଂକୁ ତ୍ୟାଗ କରିଦେଲେ। ଏହିଭଳି ଦୁଃସମୟରେ ମଧ୍ୟ ପ୍ୟାରୀମୋହନ ହାର ମାନି ଯାଇ ନାହାନ୍ତି। ଡମପଡ଼ା ରାଜାଂକ ଘରେ ପ୍ରାଭେଟ ଟ୍ୟୁସନ କରିଛନ୍ତି ଏବଂ ଗୋବିଂଦ ରଥ ଆଦି କେତେକ ବଂଧୁଂକ ପାଖରୁ ସାହାଯ୍ୟ ଭିକ୍ଷା କରି କଟକରେ ସ୍କୁଲଟିଏ ସ୍ଥାପନ କରିଛନ୍ତି। ଉପନିବେଶବାଦୀ ଇଂରେଜ ସରକାରୀ ବିଦ୍ୟାଳୟରେ ସ୍ୱାଧୀନ ଚିନ୍ତାକୁ ଆଦର ମିଳେନା ! ଅନ୍ୟ ପକ୍ଷରେ, ଜାତୀୟ ଜୀବନ ନିମନ୍ତେ ବାକ୍ ସ୍ୱାଧୀନତା ଅତ୍ୟନ୍ତ ଆବଶ୍ୟକ ! ତେଣୁ ପରବର୍ତ୍ତୀକାଳରେ 'ପ୍ୟାରୀମୋହନ ଏକାଡ଼େମୀ' ନାମରେ ଖ୍ୟାତ ସେହି ସ୍କୁଲ ଯେ ସ୍ୱାଧୀନ ଚେତା ମଣିଷ ଗଢ଼ିବା ସକାଶେ ଏକ କାରଖାନା ସିଦ୍ଧ ହେଲା- ଏହା କହିବା ବାହୁଲ୍ୟ। ଜାତୀୟତା ଇତିହାସର ସେହି ଆଦ୍ୟ ଖଣ୍ଡରେ 'ଚରମପନ୍ଥୀ' ରାଜନୀତିର ଜଣେ ପ୍ରମୁଖ କର୍ଣ୍ଣଧାର ବିପିନଚଂଦ୍ର ପାଳ (ଅନ୍ୟ ଦୁଇଜଣ ହେଲେ ଲାଲା ଲଜପତ ରାୟ ଓ ବାଳ ଗଂଗାଧର ତିଳକ) ଏହି ସ୍କୁଲରେ କିଛି ଦିନ ହେଡ଼ମାଷ୍ଟର ରୂପେ କାର୍ଯ୍ୟ କରିଥିଲେ ! ଏହା ସ୍କୁଲର ଐତିହାସିକ ମହତ୍ତ୍ୱକୁ ଦର୍ଶାଏ।

୧୮୬୯ ରୁ ୧୮୮୧ର ଯେଉଁ ମାତ୍ର ୧୨ ବର୍ଷର ସ୍ୱଳ୍ପ ଅବଧି, ସେଇଥିରେ ପ୍ୟାରୀମୋହନ କୌଶୋରାବସ୍ଥାରୁ ଯୁବାବସ୍ଥାରେ ପଦାର୍ପଣ କରିଛନ୍ତି; ବୌଦ୍ଧିକତା ପାଇଛନ୍ତି; ତଥା ଇହଲୀଳା ମଧ୍ୟ ସମ୍ବରଣ କରିଛନ୍ତି। ସେତେବେଳେ ଯାହିଁ ଯେଉଁଠି ସେ ବକ୍ତବ୍ୟ ଦେଇଛନ୍ତି, ତାହା ଯେତିକି ଓଡ଼ିଶାରେ, ତା'ଠାରୁ ଅଧିକ ବଂଗୀୟ ପତ୍ର-ପତ୍ରିକାରେ ଚର୍ଚ୍ଚିତ ହୋଇଛି। କାରଣ ଏହି ସମୟରେ ଇଂରେଜ ସରକାର ବିରୁଦ୍ଧରେ ଏତେ ଅଧିକ ତୀବ୍ର ସ୍ୱରରେ ସମାଲୋଚନା କରିବାର ପରଂପରା ଆରଂଭ ହୋଇ ନ ଥିଲା। ଏହି ଦୃଷ୍ଟିରୁ ଦେଖିଲେ ଉନବିଂଶ ଶତାବ୍ଦୀରେ ବଂଗରେ ଆରଂଭ ହୋଇଥିବା 'ୟଙ୍ଗ ବେଂଗଲ' ଆଂଦୋଳନର ଏକ ନିରୋଳା ସ୍ୱରୂପ ଭାବରେ ଓଡ଼ିଶାରେ ପ୍ୟାରୀମୋହନଂକୁ ଦେଖି ହୁଏ। ପ୍ୟାରୀମୋହନ ଏକାକୀ ପଡ଼ି ନ ଥିଲେ ଅର୍ଥାତ୍ ତାଂକ କ୍ରୁଦ୍ଧ ବିଦ୍ରୋହୀ ଭାବ ଏକ ଗୋଷ୍ଠୀଗତ କାର୍ଯ୍ୟର ସ୍ୱରୂପ ପାଇଥିଲେ, ପରବର୍ତ୍ତୀ ସମୟରେ ଓଡ଼ିଶାର ଜାତୀୟତା ଆଂଦୋଳନ ଯେ ଭିନ୍ନ (ତୀବ୍ର !) ମୋଡ଼ ନେଇଥାନ୍ତା- ତାହା ସହଜରେ ଅନୁମାନ କରିହୁଏ। ସେ ଏକାକୀ ପଡ଼ିଗଲେ ବୋଲି ତାଂକ ବିଚାର ମଧ୍ୟ ଯଥୋଚିତ ପରିପକ୍ୱତା ଲାଭ କଲାନାହିଁ। ତାଂକ

ପଛରେ ଗୋଷ୍ଠୀଟିଏ ଥିଲେ ବିଚାରକୁ ଯଥେଷ୍ଟ ମାଜି ହେବାର ଅବସର ମିଳିଥାନ୍ତା। ଅଧିକ କିଛି କାଳ ବଂଚିଥିଲେ ବା ସେ ଗୋଷ୍ଠୀଟିଏ ଗଢ଼ି ଓଡ଼ିଶାର ଜାତୀୟ ଜୀବନକୁ ନେତୃତ୍ୱ ଦେଇଥାନ୍ତେ !

୧୮୭୫ରେ ପ୍ୟାରୀ ମୋହନ ପ୍ରଥମ ଓଡ଼ିଆ ଭାବେ 'ଓଡ଼ିଶା ଇତିହାସ' ଲେଖିଥିଲେ। ଯଦିଓ ଏହାକୁ ଏକ ସରକାରୀ ପୁରସ୍କାର ଲାଭର ତାତ୍କାଳିକ ଲକ୍ଷ୍ୟ ନେଇ ସେ ଲେଖିଥିଲେ, ଏଥିରେ ମଧ୍ୟ ସରକାରକୁ ଯଥେଷ୍ଟ ସମାଲୋଚନା କରା ଯାଇଥିଲା। ଉଦାହରଣ ସ୍ୱରୂପ, ବଂଗରେ ଲାଗୁ ହୋଇଥିବା ଚୀରସ୍ଥାୟୀ ବଂଦୋବସ୍ତକୁ ଓଡ଼ିଶାରେ ମଧ୍ୟ ଲାଗୁ କରିବେ ବୋଲି ପ୍ରତିଶ୍ରୁତି ଦେଇ ସରକାର ତାହା କରିନାହାନ୍ତି ! ୧୮୦୩ରେ ଯେତେବେଳେ ଇଂରେଜ ଶକ୍ତି ଓଡ଼ିଶା ଅଧିକାର କଲେ, ତା'ର ଦୃଢ଼ ବିରୋଧ କରି ନ ଥିବା ଓଡ଼ିଆ ସମାଜକୁ ମଧ୍ୟ ଏଥିରେ ସମାଲୋଚନା କରାଯାଇଛି। ପ୍ୟାରୀମୋହନ ଇତିହାସ ଲେଖାର କଳା ନିଜ ଉଦ୍ୟମରେ ଶିଖିଥିଲେ। ୧୯୭୫ ମସିହାରେ ଲିଖିତ ଏହି ପୁସ୍ତକ ଆଜି ଓଡ଼ିଶାରେ ଇତିହାସ ପାଠର ଇତିହାସକୁ ଜାଣିବାରେ ସହାୟକ ହୁଏ। ଉପନିବେଶବାଦୀ ମାନେ ଏବଂ ଅନେକ ବଂଗୀୟ ଲେଖକ ଓଡ଼ିଶାର ଐତିହ୍ୟକୁ ଯଥୋଚିତ ମର୍ଯ୍ୟାଦା ଦେଉନଥିଲେ; ଉପେକ୍ଷା କରୁଥିଲେ। ସେମାନଂକର ପକ୍ଷପାତପୂର୍ଣ୍ଣ ବିଶ୍ଳେଷଣ ବିରୁଦ୍ଧରେ ପ୍ରତିଯୁକ୍ତି ଭାବରେ ପ୍ୟାରୀମୋହନଂକ ଓଡ଼ିଶା ଇତିହାସକୁ ଦେଖି ହେବ। ପ୍ରତିଯୁକ୍ତି ଦେବାର ନିଶାରେ ସେ ବି ଅନେକ ସ୍ଥଳରେ ଅତିରଂଜନର ଆଶ୍ରା ନେଇଛନ୍ତି, ଯାହା ଆଜିର ଐତିହାସିକ ଜରିବ ନାହିଁ। ବଡ଼ କଥା ହେଲା ଊନବିଂଶ ଶତାବ୍ଦୀର ଜଣେ ୨୫ ବର୍ଷର ଶିକ୍ଷିତ ଯୁବକ ପ୍ୟାରୀମୋହନ ଜାତୀୟ ଜୀବନ ଗଠନ ନିମନ୍ତେ ବୈଚାରିକ ସ୍ୱାଧୀନତା ଯେ ପାରଂପାରିକ ଅସ୍ତ୍ରଶସ୍ତ୍ର ତୁଳନାରେ କମ ମହତ୍ତ୍ୱପୂର୍ଣ୍ଣ ନୁହେଁ ବୋଲି ଭଲ ଭାବେ ବୁଝିଥିଲେ- ଏହା ତାଂକ 'ଓଡ଼ିଶା ଇତିହାସ'ରୁ ସ୍ପଷ୍ଟ ଜାଣିହୁଏ।

ପ୍ୟାରୀମୋହନଂକ ବୌଦ୍ଧିକ କାର୍ଯ୍ୟାବଳୀକୁ ଲକ୍ଷ୍ୟ କଲେ ମନେହୁଏ, ସେ ଓଡ଼ିଶାରେ ଜନ୍ମିତ ବଂଗୀୟ ଥିଲେ; ତାଂକ ଓଡ଼ିଶା ମନସ୍କତା ଥିଲା ଏତେ ଅଧିକ ଯେ ବଂଗୀୟ ପତ୍ରପତ୍ରିକାରେ ତାଂକୁ କଟୁ ସମାଲୋଚନାର ଶିକାର ହେବାକୁ ପଡୁଥିଲା। ମାତ୍ର ଏଥିରେ ସେ କଦାଚିତ ବିଚଳିତ ହୋଇନାହାନ୍ତି। ସେ ଯେମିତି ଓଡ଼ିଶାର ତଦ୍‌କାଳୀନ ବୌଦ୍ଧିକ ପରଂପରାରୁ ପାଦଟିଏ ଆଗରେ ଥିଲେ।

ଅନ୍ୟଥା 'ନରମପନ୍ଥୀ' ଜାତୀୟତାବାଦୀ କାଳରେ ଇଂରେଜ ବିରୁଦ୍ଧରେ ଏତେ ମୁଖର ହୋଇ ନ ଥାନ୍ତେ। ୧୮୭୦ ଦଶକରେ ସେ ଯେଉଁ ଭାଷା ବ୍ୟବହାର କରୁଥିଲେ, ତାହା ଯଦି ବିଂଶ ଶତାବ୍ଦୀର ଆରଂଭ ଦଶକରେ ହୋଇଥାନ୍ତା, ତାଂକ ପଛରେ ଗୋଷ୍ଠୀଟିଏ ଛିଡ଼ା ହେବା କାଠିକର ଜଣା ପଡ଼ି ନ ଥାନ୍ତା। ୧୯୦୯ ମସିହାରେ ଗୋପବଂଧୁ ଦାସ ଓ ଅନ୍ୟ 'ପଂଚସଖା'ଙ୍କ ତତ୍ତ୍ୱାବଧାନରେ ଯେଉଁ ଉଦ୍ଦେଶ୍ୟ ନେଇ 'ସତ୍ୟବାଦୀ' ବନବିଦ୍ୟାଳୟ ଆରଂଭ ହେଲା, ତା'ର ଚାଳିଶ ବର୍ଷ ପୂର୍ବରୁ ପ୍ରାୟତଃ ସେହି ଲକ୍ଷ୍ୟ ନେଇ ପ୍ୟାରୀମୋହନ ଜଟକରେ ସ୍କୁଲ ପ୍ରତିଷ୍ଠା କରିଥିଲେ। ତେଣୁ, ସେ ଏକାକୀ ବା ନ ପଡ଼ନ୍ତେ କେମିତି ? ସେହିଭଳି 'ସମାଜ' ପତ୍ରିକାର ତୀବ୍ର ଇଂରେଜ ବିରୋଧିତା ଭାବକୁ ମୋଟା ମୋଟି ଭାବେ 'ଉତ୍କଳ ପୁତ୍ର'ରେ ଅନୁଭବ କରିହୁଏ, ଯଦିଓ ଉଭୟଙ୍କ ବୟସ ମଧ୍ୟରେ ଅର୍ଦ୍ଧଶତାବ୍ଦୀର ତାରତମ୍ୟ ! ଯେହେତୁ ପ୍ୟାରୀମୋହନ ବୌଦ୍ଧିକ ସ୍ତରରେ ଗୋଟାଏ ପାଦ ଆଗରେ ଚାଲୁଥିଲେ ଓ ତାଂକ ପଛରେ ଗୋଷ୍ଠୀଟିଏ ନ ଥିଲା, ତାଂକ ଭାଷା ଓ ଶୈଳୀରେ ମଧ୍ୟ ଯଥୋଚିତ ପରିପକ୍ୱତା ଦେଖିବାକୁ ମିଳେନା। ଯୁବ ସୁଲଭ ଭାବପ୍ରବଣତାର ବଶବର୍ତ୍ତୀ ହୋଇ ସେ ଅନେକ ସମୟରେ ଖୁବ୍ କଟୁ ହୋଇ ପଡ଼ନ୍ତି ! ଏଭଳି ଜଣେ ଏକଶିଂଘା ଜାତୀୟବାଦୀ ହୁଏତ ଆଜି ପ୍ରସିଦ୍ଧି ପାଇ ନ ପାରନ୍ତି, ହେଲେ କଦାଚିତ ସେ ପ୍ରାସଂଗିକତା ଯେ ହରାଇବେ ନାହିଁ- ଏଥିରେ ଦ୍ୱିରୁକ୍ତି ନାହିଁ।



(୨୦୧୨)

# ଫକୀରମୋହନଙ୍କ ସୃଜନୀର ନାରୀ

ଶହେ ବର୍ଷ ତଳର ଓଡ଼ିଶା ସମାଜରେ କ'ଣ ଥିଲା ନାରୀର ଭୂମିକା ? କ'ଣ ମହତ୍ତ୍ୱ ଥିଲା ନାରୀର ପରିବାରରେ ? ଏକ ସଂସ୍କାରସମ୍ପନ୍ନ ସମାଜଗଠନ ନିମନ୍ତେ ପ୍ରତିବଦ୍ଧ ପୁରୁଷ ବୁଦ୍ଧିଜୀବୀ କେତେ ଆଶାବାନ ଥିଲା ନାରୀର ସାମାଜିକ ଭୂମିକାକୁ ନେଇ ? ଏକ ପୁରୁଷକୈନ୍ଦ୍ରିକ ସମାଜର ବାସ୍ତବିକତା ଓ ବୌଦ୍ଧିକ ପରିକଳ୍ପନା ମଧ୍ୟରେ କେତେ ଥିଲା ପାର୍ଥକ୍ୟ ? ବର୍ତ୍ତମାନ ସମାଜରେ ନାରୀର ଭୂମିକାକୁ ନେଇ ବୌଦ୍ଧିକ ଚିନ୍ତନ କଲାବେଳେ ଏପରି ଅନେକ ପ୍ରଶ୍ନର ଉତ୍ତର ଖୋଜିବାକୁ ହେବ। ଉତ୍ତର ପାଇଁ ସରକାରୀ ନଥିପତ୍ର ଆଦି ସାଙ୍ଗରେ ସେକାଳର ସାହିତ୍ୟିକ ରଚନାଗୁଡ଼ିକୁ ମଧ୍ୟ ଅନୁଧ୍ୟାନ କରିବାକୁ ହେବ। ଏହି ନିବନ୍ଧରେ ଆମେ ସେତେବେଳର ଜଣେ ପ୍ରମୁଖ ସୃଜନଶୀଳ ଲେଖକ ଫକୀରମୋହନ ସେନାପତିଙ୍କର (୧୮୪୩-୧୯୧୮) ସୃଜନ ସମ୍ଭାରକୁ ଆଧାର କରିଛୁ। ସାହିତ୍ୟରେ ଲୋକଭାଷାର ବ୍ୟବହାର ଓ ସାଧାରଣ ମଣିଷର ଦୁଃଖ-ଦରଦକୁ ସଫଳ ଭାବେ ପ୍ରତିବିମ୍ବିତ କରିଥିବା ଫକୀରମୋହନ କେବଳ ମାତ୍ର ଜଣେ ଉଚ୍ଚକୋଟୀର ଲେଖକ ନଥିଲେ, ସେ ଥିଲେ ଜଣେ ପ୍ରଖର ବୁଦ୍ଧିଜୀବୀ ଓ କର୍ମଠ ରାଜନୀତିଜ୍ଞ। ଉତ୍କଳ ସମ୍ମିଳନୀ ଓ ଜାତୀୟ କଂଗ୍ରେସର ଅଧିବେଶନରେ ସେ ସହଭାଗୀ ହେଉଥିଲେ, ଓଡ଼ିଆ ଭାଷା ଓ ସାହିତ୍ୟର ଅସ୍ମିତା ରକ୍ଷା ନିମନ୍ତେ ସଭାସମିତି କରୁଥିଲେ, ସରକାରକୁ ପ୍ରତିବେଦନ ଲେଖୁଥିଲେ। ତାଙ୍କ ଲେଖନୀରେ ଏକ ବିକଳ୍ପ ସମାଜର ସଂରଚନା ସକାଶେ ପ୍ରତିବଦ୍ଧତା ରହିଥିଲା। ଫକୀରମୋହନଙ୍କ ପରି ବହୁବିଧ ବ୍ୟକ୍ତିତ୍ୱର ସୃଜନରେ ନାରୀ କେବଳ ଏକ ବ୍ୟକ୍ତି-ମନର କଳ୍ପନା ହୋଇ ନପାରେ, ବରଂ ତାକୁ ଏକ ମଧ୍ୟବର୍ଗୀୟ ଦୃଷ୍ଟିକୋଣର ପ୍ରତିଫଳନ ତଥା ଏକ ନିର୍ଦ୍ଦିଷ୍ଟ କାଳଖଣ୍ଡର ଆଶା-ଆକାଙ୍‌କ୍ଷାର ପ୍ରତୀକ କହିଲେ ବିଶେଷ ଅତିରଞ୍ଜନ ହେବ ନାହିଁ। ତାଙ୍କ ରଚନାକୁ ଆଧାର କରି ଅବଶ୍ୟ ସେତେବେଳର ନାରୀକୁ ପୂର୍ଣ୍ଣତଃ ଖୋଜି ପାଇଛେ ବୋଲି ଦାବି କରି ହେବ ନାହିଁ, ମାତ୍ର ସେ ଦିଗରେ ତାହା ଏକ ପଦକ୍ଷେପ ହେବ ନିଶ୍ଚୟ।

୧୯୧୮ ମସିହାରେ ମୃତ୍ୟୁର ମାତ୍ର କିଛି ମାସ ପୂର୍ବରୁ ଫକୀରମୋହନ

'ଆତ୍ମଜୀବନ ଚରିତ' (ଆତ୍ମଜୀବନୀ) ଲେଖା ଶେଷ କଲେ। ସମ୍ଭବତଃ ଏହା ଲେଖକଙ୍କର ଶେଷ ଲେଖା। ଫକୀରମୋହନଙ୍କ ସାଂସାରିକ ଜୀବନ ଓ ସାହିତ୍ୟିକ କୃତି ମଧ୍ୟରେ ଏକ ସମ୍ପର୍କ ରୂପରେ ଏହାକୁ ଦେଖାଯାଇପାରେ। ଅନ୍ୟ ଅର୍ଥରେ କହିଲେ, ଯେଉଁ ନାରୀ-ଚରିତ୍ରମାନେ ଲେଖକଙ୍କ ସାହିତ୍ୟରେ ସ୍ଥାନ ପାଆନ୍ତି, ସେମାନଙ୍କର ପ୍ରତ୍ୟକ୍ଷ ରୂପ ଆତ୍ମଜୀବନ ଚରିତରେ ଦେଖିବାକୁ ମିଳେ। ଏହାବ୍ୟତୀତ, ପୁସ୍ତକଟି ଲେଖକଙ୍କର ସମଗ୍ର ସାହିତ୍ୟର ଏକ ବିଶଦ ଟୀକା ପ୍ରସ୍ତୁତ କରେ।

ଫକୀରମୋହନଙ୍କ ଆଦର୍ଶ ନାରୀ ଚରିତ୍ର ଅଥବା ଖଳନାରୀ ଚରିତ୍ରମାନଙ୍କର କୌଣସି ନିର୍ଦ୍ଦିଷ୍ଟ କିସମ ନାହିଁ। ସେମାନଙ୍କର ଗୁଣ ବା ଦୁର୍ଗୁଣ ସବୁ ନିର୍ଦ୍ଧାରିତ ବା ରେଖାଙ୍କିତ ହୋଇନାହାନ୍ତି। କେଉଁଠି ଆଦର୍ଶନାରୀ ତାଙ୍କର ଲଜ୍ଜାଶୀଳ, ପତିର ସୁଖଦୁଃଖରେ ସହଭାଗୀ, ଘରର ଚୌକାଠ ମଧ୍ୟରେ ସୀମାବଦ୍ଧ ଏବଂ ସୀମାବଦ୍ଧ ହେବା ସତ୍ତ୍ୱେ ପ୍ରସନ୍ନ, ତଥା ପତି ସାଙ୍ଗରେ ପ୍ରାଣତ୍ୟାଗ କରୁଥିବା କୋମଳ, ନିଷ୍କପଟ, କଳିଟିଏ ତ ଅନ୍ୟ କେଉଁଠି ସେ ଅସ୍ତ୍ରଧାରିଣୀ, ଯୁଦ୍ଧରତା, ପତିଠାରୁ ମଧ୍ୟ ଶତ୍ରୁ ଆଗରେ ଅଧିକ ପରାକ୍ରମୀ କାଳୀ-କରାଳି। ପୁଣି ଆଉ କେଉଁ ରଚନାରେ ନିଜ ପତିକୁ ଛାଞ୍ଚୁଣୀରେ ବାଡ଼େଇଥିବା ଚଣ୍ଡୀ ଉଦଣ୍ଡୀ ସେ। ଠିକ୍ ସେହିଭଳି ଫକୀରମୋହନଙ୍କ ଖଳଚରିତ୍ର ନାରୀ କେଉଁଠି ରୂପବିହୀନା, କୋଠରହୃଦୟା, ଉଗ୍ର, ସ୍ୱାର୍ଥପର ତ ଅନ୍ୟ କେଉଁ ରଚନାରେ ସୁନ୍ଦରୀ, ଗର୍ବାନ୍ଧ, ନୀଚକୁଳଜା, ସମାଜର ରୀତିନୀତି ପ୍ରତି ବେଖାତିର ଭାବସମ୍ପନ୍ନା ଓ ଚରିତ୍ରହୀନା। କେଉଁଠି ଲେଖକ ଏହି ଖଳଚରିତ୍ରକୁ ସମସ୍ତ ସାମାଜିକ ଦୁର୍ଗତିର କଡ଼ ବୋଲି ଧାରଣା ସୃଷ୍ଟି କରାନ୍ତି ଓ ଅନ୍ୟ କେଉଁଠି ଖଳ ଚରିତ୍ରର ଉତ୍ପତ୍ତି ସକାଶେ ସମାଜକୁ ଦୋଷୀ ମଣନ୍ତି।

ଚରିତ୍ର ଚିତ୍ରଣରେ ଏହି ବିବିଧତା ବାସ୍ତବିକତାକୁ ଖୋଲା ଦୃଷ୍ଟିରେ ଦେଖିବାର ପ୍ରୟାସକୁ ସ୍ପଷ୍ଟକରେ। ବାସ୍ତବିକତାର କେବଳ ଗୋଟିଏ ମାତ୍ର ସ୍ୱରୂପ ହୋଇ ନପାରେ। ଦେଖିବା ଉପରେ ନିର୍ଭର କରେ, କ'ଣ ହେବ ବାସ୍ତବିକାତର ରୂପ। କେବଳ ଶୁଣ୍ଢକୁ ଦେଖିଲେ ହାତୀଟି ବୃକ୍ଷ ପ୍ରତୀତ ହୁଏ, ତ ପୁଣି ବକ୍ଷକୁ ଦେଖିଲେ ବିଶାଳ ଆକାଶ ପରି ମନେହୁଏ। ଲେଖକ ଜଣେ ହେବା ସତ୍ତ୍ୱେ ବାସ୍ତବିକତାକୁ ଭିନ୍ନ ଭିନ୍ନ ସ୍ଥିତିରେ ଦେଖିପାରିଛି, ବିଭିନ୍ନ ରୂପରେ ତା'ର ଚିତ୍ରଣ କରିପାରିଛି- ବୋଧହୁଏ ଏଥିରେ ତା' ସୃଜନଶୀଳତାର ସଫଳତା।

'ଆତ୍ମଜୀବନ ଚରିତ'ର ଏକ ପ୍ରମୁଖ ଚରିତ୍ର ହେଲେ ଫକୀର ମୋହନଙ୍କ ମା'। ନାମର ଉଲ୍ଲେଖ ନାହିଁ, ବିଶେଷ କିଛି ସମ୍ବାଦ ନାହିଁ ତାଙ୍କ ଉପରେ। ଲେଖକଙ୍କୁ ଯେତେବେଳେ ଦେଢ଼ବର୍ଷ ବୟସ, ପିତା ପୁରୀ ଜଗନ୍ନାଥ ଦର୍ଶନକୁ ଯାଇ ରାସ୍ତାରେ ପ୍ରାଣତ୍ୟାଗ କରନ୍ତି। ଏହି ଦୁଃସମ୍ବାଦ ଶୁଣି ମା' ରୋଗର ଶିକାର ହୁଅନ୍ତି। ଚଉଦମାସ ପରେ ଦେହତ୍ୟାଗ ଯାଏଁ ତହିଁରୁ ତ୍ରାହି ମିଳେନା। ସତୀ ସାଧ୍ୱୀ ମା'ଙ୍କ କଥା ଲେଖକଙ୍କର ମନେ ନାହିଁ। ଠାକୁର ମା' ମୁହଁରୁ ଯାହା ଶୁଣିଛନ୍ତି ମା'ଙ୍କ ସମ୍ବନ୍ଧରେ। କିନ୍ତୁ ମା'ର ଏହି ପ୍ରଭାବକାରୀ ଚରିତ୍ର ଫକୀରମୋହନଙ୍କ ରଚନାରେ ଭିନ୍ନ ଭିନ୍ନ ନାଁରେ ଉଦ୍‌ଭାସିତ ହୁଏ।

ପ୍ରଥମେ ନିଆଯାଉ କ୍ଷୁଦ୍ରଗଳ୍ପ 'ବଗଲା-ବଗୁଲୀ'ର ନାୟିକା ଚେମିକୁ। ଗାଁ ଚୌକିଦାର ସପନା ପାତ୍ରର ସେ ସ୍ତ୍ରୀ। ଶିକ୍ଷାଦୀକ୍ଷାହୀନ, ସରଳା ଅବଳାଟିଏ ସେ। ପତି ତା'ର ସର୍ବେସର୍ବା। ଶ୍ୱଶୁର ବିଦିଆ ପାତ୍ର ମଲାବେଳେ ତାକୁ କହିଛି, "ସପନା ତୋର ଖାଉନ୍ଦ, ଠାକୁର ଦେବତା। ଯ୍ୟ' କଥା ଏଡ଼ିବୁ ନାହିଁ।" ପତିଭକ୍ତା ଚେମି ପାଇଁ କେବଳ ଏତକ ହିଁ ମହାମନ୍ତ୍ର। ପତିର ସ୍ନେହ-ପ୍ରେମରେ ସେ ଅନୁବନ୍ଧ। ପତି ତା'ର ଜ୍ଞାନଦାତା। ରାତିରେ 'ଭାଗବତରୁ ପଦେ ଅଧେ' ଶୁଣାଏ। ପତି ତା'ର ମୁକ୍ତିଦାତା। ପତିର ପରିଧି ବାହାରେ ତା'ର ଦୁନିଆଁ କିଛି ନାହିଁ। ସପନା ପାଖରେ ଥିଲେ ଚେମିକୁ ଡରମାଡ଼େନା। ସପନାର ଗୋଡ଼ ଘଷିଦେଲେ ତାକୁ ସ୍ୱର୍ଗସୁଖ ମିଳେ। ଏକ ରକ୍ଷଣଶୀଳ ମଧ୍ୟବର୍ଗୀୟ ହିନ୍ଦୁ ଭଳି ଫକୀରମୋହନ ଏଠାରେ। ସେ ସପନା ହାତରେ ଚୁଲି ଫୁଙ୍କେଇ ନାହାନ୍ତି, ଚାଉଳ ଧୁଆଇ ନାହାନ୍ତି, ଯଦିଓ ସେ ଆଦର୍ଶ ପୁରୁଷ। 'ଚେମି ରନ୍ଧାବଢ଼ା କଲାବେଳେ ସପନା ଭାଗବତରୁ ଢେର ପଦ ଗାଏ।' କି କି ବିଡ଼ମ୍ବନା ଆଦର୍ଶ ନାରୀ ପାଇଁ ସତେ। ଆଦର୍ଶ ପତି-ଦେବତା କେବଳ ଜ୍ଞାନ ଦିଅନ୍ତି, ନିଜେ ମାନସିକ ଶ୍ରମ କରନ୍ତି, ଉଚ୍ଚ ସ୍ତରର କାର୍ଯ୍ୟକରନ୍ତି। କେବଳ ସ୍ତ୍ରୀ ଭାଗ୍ୟରେ ଲେଖା ଚୁଲିଫୁଙ୍କିବା, ରନ୍ଧାଶାଳରେ ଦହଗଞ୍ଜ ହେବା। ପୁରୁଷ ଦିଆ ବୁଦ୍ଧିଜ୍ଞାନରେ ସେ ବାଟ ଚାଲିବ। କେବଳ, ଏତିକି ନୁହେଁ, ଚେମି ଠାକୁରଙ୍କୁ କୁହାର ହୋଇସାରି ସପନାର ଗୋଡ଼ତଳେ ପଡ଼େ। ପତି ତା' ପାଇଁ ପରମେଶ୍ୱର। ପତିର ପାଦତଳେ ହିଁ ତା'ର ଶାନ୍ତି। ତେଣୁ ସପନାର ମୃତ୍ୟୁ ପରେପରେ ଚେମି ମଧ୍ୟ ମରିଯାଇଛି। ସତୀଦାହ ହୋଇନି, ତଥାପି ପତିର ଚିତାରେ ତା'ର ଚିତା

କଳି ଏକ ହୋଇଛି। ଜାଣି, ପତି ବିନା ତା' ଜୀବନର କୌଣସି ଆବଶ୍ୟକତା ନାହିଁ, ଉଦ୍ଦେଶ୍ୟ ନାହିଁ; ତା' ବ୍ୟକ୍ତିତ୍ୱର କିଛି ସାର୍ଥକତା ନାହିଁ। ପତିର ବଞ୍ଚିଥିବାଯାକେ ସେ ବଞ୍ଚି ରହିବ। ତେଣିକି ତା' ମୃତ୍ୟୁରେ ହିଁ ଅଛି ତା' ଜୀବନର ସାର୍ଥକତା।

ଏକ ନିର୍ଦ୍ଦିଷ୍ଟ ପରିଧି ଭିତରେ ନାରୀର ଏ ଯେଉଁ ଚିତ୍ରଣ, ରକ୍ଷଣଶୀଳ ସାମାଜିକ ସଂରଚନା-ତାହା 'ଛ ମାଣ ଆଠ ଗୁଣ୍ଠ'ର ଆଦର୍ଶ ନାୟିକା ସାରିଆଠାରେ ମଧ୍ୟ ପରିଦୃଷ୍ଟ ହୁଏ। ତନ୍ତୀ ଭଗିଆର ସେ ସ୍ତ୍ରୀ। ସରଳା, ନିଷ୍କପଟା, ପତିଭକ୍ତା ନାରୀଟିଏ ସେ। ଆଦର୍ଶନାରୀ ରୂପେ ଗଢ଼ିବାର ପ୍ରୟାସରେ ଲେଖକ ତାକୁ କେବଳ ପତି କାହିଁକି ଦୁନିଆଁର କାହାରି ଅତ୍ୟାଚାର ବିରୁଦ୍ଧରେ ମଧ୍ୟ ପ୍ରତିବାଦ କରିବା ପାଇଁ ସ୍ୱର ଦେଇ ନାହାନ୍ତି। ବେଶ୍ ଚୁପ୍‌ଚାପ୍ ସହିଯିବା ତା'ର ଧର୍ମ। ଜାଣି, ପାଟି ନ ଖୋଲିବାରେ ହିଁ ତା'ର ପ୍ରାପ୍ତି ! ସ୍ୱାମୀ-ସ୍ତ୍ରୀ ମଧ୍ୟରେ ଆବିଳତାହୀନ ପ୍ରେମସମ୍ବନ୍ଧ ଓ ପରିବାରରେ ସନ୍ତାନପ୍ରାପ୍ତି-ବେଶ୍ ଏତକ ହିଁ ତା' ପାଇଁ ଆଦର୍ଶ ପରିବାରରେ ସଂଜ୍ଞା। ସନ୍ତାନପ୍ରାପ୍ତି ଆଶାରେ ସେ ଓ ତା' ପତି ଭଗିଆ ଜମିଦାର ରାମଚନ୍ଦ୍ର ମଙ୍ଗରାଜଙ୍କ ଷଡ଼ଯନ୍ତ୍ରର ଶିକାର ହେଇଛନ୍ତି। ଜମିହୀନ ହୋଇଛନ୍ତି। ଭଗିଆଠାରୁ ଜମି ଛଡ଼େଇ ନିଆଯିବା ପରେ ଭଗିଆ ପାଗଳ ହୁଏ। ଭଗିଆ ପାଗଳ ହେଲା ଉତ୍ତାରୁ ସାରିଆର ତତୋଽଧିକ ଦୁରବସ୍ଥା। ନ ଖାଇ, ନ ପିଇ ସେ ଜୀବନ ହରାଇଛି। ଭଗିଆ ବିନା ସାହାଭରସା ତା'ର ଆଉ କେହି ନାହିଁ; ଜୀବନ ଉଦ୍ଦେଶ୍ୟହୀନ; ଅନ୍ୟାୟ ବିରୁଦ୍ଧରେ ନ୍ୟାୟ ପାଇବା ସକାଶେ ସେ ଏକା ଲଢ଼ିପାରିବ ନାହିଁ, ଅନ୍ୟାୟର ପ୍ରତିବାଦ କରିପାରିବ ନାହିଁ। ତା'ର ସ୍ୱର କାହିଁ ? ଆଦର୍ଶ ସ୍ୱାମୀର ବିଚ୍ଛେଦରେ ଶରୀର ତ୍ୟାଗ ହିଁ ସାରିଆ ପାଇଁ ଏକମାତ୍ର ବିକଳ୍ପ।

'ଛ ମାଣ ଆଠଗୁଣ୍ଠ'ରେ ଜମିଦାର ରାମଚନ୍ଦ୍ର ମଙ୍ଗରାଜଙ୍କ ପତ୍ନୀ 'ସାଆନ୍ତାଣୀ' ଆଗରେ ତ ସ୍ଥିତି ଆହୁରି ଜଟିଳ। ପତି ମଙ୍ଗରାଜ ଆଦର୍ଶ ପୁରୁଷ ନୁହନ୍ତି, କଥାକାବ୍ୟର ସେ ଖଳନାୟକ। ଷଡ଼ଯନ୍ତ୍ର ଓ ଅତ୍ୟାଚାର ବଳରେ ଅର୍ଥଲାଭ ତାଙ୍କ ଜୀବନର ଏକମାତ୍ର ଉଦ୍ଦେଶ୍ୟ। ଚରିତ୍ରହୀନା ଚମ୍ପା ସାଙ୍ଗରେ ତାଙ୍କର ଦୈହିକ ସମ୍ପର୍କ। ସାଆନ୍ତାଣୀଙ୍କ ସ୍ୱର୍ଗୀୟ ପ୍ରେମ ତାଙ୍କର କାମ୍ୟ ନୁହେଁ। ଆଖପାଖରେ ସୃଷ୍ଟି ହୋଇଥିବା ସବୁ ସମସ୍ୟାର ମୂଳ ମଙ୍ଗରାଜ। ସାଆନ୍ତାଣୀଙ୍କୁ

ସବୁ ଜଣା। ତଥାପି ସେ ପୂର୍ଣ୍ଣରୂପରେ ପତି-ଅନୁରକ୍ତା। ଦୟା, କ୍ଷମା, ସମ୍ବେଦନା- ସବୁ ଅଛି ତାଙ୍କଠାରେ। ସେ ତନ୍ତୀ ଭଗିଆ ସାରିଆର ଦୁଃଖ ଦେଖିପାରନ୍ତି, ଅତ୍ୟାଚାର-ପ୍ରପୀଡ଼ିତ ପ୍ରଜାଜନଙ୍କ ଦରଦକୁ ଅନୁଭବ କରି ପାରନ୍ତି। ହେଲେ, ପତିଙ୍କ ଅଜାଣତରେ ଯତ୍‌ସାମାନ୍ୟ ସାହାଯ୍ୟ ଦେବା ଛଡ଼ା ଅଧିକ କିଛି କରିପାରନ୍ତି ନାହିଁ ସେ। ପ୍ରତିବାଦ ସୁଦ୍ଧା ତାଙ୍କ ମୁହଁରେ ପଇଟେ ନାହିଁ। ତା' ସକାଶେ ଲେଖକ ତାଙ୍କଠାରେ ନା ବଳ ଦେଇଛନ୍ତି, ନା ସ୍ୱର। କେବଳ ସହିବା ତାଙ୍କର ଧର୍ମ। ପତିର ଅତ୍ୟାଚାର ଯେତେବେଳେ ଅସୀମ ହୁଏ, ସେ ଚୁପଚାପ ମୃତ୍ୟୁର ସମ୍ମୁଖୀନ ହୁଅନ୍ତି। ଲାଗେ ଅନ୍ୟାୟର ସହଭାଗୀ ନହେବା ସକାଶେ ମରିବା ହିଁ ଆଦର୍ଶନାରୀ ଆଗରେ ଏକମାତ୍ର ରାସ୍ତା !

ଏହାର ବିପରୀତ ସ୍ଥିତି ପୁରୁଷ ସକାଶେ। 'ବଗଲା ବଗୁଲୀ'ରେ ସପନାର ପିତା ବିଦିଆ ପାତ୍ର ମଧ୍ୟ ଏକ ଆଦର୍ଶ ପୁରୁଷ। ଶାନ୍ତ, ସୁଧୀର ମଣିଷ। ଏକ-ପତ୍ନୀବ୍ରତ ତା'ର ଧର୍ମ। ମାତ୍ର ସ୍ତ୍ରୀର ମୃତ୍ୟୁପରେ ସେ ଦେହତ୍ୟାଗ କରେ ନାହିଁ। ତା'ର ଜୀବନଧାରା ବଦଳେ ନାହିଁ। ସାମାନ୍ୟ ଅଧିକ ଧାର୍ମିକ ହୋଇପଡ଼େ କେବଳ।

ଆଦର୍ଶପୁରୁଷ ଓ ଆଦର୍ଶ ନାରୀ ଚରିତ୍ରର ମାପଦଣ୍ଡରେ ଏ ଯେଉଁ ପାର୍ଥକ୍ୟ, ତା'ର ସୃଷ୍ଟି, ପଛରେ ଯେତିକି ମାତ୍ରାରେ ବାସ୍ତବିକତା, ସମାଜ ଓ ସମୟର ପ୍ରଭାବ କାରଣ ହୋଇପାରେ, ସେତିକି ମାତ୍ରାରେ ଲେଖକଙ୍କ ରକ୍ଷଣଶୀଳ ପିତୃସତ୍ତାତ୍ମକ ଦୃଷ୍ଟିକୋଣ ମଧ୍ୟ କାରଣ ହୋଇପାରେ। ଅଲଗା ଅଲଗା ମାପଦଣ୍ଡ ସୃଷ୍ଟିବେଳେ ଲେଖକୀୟ ଦୃଷ୍ଟିକୋଣ ଓ ବାସ୍ତବିକତା ଗୋଟାଏ ଅପରର ଅନୁପୂରକ ରୂପେ ହିଁ କାମ କରନ୍ତି। ପୁରୁଷକୈନ୍ଦ୍ରିକ ସମାଜର ମାପଦଣ୍ଡକୁ ହିଁ ଲେଖକ ଭାଷାଦେଇ ପ୍ରମାଣ କରନ୍ତି।

ଫକୀରମୋହନଙ୍କ ଆତ୍ମଜୀବନୀର ଅନ୍ୟ ଏକ ପ୍ରମୁଖ ନାରୀ ଚରିତ୍ର ହେଲେ ତାଙ୍କ ପିତାମହୀ, ଠାକୁର ମା' କୁଚିଲା ଦେଈ। ପିତୃ-ମାତୃହୀନ ଶିଶୁ ଫକୀରମୋହନଙ୍କୁ ଲାଳନପାଳନ କରି ସେ ବଡ଼ କରିଛନ୍ତି। ଅତୀତରେ ଲେଖକଙ୍କ ପିତା ଓ ବଡ଼ ବାପାଙ୍କୁ ଶିଶୁ ଅବସ୍ଥାରୁ ବଡ଼ କରିଛନ୍ତି। କେବେ ସେ ଧୈର୍ଯ୍ୟ ହାରିନାହାନ୍ତି। ଦାୟିତ୍ୱରୁ ପଛଘୁଞ୍ଚା ଦେଇ ନାହାନ୍ତି; ପତିଙ୍କ ଚିତାରେ ସତୀତ୍ୱ ପ୍ରମାଣ କରିବା ସକାଳେ ଦେହତ୍ୟାଗ କରି ନାହାନ୍ତି। ବରଂ ଶିଶୁର

ମାନସିକ ବିକାଶ ଓ ଶାରୀରିକ ସୁରକ୍ଷା ନିମନ୍ତେ ଯାହା ଆବଶ୍ୟକ ମଣିଛନ୍ତି, ତାହା କରିଛନ୍ତି। କେବେ ସ୍ନେହମୟୀ ମା' ରୂପରେ ସେ ଶିଶୁକୁ ଗଳ୍ପ ଶୁଣାଇଛନ୍ତି, ତ ଆଉ କେବେ ଶିଶୁ ଫକୀରମୋହନଙ୍କ ପ୍ରତି ପକ୍ଷପାତ କରୁଥିବା ଅବଧାନଙ୍କୁ କ୍ରୁଦ୍ଧ ହୋଇ ଗାଳି ଶୁଣାଇଛନ୍ତି। ଲେଖକଙ୍କ ନିଜ ଭାଷାରେ, 'ମୋ ଜୀବନ ରକ୍ଷା ନିମନ୍ତେ ଠାକୁର ମା' ଯେତେ ଯତ୍ନ, ଦାରୁଣ ଯନ୍ତ୍ରଣା ଭୋଗ କରିଛନ୍ତି, ବର୍ତ୍ତମାନ ଛାୟା ରୂପେ ସେସବୁ କଥା ମୋ ମନରେ ଉଦିତ ହେଲେ, ପ୍ରାଣ ଆକୁଳ ହୋଇ ଉଠେ। ହାୟ ! ସେ ଉପକାରର ମୁଁ କିଛି ହିଁ ପ୍ରତିକାର କରିପାରିନାହିଁ। (ଆତ୍ମଜୀବନ ଚରିତ, ପୃ.୬) ମା'ର ତ୍ୟାଗ, ଧାରିଣୀର ଧାର ପରିଶୋଧ କରି ପାରି ନ ଥିବାର କ୍ଷୋଭ ସର୍ବଦା ଫକୀରମୋହନଙ୍କୁ ବିଚଳିତ କରିଛି। ତେଣୁ ମାତୃଭୂମି, ଅନୁଷ୍ଠାନ, ସମୂହ, ଆଦି ଭିନ୍ନ ଭିନ୍ନ ରୂପରେ ମା'କୁ ସେ ନିଜ ରଚନାରେ ଆଣିଛନ୍ତି ଏବଂ ତାଙ୍କ ରଚନାର ଆଦର୍ଶ ଚରିତ୍ରମାନଙ୍କୁ ଋଣ ପରିଶୋଧ କରିବାପାଇଁ ତ୍ୟାଗ କରିବାକୁ, ଆତ୍ମବଳି ଦେବାକୁ ପ୍ରବର୍ତ୍ତାଇଛନ୍ତି।

ଦାୟିତ୍ୱ ପ୍ରତି ସଚେତନ ପିତାମହୀର ଚରିତ୍ର ଫକୀରମୋହନଙ୍କ ବିଭିନ୍ନ ରଚନାରେ ପ୍ରତିଫଳିତ ହୁଏ। ଉଦାହରଣ ସ୍ୱରୂପ ଗଳ୍ପ ରାଣ୍ଡିପୁଅ ଅନନ୍ତା'କୁ ନିଆଯାଇ ପାରେ। ପତି ସୁବଳ ସିଂର ମୃତ୍ୟୁବେଳକୁ ଦେବକୀ ଯୁବତୀ ବିଧବା; ପୁଅ ଅନନ୍ତାର ବୟସ ମାତ୍ର ଚାରିବର୍ଷ। 'ସତୀ' ହେବାକୁ ବି ତ' ହାତରେ ସମୟ କାହିଁ ? ପତିର ଶ୍ରାଦ୍ଧକ୍ରିୟା ନ ସରୁଣୁ ଦେବକୀ ନିଜ ଦାୟିତ୍ୱ ମୁଣ୍ଡେଇବାରେ ଲାଗିଗଲା- ପୁଅକୁ ବଡ଼ କରିବାକୁ ହେବ, ପେଟ ପୋଷିବାପାଇଁ କୁଳବେଉସା ସମ୍ଭାଳିବାକୁ ହେବ। ପତି ବିଚ୍ଛେଦରେ ଭାଙ୍ଗି ପଡ଼ିବା ପାଇଁ ମଧ୍ୟ ତା' ପାଖରେ ସମୟ ନାହିଁ। ନିଡ଼ର, ବେଧଡ଼କ ହୋଇ ସେ ଅନନ୍ତାର ବାପ ଭଳି ନିଜ କର୍ତ୍ତବ୍ୟ କରି ଚାଲିଲା। ପୁଅ ଅନନ୍ତା ପ୍ରତି ସେ ଯେତିକି ମମତାମୟୀ, ଅନନ୍ତାକୁ ପକ୍ଷପାତ କରୁଥିବା ନିଷ୍ଠୁର ଅବଧାନ ପ୍ରତି ସେ ସେତିକି ରୁକ୍ଷ ଓ କର୍କଶ। ପୁଅର ସୁରକ୍ଷା ପାଇଁ ସେ ପତି ସୁବଳ ସିଂ ଭଳି ହିଂସ୍ର, ପରାକ୍ରମୀ ହୋଇପାରେ। ଚେମି ଭଳି ସେ ଲଜ୍ଜାଶୀଳା ନୁହେଁ କି 'ସାରିଆ' ପରି ପ୍ରତିବାଦବିହୀନା ନୁହେଁ। ପ୍ରତିଦାନରେ ସେ ନପାଇଛି କ'ଣ ? ପତି ସୁବଳ ସିଂ ଭଳି ବଳଶାଳୀ, ସମ୍ବେଦନଶୀଳ, ଅନୁରକ୍ତ ପୁଅଟିଏ, ଯିଏ ଗାଁକୁ ବଢ଼ିପାଣି ଦାଉରୁ ବଞ୍ଚେଇବା ସକାଶେ ଶେଷରେ ଆତ୍ମବଳି ଦେଇଛି। ଗାଁ ରୂପରେ ମା'ର ଋଣ ଶୁଝିଥିବା ପୁଅର ମୃତ୍ୟୁପରେ ଦେବକୀ ମଧ୍ୟ

ମରିଯାଇଛି । ଏଣିକି ତା' ଜୀବନର ଉଦ୍ଦେଶ୍ୟ ପୂରଣ ହୋଇଛି । ଏଣିକି ମରିବାରେ ହିଁ ତା' ଜୀବନର ସାର୍ଥକତା, ବଞ୍ଚିବାର କୌଣସି ଆବଶ୍ୟକତା ନାହିଁ। ସନ୍ତାନକୁ ଆଦର୍ଶ ସ୍ଥାନୀୟ କରିବାରେ ହିଁ ମା'ର ପ୍ରାପ୍ତି ଦେଖିଛନ୍ତି ଲେଖକ।

ଦେବକୀ ପରି ଦାୟିତ୍ୱସଚେତନ, ବଳଶାଳୀ ନାରୀ ଚରିତ୍ରଟିଏ 'ଲଛମା' ଉପନ୍ୟାସର ଆଦର୍ଶ ନାୟିକା ଲଛମା। ଅଷ୍ଟାଦଶ ଶତାବ୍ଦୀରେ ଯେତେବେଳେ ଚାରିଆଡ଼େ ମରାଠା ବର୍ଗୀମାନଙ୍କର ବିପ୍ଳବ। ଧନ, ଜନ ସୁରକ୍ଷିତ ନୁହନ୍ତି। ଏହି ସମୟରେ ଅଣ-ଓଡ଼ିଆ ରାଜପୁତ କନ୍ୟା ଲଛମା ନିଜ ମା' ଶାଶୁ ଓ ପତି ବାଦଲ ସିଂ ସାଙ୍ଗରେ ଓଡ଼ିଆ ତୀର୍ଥାଟନରେ ଆସି ବର୍ଗୀମାନଙ୍କ ଲୁଟର ଶିକାର ହୋଇଛି ଓ ଧନ-ସମ୍ପତ୍ତି ହରାଇଛି; କୁଟୁମ୍ବ ଲୋକଙ୍କର କିଛି ଖୋଜଖବର ନାହିଁ। ପରିବାରଜନଙ୍କୁ ଭେଟିବାର ଆଶା କ୍ଷୀଣ ପ୍ରାୟ। ଆଗତ ପରିସ୍ଥିତିରେ ଲଛମା ଧୈର୍ଯ୍ୟହରା ହୋଇନାହିଁ, ମୃତ୍ୟୁବରଣ କରିନାହିଁ। ଶକ୍ତି ଓ ସାହସର ଅଫୁରନ୍ତ ଉତ୍ସ ସେ। ପୁରୁଷ ବେଶରେ ସେ ସୈନିକ ସାଜିଛି। ବର୍ଗୀମାନଙ୍କ ବିରୁଦ୍ଧରେ ରଣାଙ୍ଗନରେ ଯୁଦ୍ଧ କରିଛି। ଶତ୍ରୁକୁ ପରାସ୍ତ କରିଛି। ଉପନ୍ୟାସଟି ସୁଖାନ୍ତକ। ଶେଷରେ ଲଛମା ତା'ର ପତି ତଥା ମା' ଆଦିଙ୍କ ଭେଟ ପାଇଛି। ପତିକୁ ପାଇବା ପରେ ଲଛମା ପୁଣି ଥରେ ଲଜ୍ଜାଶୀଳା ପାଲଟିଯାଇଛି।

ପୂର୍ବୋକ୍ତ ସାରିଆ, ଚେମି ବା ସାଆନ୍ତାଣୀଙ୍କଠାରୁ ସମ୍ପୂର୍ଣ୍ଣ ଭିନ୍ନ ଆଦର୍ଶ ଲଛମା ଓ ଦେବକୀର। ଏମାନେ ଦୁଃସ୍ଥିତି ଆଗରେ ହାର୍ ମାନିନାହାନ୍ତି-ପ୍ରତିବାଦ କରିଛନ୍ତି, ଶକ୍ତି ଓ ସାହସର ପରିଚୟ ଦେଇଛନ୍ତି ଏବଂ ପ୍ରମାଣ କରିଛନ୍ତି ଯେ ଭାଗ୍ୟ ତାଙ୍କ ହାତମୁଠାରେ। ମାତ୍ର ନାରୀ ହାତରେ ଶକ୍ତି, ବଳ, ପରାକ୍ରମ ଦେଲାବେଳେ ମଧ୍ୟ ଫକୀରମୋହନ ନିରପେକ୍ଷ ନୁହନ୍ତି। ପୁରୁଷକେନ୍ଦ୍ରିକ ବିଚାରର ସେ ଦାସ। ତତ୍କାଳୀନ ସମୟ ଓ ସମାଜର ପ୍ରଭାବରୁ ସେ ମୁକ୍ତ ନୁହନ୍ତି। ଫଳତଃ ତାଙ୍କ ଆଦର୍ଶ ନାରୀଟି ପରିବାରର ପରିଧି ବାହାରକୁ ଆସି ଅନ୍ୟାୟ ବିରୁଦ୍ଧରେ, ଓ ସମାନତା ପାଇଁ, ସମାଧାନ ପାଇଁ ଯୁଦ୍ଧ କରୁଛି ସତ, ହେଲେ ପୁରୁଷ ବେଶରେ। ନାରୀ ରୂପରେ ଲଢ଼ିବା ସକାଶେ ଜାଣି ତା'ର ସାମର୍ଥ୍ୟ ନାହିଁ। ସମାଧାନର ସୂତ୍ର ଖୋଜିବାରେ ନାରୀତ୍ୱ ଯେମିତି ଏକ ପ୍ରତିବନ୍ଧକ। ତାକୁ ଲୁଚାଇବାକୁ ହେବ। ତେଣୁ, ଲଛମା ଦୃଶ୍ୟମାନ ହୁଏ ପୁରୁଷ ବେଶରେ। ପୁରୁଷର ଅନୁପସ୍ଥିତିରେ ସେ ପୁରୁଷର ଅନୁକରଣ କରୁଛି। ନାରୀ

ଭାବରେ ତା'ର ଆଭୂଷଣ ହେଉଛି ଲଜ୍ଜା ଏବଂ ସୀମା ହେଉଛି ଗୃହର ପରିଧି; ପତି/ପୁରୁଷର ବାହୁବଳରେ ଏକା ତା'ର ଭରସା। ତେଣୁ ପତିକୁ ଫେରିପାଇବା ପରେ ଲଛମା ତା'ର ପୁରୁଷ ପୁଂଗବତ୍ୱ ହରାଇଛି, ଏକ ଲଜ୍ଜାଶୀଳା ଗୃହିଣୀରେ ପୁଣି ଥରେ ରୂପାନ୍ତରିତ ହୋଇଛି। ଅନନ୍ତାର ମା' ଦେବକୀର ବି ସେହି ଅବସ୍ଥା। ତାକୁ କ୍ରୂର, ହିଂସ୍ର, ରୁକ୍ଷ, ଅନମନୀୟ କରି ଗଢ଼ି ଲେଖକ ସ୍ପଷ୍ଟ କରି ଦେଇଛନ୍ତି ଯେ ନାରୀବେଶରେ ସେ (ଦେବକୀ) ପୁରୁଷଟିଏ। ସେ କର୍କଶ, ରୁକ୍ଷ ହୋଇ ଏକା, ପୁରୁଷ ଭଳି, ଆତ୍ମରକ୍ଷା କରି ପାରିବ ଓ ପୁଅକୁ ସୁରକ୍ଷା ଦେଇପାରିବ। ଏବଂ ଏତେ ସବୁ 'ପୁରୁଷପଣିଆ'ର ଉଦ୍ଦେଶ୍ୟ କ'ଣ ? ପୁଅକୁ ବଡ଼ କରିବ, ଏକ ପୁରୁଷ ସୃଷ୍ଟି କରିବ-ଗାଁର ମଙ୍ଗଳ ପାଇଁ ସମାଜ କାର୍ଯ୍ୟରେ ଉତ୍ସର୍ଗୀକୃତ ହେବା ପାଇଁ। କ'ଣ ନାରୀ ଏହି ସମାଜ କାର୍ଯ୍ୟ କରିପାରିବ ନାହିଁ ? ଫକୀରମୋହନ ତାଙ୍କ ଆଦର୍ଶ ନାୟିକା ହାତରେ ତରବାରୀ ଦେଇ ପ୍ରଚଳିତ ପୁରୁଷକୈନ୍ଦ୍ରିକ ସାମାଜିକ ସଂରଚନାରୁ ବାହାରକୁ ଯିବାକୁ ଚେଷ୍ଟା କରିଛନ୍ତି ସତ, ମାତ୍ର ପୂର୍ଣ୍ଣ ରୂପେ ସଫଳ ହୋଇନାହାନ୍ତି। ତାଙ୍କ ମନ ଭିତରର ପୁରୁଷ-କୈନ୍ଦ୍ରିକତା ତାଙ୍କୁ ଆବୋରି ରଖିଛି। ପୁରୁଷର ବିନା ଅନୁକରଣ କରି ନାରୀଦ୍ୱାରା ସମାନତା ଓ ସମାଧାନ ଖୋଜିବାର ବିକଳ୍ପ କଥା ଊନବିଂଶ ଶତାବ୍ଦୀର ଓଡ଼ିଆ ବୁଦ୍ଧିଜୀବୀ ଚିନ୍ତା କରିପାରିନି। 'ଲଛମା' ଓ 'ରାଣ୍ଡିପୁଅ ଅନନ୍ତା' ଏହାର ମୂକ ସାକ୍ଷୀ କହିଲେ ଅତ୍ୟୁକ୍ତି ହେବ ନାହିଁ।

'ପେଟେଣ୍ଟ ମେଡ଼ିସିନ' ଫକୀରମୋହନଙ୍କ ଏକ ଭିନ୍ନ ସ୍ୱାଦର ଗଳ୍ପ। ଗଳ୍ପର ନାୟିକା-ସାଆନ୍ତାଣୀ-ଏ ଯାଏଁ ଚର୍ଚ୍ଚିତ ସମସ୍ତ ନାରୀ ଚରିତ୍ରଙ୍କଠାରୁ ଭିନ୍ନ ଏକ ବ୍ୟକ୍ତିତ୍ୱ। ପତି ତାଙ୍କର ମଦ୍ୟପ, ଚରିତ୍ରହୀନ, ନଗରବଧୂ ଉଷମାନତାରା ସଙ୍ଗେ ଜଡ଼ିତ । ଫଳରେ ପରିବାର ଭାଙ୍ଗିଲା-ପ୍ରାୟ ସ୍ଥିତିରେ। ସାଆନ୍ତାଣୀ ପରିବାରର ଅଙ୍ଗ ପୁରୁଷ ପତିକୁ ତ୍ୟାଗ ବା ତିରସ୍କାର କରି ନାହାନ୍ତି; ଅବଳା ଭଳି ଲମ୍ପଟ ପତିକୁ ସହ୍ୟ ମଧ୍ୟ କରିନାହାନ୍ତି; ସମାଧାନ ପାଇଁ ନାରୀତ୍ୱକୁ ଲୁଚାଇ ଲଛମା ପରି ପୁରୁଷ ବେଶରେ ସେ ସତୀ, ସାଧ୍ୱୀ ଆଦର୍ଶ ଗୃହିଣୀ ! ମ ରିନାହାନ୍ତି, ବରଂ ନଷ୍ଟ ଚରିତ୍ର ପତିକୁ ଠିକ୍ ରାସ୍ତାକୁ ଆଣିବା ପାଇଁ ଛାଞ୍ଚୁଣୀ ଧରି ବାଡ଼େଇଛନ୍ତି। ଯା' ସତ୍ତ୍ୱେ ପତି ପ୍ରତି ତାଙ୍କର ଆଦର ଊଣା ହୋଇନାହିଁ। ସ୍ନେହ, ସମ୍ବେଦନାର ଏକ ଜୀବନ୍ତ ମୂର୍ତ୍ତି ସେ। ନମନୀୟତା ଓ କମନୀୟତା ତାଙ୍କଠାରେ ଅତୁଟ ରହିଛି। ଶେଷରେ ପତି ନିଜ କୁକର୍ମ ତ୍ୟାଗ କରିଛନ୍ତି ଏବଂ ପରିବାରରେ

ଶାନ୍ତି ଫେରିଆସିଛି।

'ପେଟେଣ୍ଟ ମେଡ଼ିସିନ'ର ସାଆନ୍ତାଣୀଙ୍କୁ ଦେଖି ମନେହୁଏ, 'ଛ ମାଣ ଆଠଗୁଣ୍ଠ'ର ସାଆନ୍ତାଣୀଙ୍କ ସ୍ଥାନରେ ଯଦି ସେ ଥାଆନ୍ତେ, ହୁଏତ ମଙ୍ଗରାଜ ଅବାଟରେ ଯିବାର ସାହସ କରି ନଥାନ୍ତା, ସାରିଆର ସୁଖର ସଂସାର ଉଚ୍ଛନ୍ନ ହୋଇ ନଥାନ୍ତା। ସମାଜ ଓ ସମୟର ବାସ୍ତବିକତାକୁ ଉଜାଗର କରିବା ପାଇଁ ଯେଉଁ ଲେଖକ ମଙ୍ଗରାଜର ପତ୍ନୀ ସାଆନ୍ତାଣୀଙ୍କୁ ପୁରୁଷ-ଅତ୍ୟାଚାରର ନୀରବ ଦଷ୍ଟା କରି ଗଢ଼ିଛନ୍ତି, ସେହି ଲେଖକ ପୁଣି 'ପେଟେଣ୍ଟ ମେଡ଼ିସିନ'ରେ ପୁରୁଷକୈନ୍ଦ୍ରିକ ଚାପକୁ ଖାତିର କରିନାହାନ୍ତି, ପ୍ରଚଳିତ ଓଡ଼ିଶା ସମାଜର ନାରୀର ସାଧାରଣ ଅସ୍ତ୍ର ଛାଞ୍ଚୁଣୀ ଦେଇ ନାରୀ ହାତରେ ସମାଧାନର ସୂତ୍ର ଖୋଜିବାକୁ କହିଛନ୍ତି। ପୁରୁଷର ଅନୁକରଣ କରିବା କିମ୍ବା ଅତ୍ୟାଚାରକୁ ନିର୍ବାକ ହୋଇ ସହିଯିବାଠାରୁ ଏହା କ'ଣ ଉଚିତ ଉପାୟ ନୁହେଁ ?

ଫକୀରମୋହନଙ୍କ ଆତ୍ମଜୀବନୀରେ ସ୍ଥାନ ପାଇଥିବା ଦୁଇଜଣ ଦୁଷ୍ଟ ଚରିତ୍ରା ନାରୀ ହେଲେ ଲେଖକଙ୍କ ବଡ଼ମା ଓ ଲେଖକଙ୍କ ପ୍ରଥମ ସ୍ତ୍ରୀ। ଉଭୟେ କଳହପ୍ରିୟା, ନିର୍ଦ୍ଦୟ, ସମ୍ବେଦନହୀନ। ଶିଶୁ ଫକୀରମୋହନ ବଡ଼ ମା'ଙ୍କ ଅତ୍ୟାଚାର ସହି ସହି ବଡ଼ ହୋଇଛନ୍ତି ଏବଂ ଯୁବ ଅବସ୍ଥାରେ ପ୍ରଥମ ସ୍ତ୍ରୀଙ୍କ ବିପ୍ରୀତରେ ବ୍ୟତିବ୍ୟସ୍ତ ହୋଇଛନ୍ତି। ସେମାନଙ୍କ ରୂପ ଓ 'ଚରିତ୍ର' ସମ୍ବନ୍ଧରେ ଅବଶ୍ୟ ଲେଖକ ନୀରବ।

ଏ ଦୁଇ ନାରୀ ଚରିତ୍ରର ପ୍ରତିଫଳନ ମିଳେ 'ଛ ମାଣ ଆଠଗୁଣ୍ଠ'ର ଚମ୍ପା ଓ ମଗୁଆ, 'ବିରେଇ ବିଶାଳ' ଗଳ୍ପର ମାଇଁ ତଥା 'ମାମୁଁ' ଉପନ୍ୟାସର ମାଇଁ ଆଦି 'ନଷ୍ଟଚରିତ୍ରା'ଙ୍କ ଚିତ୍ରଣରେ। ସେମାନଙ୍କ ଦୁର୍ଗୁଣକୁ ସ୍ପଷ୍ଟ କରିବାପାଇଁ ଲେଖକ ତାଙ୍କ ରୂପକୁ ଉପହାସଯୋଗ୍ୟ କରି ଗଢ଼ି ତୋଳିଛନ୍ତି। ପ୍ରାୟ ସମସ୍ତଙ୍କର ଚରିତ୍ର ଶଙ୍କାପୂର୍ଣ୍ଣ। ବେଶ୍ୟାପରି ସେମାନେ କୁଚରିତ୍ରା। ରୂପ, ଗୁଣ, ବ୍ୟକ୍ତିତ୍ୱ ଓ ଚରିତ୍ର ମଧ୍ୟରେ ଯେମିତି ଏକ ନିବିଡ଼ ସମ୍ପର୍କ ରହିଛି। ଚମ୍ପା ଓ ମଗୁଆର ଚରିତ୍ର ଚିତ୍ରଣରୁ ମନେହୁଏ, ସେମାନେ ସବୁ ଅନର୍ଥର ମୂଳ। ବୈଷୟିକ ବୈଭବ ନିମିତ୍ତ ନାରୀତ୍ୱର ଅପମାନ କରନ୍ତି ସେମାନେ।

ମାତ୍ର 'ସଭ୍ୟ ଜମିଦାର' ଗଳ୍ପର ନୂଆ ଜମିଦାରିଣୀ ମିସେସ୍ ମହାପାତ୍ର ବା 'ପେଟେଣ୍ଟ ମେଡ଼ିସିନ'ର ଉସମାନତାରାର ଚିତ୍ରଣବେଳେ ଲେଖକ ଏତେଟା

ନିର୍ଦ୍ଦୟ ନୁହନ୍ତି। ଏମାନେ ସୁନ୍ଦରୀ, ମାତ୍ର ନୀଚ଼ବଂଶଜ ଓ ଆଭିଜାତ୍ୟହୀନ। ସମାଜର କଳଙ୍କ ପାଇଁ ଏମାନେ ଦାୟୀ ନୁହନ୍ତି, ବରଂ ତାଙ୍କର ଚାରିତ୍ରିକ ସ୍ଖଳନ ପାଇଁ ସମାଜ ଦାୟୀ।

କୁଳଟା ନାରୀ ସମ୍ବନ୍ଧରେ ଫକୀରମୋହନଙ୍କ ବିଚ଼ାର ଜାଣିବାକୁ ତାଙ୍କ 'ବାରବିଳାସିନୀ' କବିତାରୁ ଦୁଇଟି ପଙ୍କ୍ତି ଉଦ୍ଧାର କରାଯାଇପାରେ। କବିତାଟି ଲେଖକଙ୍କ 'ଅବସର ବାସରେ' କବିତା ଗୁଚ୍ଛରେ ସ୍ଥାନ ପାଇଛି।

"ଭାରତବାସିନୀ ତୁ କି ହିନ୍ଦୁର ରମଣୀ
ବିପଣୀ ବସିଛୁ ତ ବାରବିଳାସିନୀ
ରମଣୀ ସୁଲଭ ଲଜ୍ଜା ନାହିଁ ତ କିଞ୍ଚିତ
କେଉଁ ପାପେ କରିଛନ୍ତି ବିଧାତା ବଞ୍ଚିତ
ସ୍ନେହ ପ୍ରୀତି ଦୟାମାୟା ଭକ୍ତି ମାଧୁରିମା
ପରଶତ କରି ନାହିଁ ତୋହର ତ୍ରିସୀମା...
ମୋ ବିଶ୍ୱାସ ଏକା ତୋର ନାହିଁ କିଛି ଦୋଷ
ସମାଜ ଏଥକୁ ଦାୟୀ ଅଛନ୍ତି ଅବଶ୍ୟ
ସଂସର୍ଗ ଶିକ୍ଷାରେ ତୁହି ହେଲୁ ଏତେ ସରି
ସମାଜ ଭ୍ରୂକ୍ଷେପ ତୋତେ କଲେ ବା କିପରି ?
ପଡ଼ିଲୁ ଶୈଶବେ ଯେତେବେଳେ ବେଶ୍ୟା ହସ୍ତେ
ଅବଶ୍ୟ ଏ ଦେଖୁଥିଲେ ସମାଜେ ସମସ୍ତେ।"

(ଅବସର ବାସରେ, ଫ.ମୋ.ଗ.- Vol. I, p.428)

ଏକ ବିସ୍ତୃତ କାଳଖଣ୍ଡର ବିବିଧ ପରିଚ଼ିତ୍ରକୁ ଚିତ୍ରଣ କରିବା ନିମିତ୍ତ ଚିତ୍ରଣରେ ବିବିଧତା ରହିବା କଥା। ବିବିଧତା ଦୃଷ୍ଟିକୋଣର ବ୍ୟାପକତାକୁ ସ୍ପଷ୍ଟ କରେ। ଫକୀରମୋହନଙ୍କ ସୃଜନର ନାରୀକୁ ଅନୁଧ୍ୟାନ କଲେ ଏହି ବିବିଧତା ପରିଦୃଷ୍ଟ ହୁଏ। ନାରୀର ଚିତ୍ରଣ ପାଇଁ ଲେଖକ ଗୋଟାଏ ତୂଳୀ ବା ଗୋଟାଏ ରଙ୍ଗର ଆଶ୍ରୟ ନେଇନାହାନ୍ତି। ତାଙ୍କ ସୃଜନରେ ନାରୀର କୌଣସି ସ୍ଥାୟୀ ଓ ନିର୍ଦ୍ଧାରିତ ଚରିତ୍ର ନାହିଁ। କେଉଁଠି ସେ ସ୍ୱରହୀନ, ପ୍ରତିବାଦବିହୀନ, ପୁରୁଷର ପରିଧିରେ ଆବଦ୍ଧ ତ ଅନ୍ୟ କେଉଁଠି ସେ ଚଳଚ଼ଞ୍ଚଳ, ଅସୀମ ଶକ୍ତି ଓ ସାହସର ଏକ ଜୀବନ୍ତ ପ୍ରତିମୂର୍ତ୍ତି। ସେ ହିଁ ଠିକ୍ କରିବ ସମାଜକୁ, ସମାଜରେ ସମାଧାନର

ସୂତ୍ର ଖୋଜିବା ସକାଶେ ତା'ଠାରେ ଯଥେଷ୍ଟ ଶକ୍ତି।

ଚିତ୍ରଣରେ ବିବିଧତା ପଛରେ କାରଣ କ'ଣ ହୋଇପାରେ ? ମନେହୁଏ ଯେ କାରଣ ମଧ୍ୟରେ ଲେଖକୀୟ ସୃଜନଶୀଳତା ଓ ସାମ୍ପ୍ରତିକ ସମାଜର ପ୍ରଭାବ ଅନେକାଂଶରେ ମୁଖ୍ୟ। ନିଜ ପରିପାର୍ଶ୍ୱର ପ୍ରଭାବରୁ ମୁକ୍ତ ହୋଇ ଲେଖକ ନିମନ୍ତେ ସୃଜନୀ ସହଜ ନୁହେଁ। ଅନ୍ୟଥା ସୃଜନୀ ଗ୍ରହଣୀୟ ହେବନାହିଁ। ଅନ୍ୟଦିଗରେ ଲେଖକ ସମୟର ବ୍ୟାବହାରିକ ପ୍ରଭାବରୁ ମୁକ୍ତ ନ ହେଲେ ବିକଳ୍ପ ବା ପରିଦୃଷ୍ଟ ହେବ କେମିତି ? ତେଣୁ, ପରିପାର୍ଶ୍ୱର ପ୍ରଭାବରୁ ମୁକ୍ତ ହୋଇ ସୃଷ୍ଟି କରିବାର ପ୍ରଚେଷ୍ଟା ବାରମ୍ବାର ଲେଖକକୁ ସୃଜନୀରେ ନୂଆ ନୂଆ ପ୍ରୟୋଗ କରିବାକୁ ପ୍ରେରିତ କରାଏ। ଫଳରେ, ଲେଖକ ଭିନ୍ନ ଭିନ୍ନ ଶୈଳୀରେ ନିଜ ବିଚାର ରଖେ- କେଉଁ ଏକ ଶୈଳୀରେ ପରିପାର୍ଶ୍ୱର ଅଧିକ ପ୍ରଭାବ, ତ ଅନ୍ୟ କେଉଁଥିରେ ମୁକ୍ତ ବିଚାରର ଅଧିକ ପ୍ରତିଫଳନ। ଯଦି ଆଜି ମଧ୍ୟ ଓଡ଼ିଶାର ସମାଜ ପୁରୁଷକୈନ୍ଦ୍ରିକ, ରକ୍ଷଣଶୀଳ, ତେବେ ଶହେବର୍ଷ ତଳର ସ୍ଥିତି ସହଜରେ ଅନୁମେୟ। ନାରୀ ହାତରେ ବଳ, ପରାକ୍ରମ, ଅସ୍ମିତା ଦେଇ ପୁରୁଷକୈନ୍ଦ୍ରିକ ସମାଜ କ'ଣ ନିଶ୍ଚିତ ରହିପାରେ ? ଏକ ସଂସ୍କାରକ, ବିକଳ୍ପ-ବିଚାରକ ଭାବରେ ଫକୀରମୋହନ ପ୍ରଚଳିତ ସମାଜ ଓ ବାସ୍ତବିକତାଠାରୁ ଭିନ୍ନ ଚିନ୍ତା କରୁଥାଇ ପାରନ୍ତି, ମାତ୍ର ସମୟ ଓ ସମାଜର ପ୍ରଭାବରୁ ମୁକ୍ତହୋଇ ସ୍ୱ ବିଚାରକୁ ପରିବେଷଣ କରି ପାରିନାହାନ୍ତି। ଅବଶ୍ୟ 'ପେଟେଣ୍ଟ ମେଡ଼ିସିନ'ର ସାଆନ୍ତାଣୀ ସେ ଦୃଷ୍ଟିରୁ ଏକ ବ୍ୟତିକ୍ରମ। 'ସାଆନ୍ତାଣୀ' ପୁରୁଷର ବିନା ଅନୁକରଣ କରି ନାରୀ ବେଶରେ ସମସ୍ୟାର ସମାଧାନ ଖୋଜିଛନ୍ତି ଓ ପାଇଛନ୍ତି। ସବୁଠାରୁ ବଡ଼ କଥା, ଫକୀରମୋହନଙ୍କ ଆଦର୍ଶନାରୀ ମାତୃତ୍ୱ, ମାତୃଭୂମି, ଗୋଷ୍ଠୀ, ସମୂହ ଓ ଧରଣୀ ଓ ଧାତ୍ରିଣୀର ପ୍ରତିନିଧିତ୍ୱ କରେ। ପତି ବା ପୁତ୍ର ରୂପରେ ସେ (ନାରୀ) ଏକ ପୁରୁଷକୁ ଗଢ଼ିବାରେ ସମୟ ଦିଏ ଏବଂ ପ୍ରତିଦାନରେ ସୁଯୋଗ୍ୟ 'ପୁରୁଷ' ଆଦର୍ଶନାରୀକୁ ସୁରକ୍ଷା ପ୍ରଦାନ କରେ। ଫଳରେ ନାରୀ ଓ ପୁରୁଷ ମଧ୍ୟରେ ସମ୍ପୂର୍ଣ୍ଣ ପରିପୂରକତା ଦର୍ଶାଇବା ଫକୀରମୋହନଙ୍କ ସୃଜନୀର ଏକ ବିଶେଷ ଗୁଣ ଭଳି ମନେ ହୁଏ।



(୨୦୦୨)

# ମଧୁସୂଦନ ଦାସ : ଏକ ଚର୍ଚ୍ଚା

ମଧୁସୂଦନ ଦାସ (୧୮୪୮-୧୯୩୪) ଥିଲେ ନବଉତ୍କଳର ଅନ୍ୟତମ ପ୍ରମୁଖ ଜନନାୟକ। ଯେତିକି ନିଜ ନାଁରେ ନୁହେଁ, ତା'ଠାରୁ ଢେର ଅଧିକା ସେ ମଧୁବାବୁ, ମି. ଦାସ, ଉତ୍କଳଗୌରବ, ଦେଶପ୍ରାଣ ତଥା କୁଳବୃଦ୍ଧ ଆଦି ନାମରେ ପରିଚିତ। ଏହା ତାଂକ ପ୍ରଗାଢ଼ ଜନ ସ୍ୱୀକୃତିକୁ ଦର୍ଶାଏ। ଗୋପବଂଧୁ ଦାସଂକୁ ବାଦ ଦେଲେ, ବୋଧହୁଏ, ଓଡ଼ିଶାରେ ଦ୍ୱିତୀୟ କେହି ନାହାନ୍ତି, ଯାହାଂକର ଆଧୁନିକ ଇତିହାସରେ ଏତେ ଅଧିକ ପରିଚୟ ରହିଛି। ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ଓ ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଦେଶରେ ଉଭୟ ଆଧୁନିକ ଓ ସଂଘୀୟ ରାଜନୀତିର ଭିତ୍ତି ପଡ଼ିଲା। ତହିଁରେ ସମସ୍ତ ଆଂଚଳିକ ନେତୃବର୍ଗର ମହତ୍ତ୍ୱପୂର୍ଣ୍ଣ ଭୂମିକା ରହିଥିଲା। ଅର୍ଥାତ୍ ଗାଂଧି-ନେହେରୁଂକ ଭଳି ଦେଶରେ ଆଂଚଳିକ ସ୍ତରର ମଧୁସୂଦନ, ଗୋପବଂଧୁମାନେ ମଧ୍ୟ ଏକା ସମ୍ମାନର ହକଦାର। ସେମାନେ ଅଂଚଳର ରୀତିନୀତି, ଇଚ୍ଛା, ଆବଶ୍ୟକତା ଆଦିକୁ ପ୍ରତିନିଧିତ୍ୱ ଦେଇଥିଲେ। ତେଣୁ, ସେମାନଂକ ସଂବଂଧରେ ଅଧିକରୁ ଅଧିକ ଚର୍ଚ୍ଚା ପରିଚର୍ଚ୍ଚା ହେଲେ ଦେଶର ସଂଘୀୟ ସ୍ୱାସ୍ଥ୍ୟର ଯେ ଉନ୍ନତି ଘଟିବ- ଏଥିରେ ଦ୍ୱିରୁକ୍ତି ନାହିଁ। ତା' ସହିତ ଏଥିରୁ ସିଦ୍ଧ ହେବ ଯେ ଦେଶଗଠନ କାମ କେବଳ ଉପର ସ୍ତରରେ କେତେ ଜଣ ହାତଗଣନ୍ତା ନେତୃବର୍ଗ ମଧ୍ୟରେ ସୀମିତ ନ ଥିଲା। ବରଂ ଏହାର ପ୍ରକ୍ରିୟା ତୃଣମୂଳ ସ୍ତରରେ ସୁଦ୍ଧା ବ୍ୟାପୀ ରହିଥିଲା। ଏହାକୁ ଅସ୍ୱୀକାର କରିବା ମାନେ ଦେଶର ଭିତ୍ତିକୁ ଦୁର୍ବଳ କରିଦେବା। ସେହି ଦୃଷ୍ଟିରୁ ଦେଖିଲେ ମଧୁସୂଦନଂକ ଜୀବନ ଓ ରାଜନୀତିକୁ ନେଇ ଏକ ପରିଚର୍ଚ୍ଚାର ଯଥେଷ୍ଟ ପ୍ରାସଂଗିକତା ରହିଛି।

ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ, ବିଶେଷ କରି ୧୮୬୫-୬୬ର କରାଳ ନ'ଅଂକ ଦୁର୍ଭିକ୍ଷ ପଡ଼ିବା ଉତ୍ତାରୁ ଓଡ଼ିଶାରେ ଆଧୁନିକ ରାଷ୍ଟ୍ରବାଦୀ ରାଜନୀତିର ମୂଳଦୁଆ ପଡ଼ିଲା। ଏହାକୁ ଭାରତ ପରିପନ୍ଥୀ କିଂବା ସଂକୀର୍ଣ୍ଣ ଅର୍ଥରେ ଆଂଚଳିକ କହିବା ଅସମୀଚିନ ହେବ। ଆଧୁନିକ ଶିକ୍ଷିତ ଯୁବଗୋଷ୍ଠୀ ଦେଶର ସମସ୍ୟାଗୁଡ଼ିକୁ ନେଇ ନିଜ ନିଜ ଗୋଷ୍ଠୀରେ ଚିନ୍ତା କଲେ ଏବଂ ନିଜ ବିଚାରକୁ ଏକ ଠୋସରୂପ ଦେବାପାଇଁ ମିଳିତ ହୋଇ ସମ୍ମିଳନୀମାନ କଲେ। ସେମାନେ ଗୋଟାଏ ପକ୍ଷରେ ପାଶ୍ଚାତ୍ୟ କର୍ତ୍ତୃତ୍ୱର ବିରୋଧ କରୁଥିଲେ, ଅନ୍ୟ ପକ୍ଷରେ ନିଜ ସାମାଜିକ ସମସ୍ୟାର ସମାଧାନ ପାଇଁ ପାଶ୍ଚାତ୍ୟର ଆଧାରରେ

ଉନ୍ନତି ଓ ବିକାଶର ବାଟ ଖୋଜୁଥିଲେ। ଏହାକୁ ଦେଶ ଗଠନ କାମ ବା ଜାତୀୟତାବାଦୀ କାର୍ଯ୍ୟକଳାପ କୁହାଯାଏ। ଯେତେବେଳେ ଭିନ୍ନ ଭିନ୍ନ ପ୍ରଦେଶରେ ମିଶି ରହିଥିବା ଓଡ଼ିଆ ଭାଷା-ଭାଷୀ ଅଂଚଳଗୁଡ଼ିକର ଏକତ୍ରିକରଣ, ଓଡ଼ିଆ ଭାଷା ଓ ସଂସ୍କୃତିର ସ୍ୱାତନ୍ତ୍ୟ ରକ୍ଷା, ଭାଷା ଭିତ୍ତିରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ, ଶିକ୍ଷା, କୃଷି ଓ ଶିଳ୍ପର ବିକାଶ ଆଦି ଲାଗି ବୁଦ୍ଧିଜୀବୀ ସ୍ତରରେ ଯେଉଁ ଉଦ୍ୟମମାନ ହେଲା, ସେସବୁକୁ ଦେଶଗଠନ କାମର ଗୋଟାଏ ଲେଖା ସ୍ୱରୂପ କୁହାଯାଇପାରେ।

ଜାତୀୟତାର ଇତିହାସରେ ଏହା ହେଲା ପ୍ରାରଂଭିକ କାଳଖଣ୍ଡ। ୧୮୫୭ ଗଣ ସଂଗ୍ରାମର କ୍ରୁର ଦମନ ପରେ ଇତିହାସ ସ୍ଥିର କଲା ଯେ ଏଣିକି ରାଜା-ରାଜୁଡ଼ା ସାମନ୍ତ ବର୍ଗ ବଦଳରେ ଦେଶି ହିତୈଷୀ ଆଧୁନିକ ଶିକ୍ଷିତ ବୁଦ୍ଧିଜୀବୀ ବର୍ଗ ଜାତୀୟତାର ନେତୃତ୍ୱ ନେବେ ଏବଂ ଦେଶର ସାମାଜିକ ଓ ରାଜନୈତିକ ପରିବର୍ତ୍ତନ ଲାଗି ସଶସ୍ତ୍ର ସଂଗ୍ରାମ ମାଧ୍ୟମ ହେବ ନାହିଁ। ବୁଦ୍ଧିଜୀବୀ ବା ଜାତୀୟତାବାଦୀ ବର୍ଗର ବ୍ରିଟିଶ ଗଣତାନ୍ତ୍ରିକ ଓ ନ୍ୟାୟ୍ ବ୍ୟବସ୍ଥାରେ ଆସ୍ଥା ଥିଲା। ଶିଳ୍ପ ବିପ୍ଳବ ଉତ୍ତାରୁ ଯେଉଁ ଶୀଘ୍ରତାର ସହିତ ୟୁରୋପ ଏବଂ ବିଶେଷ କରି ଇଂଲଣ୍ଡର ପ୍ରତି କ୍ଷେତ୍ରରେ ବିକାଶ ଦେଖିବାକୁ ମିଳିଥିଲା, ବିକାଶର ସେହି ଧାରା ଇଂରେଜ ସାହଚର୍ଯ୍ୟରେ ଭାରତରେ ମଧ୍ୟ ପ୍ରବାହିତ ହେବ ବୋଲି ସେମାନେ ଆଶା ରଖିଥିଲେ। ସରକାର ପାଖରେ କେବଳ ଦେଶର ଆବଶ୍ୟକତା ଜଣାଇବା ସେମାନଂକ କର୍ତ୍ତବ୍ୟ ବୋଲି ସେମାନେ ବୁଝିଥିଲେ। ତେଣୁ, ସରକାରଠାରେ ହାରିଗୁହାରି କରି ତଥା ଆବେଦନ ପ୍ରତିବେଦନ ଜଣାଇ ଦେଶରେ ପାଶ୍ଚାତ୍ୟ ବିକାଶର ଧାରାକୁ ତ୍ୱରାନ୍ୱିତ କରିବାକୁ ସେମାନେ ଉଦ୍ୟମ କରୁଥିଲେ। ମୋଟ କଥା ହେଲା, ଆଦ୍ୟ-ଜାତୀୟତାବାଦୀ ଏହି ବୁଦ୍ଧିଜୀବୀ ବର୍ଗ ନିମନ୍ତେ ଦେଶଗଠନ କାମର ଅର୍ଥ ହେଲା ବିଦେଶୀ ସରକାରଠାରେ ଲୋକଂକର ଆଶା, ଆକାଂକ୍ଷାକୁ ନମ୍ର, ବିନିତ ସ୍ୱରରେ ପ୍ରକାଶ କରିବା ଓ ସରକାରର କାର୍ଯ୍ୟ-କଳାପକୁ ଲୋକଂକୁ ଜଣାଇ ଅଧିକରୁ ଅଧିକ ଜନସଚେତନତା ସୃଷ୍ଟି କରିବା। ଏହି ଦ୍ୱୈତ ଉଦ୍ଦେଶ୍ୟ ପୁରଣ ଲାଗି ସେମାନେ ସଭାସମିତି ଆୟୋଜନ କରୁଥିଲେ; ସାମାଜିକ କାର୍ଯ୍ୟକୁ ବ୍ୟକ୍ତିଗତ ସ୍ତରରେ ସୀମିତ ନ ରଖି ଗୋଷ୍ଠୀଭିତ୍ତିକ କରିବାକୁ ପ୍ରୟାସ କରୁଥିଲେ; ପତ୍ର-ପତ୍ରିକା ପ୍ରକାଶନ କରୁଥିଲେ।

ଏହା ବ୍ୟତୀତ, ସରକାର ପାଖରେ ସେମାନେ ଆବେଦନ ପ୍ରତିବେଦନ ଜଣାଉଥିଲେ ତଥା କାଉନସିଲରେ ସରକାରର କର୍ତ୍ତବ୍ୟକୁ ନେଇ ପରିଚର୍ଚ୍ଚା ପ୍ରଦାନ କରୁଥିଲେ। ଏଥିପାଇଁ ଗୋଳା ବାରୁଦ, ଅସ୍ତ୍ରଶସ୍ତ୍ର ବ୍ୟବହାର ତ ପଛ କଥା, ସେମାନଙ୍କୁ ସତ୍ୟାଗ୍ରହ, ଧର୍ମଘଟ ବା ଅସହଯୋଗ ଆଦି ଜନମତର ମାଧ୍ୟମ ହୋଇ ପାରିବେ ବୋଲି ଜଣାନଥିଲା। ଫଳରେ, ଏହି ଆଦ୍ୟ-ଜାତୀୟତାବାଦୀଙ୍କୁ ଜେଲ ଯିବାକୁ ବା ପୋଲିସର ଲାଠିଗୁଳି ଖାଇବାକୁ ବି ପଡ଼ି ନ ଥିଲା। ଏ ସବୁ ସତ୍ତ୍ୱେ ସେମାନଙ୍କ ରାଷ୍ଟ୍ରଭକ୍ତିକୁ କଦାପି ସଂଦେହ କରାଯାଇ ନ ପାରେ। ଓଡ଼ିଶାରେ ଏହି ଧରଣର ଜାତୀୟତାମୂଳକ କାମର ଆଧାର ପଡ଼ିବା ବେଳେ ମଧୁସୂଦନ ଦାସ ସର୍ବଦା ଏକ ଅଗ୍ରଣୀ ଭୂମିକା ନେଇଛନ୍ତି। ଏହା ତାଂକ ଜାତୀୟ ମହତ୍ତ୍ୱକୁ ଦର୍ଶାଏ।

ମଧୁସୂଦନ ଦାସଂକର ଜନ୍ମ କଟକ ଜିଲ୍ଲା ସାଲେପୁର ନିକଟସ୍ଥ ସତ୍ୟଭାମାପୁରରେ; ୧୮୪୮ ମସିହା ଏପ୍ରିଲ ୨୮ ତାରିଖରେ। ପିତା ରଘୁନାଥ ଦାସ, ମା' ପାର୍ବତୀ ଦେବୀ। ଜମିଦାର ପରିବାର। ଖୁବ୍ ଧନାଢ୍ୟ ନ ହେଲେ ସୁଦ୍ଧା, ସଂପନ୍ନ ବୋଲି କହିହେବ। ପ୍ରାରଂଭିକ ଶିକ୍ଷା ଗାଁରେ। ନିଜ ଅସଂପୂର୍ଣ୍ଣ ଆତ୍ମଜୀବନୀରେ ମଧୁସୂଦନ ତାଂକ ଚାଟଶାଳୀ ଶିକ୍ଷା ସଂପର୍କରେ ବର୍ଣ୍ଣନା କରି ସେବେଳର ଶିକ୍ଷା ଶିକ୍ଷକ ଓ ଶିକ୍ଷାର୍ଥୀ ମଧ୍ୟରେ ରହିଥିବା ଆତ୍ମୀକ ଭାବକୁ ଦର୍ଶାଇଛନ୍ତି। ପରଂପରାକୁ ସେ ନ୍ୟୁନ କରି ନାହାନ୍ତି। ତାଂକ ଆଧୁନିକତା ଯଦି ପରଂପରା-ବିମୁଖ ନୁହେଁ, ତେବେ ତାହା ପରଂପରା ସର୍ବସ୍ୱ ବି ନୁହେଁ। ବରଂ ତାହା ଏଭଳି ଏକ ପାଶ୍ଚାତ୍ୟ ଦୃଷ୍ଟି ଯାହା ପରଂପରାକୁ ଅଣଦେଖା କରେ ନାହିଁ। ବାଳକ ମଧୁସୂଦନଂକୁ ସେତେବେଳେ ପରିବାରର ଯେଉଁ ଘଟଣାଟି ଅତିଶୟ ଗର୍ବ ଓ ଗୌରବ ଦେଉଥିଲା, ସେ ଥିଲା ତାଂକ ପ୍ରପିତାମହୀଂକ ପତିଂକ ଚିତାରେ 'ସତୀ' ହେବାର କାହାଣୀ। ଏଥିରୁ ବି ତାଂକର ପରଂପରା ପ୍ରେମ ଜଥା ଜଣାପଡ଼େ। କାରଣ ପରବର୍ତ୍ତୀ ଜୀବନରେ ଜଣେ ସଂସ୍କାରୀ ମଣିଷ ଭାବରେ ସେ ହୁଏତ ସତୀପ୍ରଥାକୁ କୁସଂସ୍କାର ବୋଲି କହିଥିବେ, ମାତ୍ର ପ୍ରପିତାମହୀଂକ ଆତ୍ମଦହନର କାହାଣୀ ଶୁଣି ସେ ନିଜ ବଂଶ ଗୌରବରେ ଗୌରବାନ୍ୱିତ ହୋଇଛନ୍ତି ତଥା ତହିଁରୁ ତ୍ୟାଗ ଓ ଶୁଦ୍ଧତାର ମନ୍ତ୍ର ପାଇଛନ୍ତି। ଏହା ତାଂକୁ 'ପରାର୍ଥେ ଜୀବନ' ଦେବାକୁ ମଧ୍ୟ ମନୋବଳ ଦେଇଛି।

ମଧୁସୂଦନ ୧୮୬୪ରେ କଟକରୁ ଏନଟ୍ରାନ୍‌ସ ପାସ କଲା ପରେ ଦୁଇ ବର୍ଷ ବାଲେଶ୍ୱର ଜିଲ୍ଲା ସ୍କୁଲରେ ଶିକ୍ଷକତା କରିଥିଲେ। ମଧୁବାବୁଂକ ଜୀବନରେ ତଥା ନବ ଉତ୍କଳର ଉନ୍ମେଷରେ ଏହି କାଳାଂଶର ମହତ୍ତ୍ୱ ଖୁବ୍ ଅଧିକ। ସେଠାରେ ଓଡିଶାର ଦୁଇ ଜଣ ବୁଦ୍ଧିଜୀବୀ ଫକୀର ମୋହନ ସେନାପତି (୧୮୪୩-୧୯୧୮) ଓ ରାଧାନାଥ ରାୟଙ୍କ (୧୮୪୮-୧୯୦୮) ସହ ତାଂକର ବଂଧୁତା ହୋଇଥିଲା। ଏହା ଥିଲା ନଅଂକ ଦୁର୍ଭିକ୍ଷର ସମୟ। ଓଡ଼ିଶା ଇତିହାସର ଏହି ସଂଧିକ୍ଷଣରେ ସାମାଜିକ ସମସ୍ୟା ଓ ତା'ର ପ୍ରତିକାରକୁ ନେଇ ତିନି ବଂଧୁ ଯେଉଁ ବିଚାର ଆଲୋଚନା କରୁଥିଲେ, ତା'ର ଫଳସ୍ୱରୂପ ସେମାନେ ସାମାଜିକ ସଂସ୍କାର ପ୍ରତି ଆକୃଷ୍ଟ ହେଲେ। ଜାତୀୟ ଅଧୋପତନ ଲାଗି ସେମାନେ ହିଂଦୁ ଧର୍ମର ରଢ଼ିବାଦ ଓ କୁସଂସ୍କାରକୁ ଦାୟୀ କରି ଧର୍ମ ତ୍ୟାଗ କରି ଖ୍ରୀଷ୍ଟିଆନ ଧର୍ମ ଗ୍ରହଣ କରିବାକୁ ସୁଦ୍ଧା ମନ ବଳାଇଥିଲେ। ଫକୀର ମୋହନ ଏବଂ ରାଧାନାଥ ବ୍ରାହ୍ମ ହୋଇ ରହିଗଲେ। ସେତେବେଳେ ଆଭିଜାତ୍ୟ ସମାଜରେ ବ୍ରାହ୍ମକୁ ମଧ୍ୟ ଏକ ଭିନ୍ନ ଧର୍ମ ମନେ କରାଯାଉଥିଲା। ସଂସ୍କାରବାଦିତା ମଧୁସୂଦନଂକୁ୧୮୬୯ରେ କଲିକତାରେ ଖ୍ରୀଷ୍ଟଧର୍ମ ଗ୍ରହଣ କରିବାକୁ ବାଟ ଦେଖାଇଲା।

ମନେହୁଏ, ଯୀଶୁଖ୍ରୀଷ୍ଟଙ୍କର ତ୍ୟାଗ ଓ ବଳିଦାନରେ ପ୍ରଭାବିତ ହୋଇ ମଧୁସୂଦନ ଧର୍ମାନ୍ତରଣ କରିଥିଲେ। ଧର୍ମାନ୍ତରଣ ତାଂକ ବ୍ୟକ୍ତିତ୍ୱ ଓ ବୌଦ୍ଧିକତାକୁ ଶାଣିତ କରିଥିଲା; ବିଶ୍ୱ ଦୃଷ୍ଟି ଦେଇଥିଲା। ଏହାର ଅର୍ଥ ନୁହେଁ, ଧର୍ମାନ୍ତରଣ ବିନା ବୌଦ୍ଧିକତା ଓ ବିଶ୍ୱଦୃଷ୍ଟି ପାଇବା କଷ୍ଟ। ସେ ଯାହାହେଉ, ଧର୍ମାନ୍ତରଣ ଯୋଗୁଁ ସେ ଖ୍ରୀଷ୍ଟିଆନ ମିଶନାରୀମାନଂକର ବଂଧୁତା ଓ ସାହଚର୍ଯ୍ୟ ଲାଭ କରିଥିଲେ। ଏକ ସମୟରେ ତାଂକ ବାଗ୍ମୀତା ଦେଖି ମିଶନାରୀମାନେ ତାଂକୁ ଧର୍ମ ପ୍ରଚାରକ ହେବା ପାଇଁ ମଧ୍ୟ ପରାମର୍ଶ ଦେଇଥିଲେ। ୧୮୬୩ରେ ସୌଦାମିନୀ ଦେବୀ ନାମକ ଜଣେ ଶିକ୍ଷିତ ବଂଗାଳୀ ଯୁବତୀ ସହ ତାଂକର ବିବାହ ପଛରେ ମଧ୍ୟ ଧର୍ମ ଥିଲା ଅନ୍ୟତମ କାରଣ। ଅନ୍ୟ ପକ୍ଷରେ, ଧର୍ମାନ୍ତରଣ ଯୋଗୁଁ ମଧୁସୂଦନଂକର ପରିବାର ସହ ସଂପର୍କ କଟିଲା। ଏଣିକି ନିଜ ଖର୍ଚ୍ଚ ତୁଲାଇବା ସକାଶେ ସେ କଲିକତାରେ ଶିକ୍ଷକତା ଓ ଘରୋଇ ଟ୍ୟୁସନ କଲେ; ଉଚ୍ଚ ନ୍ୟାୟାଳୟରେ ଓଡ଼ିଆ ଅନୁବାଦକ ଭାବରେ କାମ କଲେ। କଲିକତାର ବଂଗାଳୀ ପରିବେଶରେ

ଜଣେ ଉଚ୍ଚଶିକ୍ଷିତ, ଜ୍ଞାନ ପିପାସୁ ଓଡ଼ିଆଛାତ୍ର ଭାବରେ ତାଂକୁ ଢେର ବ୍ୟଙ୍ଗ ଓ ବିଦ୍ରୂପର ଶିକାର ହେବାକୁ ପଡ଼ିଥିଲା। ମଧୁବାବୁଂକ ଭାଷାରେ, "ବଂଗଳାରେ ମୁଁ ଏକମାତ୍ର ଓଡ଼ିଆ ଛାତ୍ର ଥିଲି ଏବଂ  ମୋ ବିରୁଦ୍ଧରେ ସମସ୍ତ ବିଦ୍ରୂପ ବାଣ ପ୍ରୟୋଗ କରାଯାଉଥିଲା। ସେମାନେ ମୋତେ 'ମଧୁ ଉଡ଼େ' ବୋଲି ଡାକୁଥିଲେ।" ଅସ୍ମିତାର ଏହି ସଂକଟ ବେଳେ ସୌଦାମିନୀ ଦେବୀ ଥିଲେ ମଧୁବାବୁଂକ ପ୍ରମୁଖ ସାଥି। ମାତ୍ର ବିବାହର କେବଳ ପାଂଚ଼ ବର୍ଷ ପରେ ୧୮୬୮ରେ ତାଂକର ମୃତ୍ୟୁ ଘଟିଲା। ବିପତ୍ନୀକ ହେଲା ପରେ ମଧୁସୂଦନ ଏକଲା ହେଲେ, ମାତ୍ର ଦ୍ୱିତୀୟ ବିବାହ କରିବାକୁ  ମଧ୍ୟ ଆଗ୍ରହ ପ୍ରକାଶ କଲେ ନାହିଁ। ଏକାକୀତ୍ୱର ବିକଳ୍ପ ଭାବରେ ସେ ସାମୂହିକ କାମରେ ସମୟ ଦେଲେ।

କଲିକତା ପ୍ରବାସର ଏତେ ସବୁ ଜୀବନ ସଂଘର୍ଷ ମଧ୍ୟରେ ବି ମଧୁସୂଦନ ନା ପରାର୍ଥ ଭାବରୁ ବିଚ୍ୟୁତ ହୋଇଥିଲେ, ନା ନିଜ ଜିଜ୍ଞାସାକୁ ଗୌଣ କରିଥିଲେ। ୧୮୬୨ରୁ ୧୮୬୮ ମଧ୍ୟରେ ସେ ଦରିଦ୍ର ଶ୍ରମିକମାନଂକ ସନ୍ତାନମାନଂକ ପାଇଁ ଖିଦିରପୁରରେ ଏକ ନୈଶ ବିଦ୍ୟାଳୟ ଆରଂଭ କରିଥିଲେ। କଲିକତା ରହଣିବେଳେ ହିଁ ସେ ବି.ଏ., ଏମ୍.ଏ. ଓ ଲ' ଡିଗ୍ରୀ ହାସଲ କରିଥିଲେ।

କଲିକତାରେ ମଧୁସୂଦନ ଦୀର୍ଘ ୧୫ ବର୍ଷ ପର୍ଯ୍ୟନ୍ତ (୧୮୬୬ ରୁ ୧୮୮୧) ରହିଥିଲେ। ଦୀର୍ଘ ରହଣି ତାଂକୁ ବଂଗଳା ଭାଷାରେ ଯଥେଷ୍ଟ ଦକ୍ଷତା ଦେଇଥିଲା। ମାତୃଭାଷା ପରି ସ୍ୱଚ୍ଛଂଦରେ ସେ ବଂଗଳାରେ କଥାଭାଷା କରି ପାରୁଥିଲେ। ପ୍ରାୟତଃ ସେ ବଂଗଳାରେ କଥାଭାଷା କରୁଥିଲେ। ଏହାକୁ ଯଦି ବଂଗାଳି-ପ୍ରୀତି କୁହାଯାଏ, ଓଡ଼ିଆ ସ୍ୱାଭିମାନର ଲଢ଼େଇ ବେଳେ ବି ତାକୁ ସେ ଅଣଦେଖା କରିନଥିଲେ। ପତ୍ନୀ ବ୍ୟତୀତ ତାଂକର ଅନେକ ଘନିଷ୍ଠ ବଂଧୁ ଥିଲେ ବଂଗାଳୀ। କଲିକତାର ସାମାଜିକ ଓ ରାଜନୀତିକ ପରିବେଶ ସହ ତାଂକର ଯଥେଷ୍ଟ ଆନ୍ତଃକରଣ ହୋଇ ସାରିଥିଲା । କିଛି କାଳ (୧୮୬୮-୧୮୮୧) ସେ କଲିକତାର ଖିଦିରପୁର ଅଦାଲତରେ ଓକିଲାତି ବି ଆରଂଭ କରିଥିଲେ। ଏହି ଦୃଷ୍ଟିରୁ ଦେଖିଲେ କଲିକତାର ଜନଜୀବନରେ ତାଂକ ପାଇଁ ମିଶିଯିବା ଖୁବ୍ କାଠିକର ନ ଥିଲା। ମାତ୍ର କଲିକତାରେ ସେ ମିଶି ଯାଇଥିଲେ ଯେ ଅସ୍ମିତାର ସଂକଟରୁ ଉଭୁରି ପାରିଥାନ୍ତେ, ଏକଥା ଟାଣ କରି କହିହେବ ନାହିଁ। ବଂଶ ପରଂପରାର ତ୍ୟାଗ ଓ ଶୁଦ୍ଧତା ଯେମିତି ତାଂକୁ ଗର୍ବ ଦେଉଥିଲା, ଓଡ଼ିଆ ଜାତି

ପରିଚୟ ମଧ୍ୟ ସେମିତି ଗୌରବ ପ୍ରଦାନ କରୁଥିଲା। ନାନା ବ୍ୟଙ୍ଗ ବିଦ୍ରୂପର ଶିକାର ହେବା ସତ୍ତ୍ୱେ ସେହି ପରିଚୟକୁ ସେ କେବେ ଲୁଚାଉ ନ ଥିଲେ। ତେଣୁ, ୧୮୮୧ରେ ତାଂକ ପାଇଁ ଓଡ଼ିଶା ଫେରି ଓକିଲାତି କରିବା, ଓଡ଼ିଶାକୁ ସବୁ କ୍ଷେତ୍ରରେ ବଂଗ ତଥା ଦେଶର ଅନ୍ୟାନ୍ୟ ଅଂଚଳର ସମକକ୍ଷ କରିବା ଲାଗି ପ୍ରୟାସ କରିବା ତଥା ଏହି ଉଦ୍ଦେଶ୍ୟ ପୂରଣ ଲାଗି ସାମାଜିକ ଓ ରାଜନୈତିକ ଜୀବନରେ ସଂପୃକ୍ତ ହେବା ଖୁବ୍ ସ୍ୱାଭାବିକ ହୋଇପଡ଼ିଲା।

ବଂଗ ମଧୁସୂଦନଂକୁ ସ୍ୱ-ଅସ୍ମିତା ଖୋଜିବାକୁ ଅବସର ଦେଇଥିଲା। ସେହି ଅନୁଯାୟୀ ବଂଗ ଥିଲା ତାଂକର ଶିକ୍ଷାଭୂମି। ପ୍ରଶାସନିକ ଦୃଷ୍ଟିରୁ ଓଡ଼ିଶା ପାଇଁ ବଂଗ ଥିଲା ଆଦିଭୂମି, କାରଣ ଓଡ଼ିଶା ଡିଭିଜନ ନାମରେ ପରିଚିତ ଓଡ଼ିଆ ଭାଷା ଭାଷୀ କ୍ଷେତ୍ରର ପ୍ରମୁଖ ଅଂଚଳ (କଟକ, ପୁରୀ ଓ ବାଲେଶ୍ୱର) ବଂଗ ପ୍ରେସିଡ଼େନ୍‌ସିର ସଂଭାଗ ହୋଇ ରହିଥିଲା। ୧୯୦୫ରେ କେଂଦ୍ର ପ୍ରଦେଶରୁ ସଂବଲପୁର ଆସି ଓଡ଼ିଶା ଡିଭିଜନରେ ମିଶିଲା। ୧୯୧୨ରେ ବିହାର ଓ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଗଠିତ ହେବା ପରେ ମଧ୍ୟ ଶିକ୍ଷା ଶାସନ, ସାମାଜିକତା ତଥା ଅନ୍ୟାନ୍ୟ କ୍ଷେତ୍ରରେ ବଂଗ ଥିଲା ଓଡ଼ିଶାର ଇପ୍ସିତ ଭୂମି। ମଧୁସୂଦନ ବଂଗରୁ ଫେରି ଆସିଲା ପରେ ବି ବଂଗ ତାଂକ ମାନସପଟରୁ ଯାଇନି। ବଂଗ ତୁଳନାରେ ଓଡ଼ିଶା ଅନଗ୍ରସର ପ୍ରତୀତ ହୋଇଛି। ବଂଗର ସମତୁଲ ନ ହେବା ଯାଏଁ ଓଡ଼ିଶାର ରାଜନୀତି ପ୍ରାଦେଶିକତାକୁ ପ୍ରମୁଖତା ଦେବ ବୋଲି ସେ ମନେ କରିଛନ୍ତି। ବଂଗର ଉନ୍ନତି ଓ ବିକାଶ ତାଂକ ମନରେ ପ୍ରତିଯୋଗୀଭାବ ସୃଷ୍ଟି କରିଛି। ମଧୁସୂଦନଂକ ସମସାମୟିକ ବଂଗୀୟ ନେତୃବର୍ଗ ତଦ୍‌କାଳୀନ ରାଷ୍ଟ୍ରୀୟ ଆଂଦୋଳନରେ ପ୍ରମୁଖତା ପାଉଥିଲେ। ବୋଧହୁଏ, ଏହି କାରଣରୁ ରାଷ୍ଟ୍ରୀୟ ରାଜନୀତିରେ ମଧୁବାବୁଂକର ଯେତେ ମାତ୍ରାରେ ପ୍ରତ୍ୟକ୍ଷ ସଂପୃକ୍ତି ରହିବା କଥା, ସେତିକି ସଂପୃକ୍ତି ରହିପାରିନାହିଁ। ଅନ୍ୟ ଅର୍ଥରେ କହିଲେ, ଓଡ଼ିଶାର ଉନ୍ନତି ଓ ବିକାଶ କଥା କହିଲା ବେଳେ ମଧୁବାବୁଂକ ଆଗରେ ବଂଗ ଯେମିତି ମାନଦଣ୍ଡ ସ୍ଥିର କରି ଦେଇଛି !

ବଂଗ ସହିତ ମଧୁବାବୁଂକ ପ୍ରେମ ଓ ଈର୍ଷାର ସଂବଂଧକୁ ଅନେକ ସମୟରେ ବଂଗ ବିଦ୍ୱେଷୀ ଭାବ ବୋଲି ଆକ୍ଷେପ କରାଯାଏ। ଏହି ଆଧାରରେ ମଧୁବାବୁ ସଂକୀର୍ଣ୍ଣ ଓଡ଼ିଆ ଆଂଚଳିକତାର ପକ୍ଷଧର ଓ ମହାଭାରତୀୟ ରାଷ୍ଟ୍ରୀୟତାର

ବିରୋଧୀ ରୂପରେ ମଧ୍ୟ ଚିହ୍ନିତ ହୁଅନ୍ତି। ୧୯୧୫ ଡିସେଂବରରେ ଯେତେବେଳେ ମଧୁବାବୁଂକ ଅନୁପସ୍ଥିତିରେ ସଂବଲପୁରଠାରେ ଉତ୍କଳ ସମ୍ମିଳନୀର ବାର୍ଷିକ ଅଧିବେଶନ ଶେଷ ହେଲା, କଲିକତାରୁ ପ୍ରକାଶିତ 'ହିଂଦୁ ପେଟ୍ରିଅଟ' ପତ୍ରିକା ଆଶ୍ୱସ୍ତ ହୋଇ ଲେଖିଲା, "ସଂଭବତଃ ମାନ୍ୟବର ଶ୍ରୀଯୁକ୍ତ ମଧୁସୂଦନ ଦାସଂକ ଅନୁପସ୍ଥିତି ଯୋଗୁଁ (ସଂବଲପୁରରେ) ବଂଗାଳୀ ବିଦ୍ୱେଷ ବକ୍ତୃତାଦି କିଛି ହୋଇନାହିଁ।" (ସୂର୍ଯ୍ୟ ନାରାୟଣ ଦାସ, ଦେଶପ୍ରାଣ ମଧୁସୂଦନ, କଟକ, ୧୯୭୧, ପୃ.୩୮୯) ମଧୁସୂଦନଂକୁ କେତେମାତ୍ରାରେ ବଂଗାଳି ବିଦ୍ୱେଷୀ ମନେ କରାଯାଉଥିଲା, ଏଥିରୁ ତା'ର ପ୍ରମାଣ ମିଳେ। କେବଳ ବଂଗାଳୀ ନୁହନ୍ତି, ମଧୁବାବୁଂକ ପରପିଢ଼ିର (ଓଡ଼ିଶାର) ଯୁବ ନେତୃବର୍ଗ ମଧ୍ୟ ଉତ୍କଳ ସମ୍ମିଳନୀ ଓ ତା'ର ପ୍ରମୁଖ ମଧୁବାବୁଂକ ତଥାକଥିତ ବଂଗାଳୀ ବିରୋଧୀ ଭାବକୁ ନେଇ କ୍ଷୁର୍ଣ୍ଣ ଥିଲେ। ୧୯୦୪ରେ ଗୋପବଂଧୁ ଦାସଂକର କେତେକଣ ବଂଗାଳୀ ବଂଧୁ ମଧୁବାବୁଂକ ନିର୍ଦ୍ଦେଶରେ ସମ୍ମିଳନୀ ମଣ୍ଡପକୁ ପ୍ରବେଶ ଅଧିକାର ସୁଦ୍ଧା ପାଇନ ଥିଲେ ବୋଲି ଅଭିଯୋଗ ହୋଇଥିଲା। (S. C. Das, Pondit Gopabandhu Das : A Political Biography, Cuttack, 1964, PP.26-27) ହରେକୃଷ୍ଣ ମହତାବ, ଯିଏ ପରବର୍ତ୍ତୀ ସମୟରେ ଓଡ଼ିଶା ରାଜନୀତିର ଶୀର୍ଷକୁ ପହଂଚିଥିଲେ, ଲେଖିଛନ୍ତି ଯେ ଆଦ୍ୟକାଳୀନ ଓଡ଼ିଆ ଆଂଦୋଳନ ରାଜନୀତିରେ ବଂଗ ବିଦ୍ୱେଷଭାବ ତୀବ୍ର ଭାବେ ରହିଥିଲା। (ହରେକୃଷ୍ଣ ମହତାବ, ସାଧନାର ପଥେ, କଟକ, ୧୯୭୨, ପୃ.୧୦) ଏହା ଯଦି ସତ, ତେବେ ଏଥିପାଇଁ ଆଂଦୋଳନ ଓ ସମ୍ମିଳନୀର ପ୍ରମୁଖ ନେତା ମଧୁବାବୁ ହିଁ ଦାୟୀ ହେବେ।

ମଧୁସୂଦନଂକ ଦୃଷ୍ଟିକୋଣକୁ ନିରୀକ୍ଷଣ କଲେ, ଏହି ଅଭିଯୋଗ ଯଥେଷ୍ଟ ଯୁକ୍ତିସଂବତ ମନେହୁଏ ନାହିଁ। ମଧୁସୂଦନ ବୁଝିଥିଲେ ଯେ ଓଡ଼ିଶା ହେଲା ଭାରତର ଏକ ଅଭିନ୍ନ ଅଂଶ। ମାତ୍ର ଅନ୍ୟ ପ୍ରଦେଶ, ବିଶେଷ କରି ବଂଗ ତୁଳନାରେ ଓଡ଼ିଶା ଯେହେତୁ ଅନଗ୍ରସର, ତା'ର ବଂଗ ସମକକ୍ଷ ହୋଇ ପ୍ରଗତି କରିବା ନିହାତି ଆବଶ୍ୟକ। ତେଣୁ, ଓଡ଼ିଶାର ଉନ୍ନତିକୁ ଅଧିକ ପ୍ରାଥମିକତା ଦେବାକୁ ପଡ଼ିବ। ବଂଗ ପରି ଅନ୍ୟାନ୍ୟ ପ୍ରଦେଶର ସମକକ୍ଷ ହେବା ପୂର୍ବରୁ ଓଡ଼ିଶା ନେତୃତ୍ୱ ଅନ୍ୟ ବୃହତ୍ତର ମହାଭାରତୀୟ ପ୍ରସଂଗ ପ୍ରତି ଟାଣି ହେଲେ, ଓଡ଼ିଶାର ଅନଗ୍ରସରତା ବୃଦ୍ଧି ପାଇବ ପଛେ, ଊଣା ହେବ ନାହିଁ। ଦ୍ୱିତୀୟତଃ, ଓଡ଼ିଶାର ଏହି ଅନଗ୍ରସରତା ଦେଶର ସାମଗ୍ରିକ ଉନ୍ନତି ପାଇଁ ପ୍ରତିବଂଧକ ସୃଷ୍ଟି କରିବ। ନିଜର

ଏହି ଦୃଷ୍ଟିକୋଣକୁ ସୁସ୍ପଷ୍ଟ କରିବାକୁ ଯାଇ 'ଜାତୀୟ ଜୀବନ' ଶୀର୍ଷକ ଏକ ନିବଂଧରେ ସେ ଲେଖିଥିଲେ :

ଉତ୍କଳ ଜନନୀ ଭାରତ ଜନନୀର ସପତ୍ନୀ କିଂବା ଶତ୍ରୁ ନୁହନ୍ତି। ଭାରତ ଜନନୀଂକର ପାଂଚ ଛଅ ଗୋଟି ପୁତ୍ର। ଭିନ୍ନ ଭିନ୍ନ ଶିଶୁଂକ ପାଇଁ ବିଭିନ୍ନ ପରିଚର୍ଯ୍ୟା ଆବଶ୍ୟକ। ଜନନୀ କେଉଁ ଶିଶୁକୁ କ୍ରୋଡ଼ରେ ପୂରାଇ ମଧୁମୟ ସ୍ନେହଚକ୍ଷୁରେ ସ୍ତନ୍ୟ ପାନ କରାଉଛନ୍ତି, କେଉଁ ଶିଶୁର ଦୁଷ୍ଟ ଚରିତ୍ରକୁ ଦମନ କରିବା ପାଇଁ ବେତ୍ରାଘାତ କରୁ ଅଛନ୍ତି; କେଉଁ ଶିଶୁକୁ ନିକଟରେ ବସାଇ ତାଂଠାରୁ ପରାମର୍ଶ ଗ୍ରହଣ କରୁଛନ୍ତି; ଅର୍ଥାତ୍ ଶିଶୁର ବିଭିନ୍ନ ଅବସ୍ଥାରେ ଜନନୀ ବିଭିନ୍ନ ରୂପ ଧାରଣ କରି ଦଣ୍ଡାୟମାନ ହେଉ ଅଛନ୍ତି। ଯେଉଁ ମଧୁମୟୀ ମୂର୍ତ୍ତିରେ ଜନନୀ ଶିଶୁକୁ ସ୍ତନ୍ୟପାନ କରାନ୍ତି, ଉତ୍କଳ ଜନନୀ ଆଜି ସେହି ସ୍ନେହମୟୀ ମୂର୍ତ୍ତିରେ ଆମ୍ଭମାନଂକ ସମ୍ମୁଖରେ ଉପସ୍ଥିତ ହୋଇ ଅଛନ୍ତି। ଏହି ମୂର୍ତ୍ତି ଭାରତମାତାଂକର ଗୋଟାଏ ମୂର୍ତ୍ତି ବିଶେଷ। ଏହି ରୂପଟି ଭାରତମାତାଂକର ଗୋଟାଏ ରୂପ।

*(ଉତ୍କଳ ସମ୍ମିଳନୀ, ଉତ୍କଳଶ୍ରୀ, ବାଲେଶ୍ୱର, ୨୦୦୫, ପୃ.୩)*

ବଂଗ ଓ ଉତ୍କଳ ମଧ୍ୟରେ ରହିଥିବା ପରିପୂରକତାକୁ ଦର୍ଶାଇ ୧୯୦୪ରେ ଉତ୍କଳ ସମ୍ମିଳନୀର ଏକ ଆଲୋଚନା ପ୍ରସଂଗରେ ସେ କହିଥିଲେ, "ବଂଗମାତା ଓ ଉତ୍କଳମାତା ଏକ। ଭାରତ ଜନନୀଂକର ବିଭିନ୍ନ ଅବତାର ମଧ୍ୟ ଏକ। ଭ୍ରମରେ ଯଦି କେହି ଏହାକୁ ଅନ୍ୟ ବିବେଚନା କରନ୍ତି, ମୁଁ ଭରସା କରେଁ, ସେହି ଭ୍ରମରେ କେହି ଉତ୍କଳୀୟ ପଡ଼ିବେ ନାହିଁ।" ଦେଶର ସାମୂହିକ ହିତ ଦୃଷ୍ଟିରୁ ଉତ୍କଳ ପ୍ରତି ଅଧିକ ଯତ୍ନର ଆବଶ୍ୟକତା ରହିଛି ବୋଲି ଯୁକ୍ତି କରି ୧୯୦୮ରେ (ଉତ୍କଳ ସମ୍ମିଳନୀରେ) ସେ ଆହୁରି କହିଥିଲେ, "ଉତ୍କଳ ଜନନୀ ଓ ଭାରତ ଜନନୀଂକର (ମଧ୍ୟରେ) କିଛି ପ୍ରଭେଦ ନାହିଁ। ଶରୀରର କୌଣସି ଅଂଶ ପୀଡ଼ା ହେଲେ, ସେହି ଅଂଶର ଚିକିତ୍ସା କରିବାକୁ ହେବ। କିନ୍ତୁ ଏହି ଅଂଶ ବିଶେଷର ଚିକିତ୍ସା ଦ୍ୱାରା ସମସ୍ତ ଶରୀରର ଉନ୍ନତି ହେବ। ଉତ୍କଳର ଚିକିତ୍ସାର ଉଦ୍ଦେଶ୍ୟ ଭାରତର ଉନ୍ନତି।" (ସୂର୍ଯ୍ୟ ନାରାୟଣ ଦାସ, ଦେଶ ପ୍ରାଣ ମଧୁସୂଦନ, ପୃ.୨୯୯)

ମଧୁସୂଦନଂକ କ୍ଷୋଭ ଯେ ରାଷ୍ଟ୍ରୋନ୍ନତିର ଆଂଚଳିକ ଦିଗକୁ ଦେଶର ଜାତୀୟତାବାଦୀ, ବିଶେଷ କରି ପଡ଼ୋଶୀ ବଂଗର ନେତୃବର୍ଗ ହୃଦୟଙ୍ଗମ କରିବା

ପରିବର୍ତ୍ତେ ତାକୁ ସଂକୀର୍ଣ୍ଣତାମୂଳକ ବୋଲି ଅପବାଦ ଦେଉଥିଲେ। ଏହାର ଏକ ବ୍ୟତିକ୍ରମ ଥିଲେ ବିପ୍ଳବୀ ଅରବିଂଦ, ଯିଏ ଆଂଚ଼ଳିକ ଉତ୍‌ଥାନର ଆବଶ୍ୟକତା ଓ ତହିଁରେ ମଧୁବାବୁଂକ ପରି ନେତୃତ୍ୱର ମହତ୍ତ୍ୱ କଥା ବୁଝି ପାରିଥିଲେ। ୧୯୦୮ରେ "ବଂଦେମାତରମ" ପତ୍ରିକାରେ ଏହାକୁ ଉଲ୍ଲେଖ କରି ସେ ଲେଖିଥିଲେ :

As with backward communities, so with backward provinces. It is vitally important to nationalism that these should be awake... we welcome any signs that the awakening has begun. It is for instance a cause for gratification that Orissa is beginning to feel its separate consciousness and to attempt to grow into an organised life under a capable and highspirited leader.

(Haridas Mukherjee and Uma Mukherjee, Sri Aurobindo and the New Thought in Indian Politics, P.225, in ସୁରେଂଦ୍ର ମହାନ୍ତି, କୁଳବୃଦ୍ଧ, ଭୁବନେଶ୍ୱର, ୧୯୭୮ (ତୃତୀୟ ମୁଦ୍ରଣ ୨୦୦୩), ପୃ.୯୩)

ମଧୁସୂଦନ ଅରବିଂଦଂକ ମତକୁ ସ୍ୱାଗତ ଜଣାଇ ପତ୍ର ଲେଖିଲେ, "ବଂଗଭଂଗ ହେବାରୁ ଆପଣମାନେ, ଅର୍ଥାତ୍ ବଂଗାଳୀମାନେ, ପ୍ରତିବାଦ କରୁଛନ୍ତି। କିନ୍ତୁ ଓଡ଼ିଶା ଖଣ୍ଡ ଖଣ୍ଡ ହୋଇ ପଡ଼ିଛି, ତାକୁ ଯୋଡ଼ିବାକୁ ହେବ- ଏ ସଂବଂଧରେ ତ ଆପଣମାନେ କିଛି କହୁନାହାନ୍ତି ? ଯେଉଁ ନୀତିରେ ବଂଗଭଂଗର ପ୍ରତିବାଦ ହେଉଛି, ସେହି ନୀତିରେ ଉତ୍କଳ ଦେଶ ମିଶ୍ରଣ ପ୍ରଥମେ ହେଉ ଏବଂ ତାହାହେଲେ ସର୍ବଭାରତୀୟ ଉନ୍ନତି ଲକ୍ଷ୍ୟରେ ପ୍ରଦେଶଗୁଡ଼ିକର ସହଯୋଗ ମିଳିବ। ଗୋଟାଏ ପ୍ରଦେଶ ଉଠିବ ଆଉ ଗୋଟାଏ ଦବିଯିବ, ଏପରି ହେଲେ ଭାରତର ସଂହତି ରକ୍ଷା ହୋଇ ପାରିବ ନାହିଁ। (ସୂର୍ଯ୍ୟନାରାୟଣ ଦାସ, ଦେଶପ୍ରାଣ ମଧୁସୂଦନ, ପୃ.୨୯୮)

କେବଳ ଓଡ଼ିଆ ଜାତି କାହିଁକି, ସମାଜର ଅନ୍ୟ ଅନଗ୍ରସର ଓ ପଛୁଆ ଜାତିର ଉନ୍ନତି ପ୍ରତି ଅଧିକ ଯତ୍ନଶୀଳ ହେବାକୁ ମଧୁସୂଦନ ଯୁକ୍ତି କରୁଥିଲେ। ସେତେବେଳେ Depressed class ନାମରେ ପରିଚିତ ଏବକାର ଦଳିତ ଜାତିର

ଦୁରବସ୍ଥାକୁ ଉଲ୍ଲେଖ କରି ସେ ୧୯୧୬ରେ କହିଥିଲେ :

Evolution is very slow, and traditions and customs die hard, but there stands the man of the Depressed class. What is his position ? He is away from Hindu Society in the midst of a desert. Why he is there ? Because at some time or other he was cast away as the sweepings of society; and he does not receive the same treatment whih even sweepings in thriving cities do, because the sweepings are looked after so that they not ferment and breed germs of disease. Here these people live on the outskirts of a village; they are deprived of every opportunity of seeing the example of a good moral healthy life; they are deprived of what is a very powerful deterrent in the human nature, and that is the approval of respectable society. I believe, Sir, that the censure of society is a more powerful deterrent than the sentence of a judge.

(Proceedings of the Council of the Governor General of India, 16 March 1916, PP.379-81, in N. K. Sahu and P. K. Mishra, ed. Madhusudan Das The Legislator, P.278)

ମଧୁସୂଦନ ଏକା ମାତ୍ରାରେ ସଂବେଦନଶୀଳ ଥିଲେ ମୁସଲିମମାନଂକ ନ୍ୟାଯ୍ୟ ଦାବି ପ୍ରତି। ୧୯୨୧ରେ ବିହାର ଓ ଓଡ଼ିଶା କାଉନସିଲରେ ମୁସଲମାନ ସଦସ୍ୟଂକ ପ୍ରାର୍ଥନା ନିମନ୍ତେ ସ୍ୱତନ୍ତ୍ର ବ୍ୟବସ୍ଥା କରିବାକୁ ସରକାରଠାରେ ଯେତେବେଳେ ପ୍ରସ୍ତାବ ଆଗତ ହେଲା, ତା'ର ସମର୍ଥନରେ ସେ କହିଥିଲେ :

... I personally would provide two private tents, which would be set apart for them. They would be prayer tents for the Muhammadan members of this Council. They would be provided with such tents as officers use in the rainy season. These tents would be provided with wooden platforms so that in

the rainy weather there might not be wet ground, and every inconvenience whatever would be avoided.

(Proceedings of the Legislative Council of Bihar and Orissa, 31 March 1921, PP. 1051-52, in N. K. Sahu and P. K. Mishra, ed., Madhusudan Das : The Legislator, P.352)

ମୁସଲିମ ସଂପ୍ରଦାୟର ନ୍ୟାଯ୍ୟ ଦାବିର ପକ୍ଷ ନେଲାବେଳେ ମଧୁସୂଦନଙ୍କ ଖ୍ରୀଷ୍ଟଧର୍ମ କଦାଚିତ ବାଧକ ହୋଇନଥିଲା; ବରଂ ଧାର୍ମିକ ସମନ୍ୱୟର ପ୍ରଶଂସା କରି ତଥା ଧାର୍ମିକ ବିଦ୍ୱେଷର ନିଂଦା କରି ସେ କହିଥିଲେ, "We ;have Brahmanism, we have Hinduism, we have Jainism, we have Muhammadanism, but we have hitherto kept out one ism and I am very anxious, and all of us are very anxious, that the worst ism should be kept out, and that is schism. So long as we do not introduce schism, religion, every relgion, can be considered as most sacred by a believer of another religion."(Ibid) ସେହି ଦୃଷ୍ଟିରୁ ଦେଖିଲେ, ମହାତ୍ମା ଗାଂଧିଂକ ପରି ମଧୁବାବୁ ଥିଲେ ପୂର୍ଣ୍ଣତଃ ଧାର୍ମିକ ଓ ଧର୍ମନିରପେକ୍ଷ। ୧୮୮୭ରେ ପୁରୀ ମଂଦିରର କର୍ତ୍ତୃତ୍ୱ ଯେତେବେଳେ ବିଧର୍ମୀ ଓ ବିଦେଶୀ ଇଂରେଜ ଶାସନ ହାତକୁ ଚାଲିଯିବ ବୋଲି ମସୁଧା ହେଲା, ସେ ପୁରୀ ରାଣୀଂକ ତରଫରୁ କେଶ ଲଢ଼ିଲେ ଏବଂ ଜିଣିଲେ ମଧ୍ୟ। କେବଳ ଅଦାଲତରେ ନୁହେଁ, ସଂବାଦପତ୍ରରେ ମଧ୍ୟ ମଧୁବାବୁ ସରକାରଂକ ମଂଦିର ସଂକ୍ରାନ୍ତୀୟ ବିଚାରକୁ ଦୃଢ଼ ସମାଲୋଚନା କରିଥିଲେ ଏବଂ ସରକାରୀ ହସ୍ତକ୍ଷେପ ଯୋଜନା ବିରୁଦ୍ଧରେ ନୈଷ୍ଠିକ ଖ୍ରୀଷ୍ଟିଆନ ବୁଦ୍ଧିଜୀବୀ ବର୍ଗର ସମର୍ଥନ ଆଶା କରିଥିଲେ। ଇଂରାଜୀରେ ଜଣେ ପାଗଳ (A. Lunatic) ନାମରେ 'ଉତ୍କଳ ଦୀପିକା'ରେ ସଂପାଦକଂକୁ ପତ୍ର ସ୍ତମ୍ଭରେ ସେ ଲେଖିଥିଲେ :

... some people say the object of this suit [sovernment suit regarding Puri temple] is to improve the ceremonials; this I cannot believe for it will be unworthy of a Christian Government and apposed to the policy which Government has always

pursued in regard to religions matters. I am sure we are not going to have Hindu Chaplains in the Govenment of India's pay. Besides, the Government of India is bound by a serious pledge to the Christian public in England and in India not to revive its connection in any form with this Tmeple. This pledge may be read [every where]...

(The Letter is appended in Surendra Mohanty, Madhusudan Das, New Delhi, 1972, P.41)

ଜଣେ ସଂସ୍କାରବାଦୀ ଭାବରେ ତଥା ଜଣେ ଧର୍ମାନ୍ତରିତ ଖ୍ରୀଷ୍ଟିଆନ ଭାବରେ ମଧୁସୂଦନ ହୁଏତ ମଂଦିରରେ ମୂର୍ତ୍ତିପୂଜା ଆଦି ପରଂପରାର ସପକ୍ଷରେ ନ ଥିବେ। ମାତ୍ର ଜଗନ୍ନାଥ ମଂଦିରର କର୍ତ୍ତୃତ୍ୱ ବିଧର୍ମୀ ସରକାର ହାତକୁ ଚାଲିଯିବା କଥାରେ ଧର୍ମବିଶ୍ୱାସଠାରୁ ଅଧିକ ଧର୍ମନିରପେକ୍ଷତାର ପ୍ରଶ୍ନ ଜଡ଼ିତ ଥିଲା। ଏହା ସହିତ ଓଡ଼ିଆ ଜାତିର ଆଂଚଳିକ ସ୍ୱାଭିମାନ କଥା ବି ରହିଥିଲା। ମଂଦିର ପ୍ରସଂଗରେ ମଧୁବାବୁ ସରକାରଂକ ବିରୁଦ୍ଧରେ ଲଢ଼ି ନିଜ ଧର୍ମନିରପେକ୍ଷତାର ନିଦର୍ଶନ ଦେଇଥିଲେ ତଥା ଓଡ଼ିଶାର ସ୍ୱାଭିମାନ ଓ ଅସ୍ମିତା ରକ୍ଷା କରିଥିଲେ। ତାଂକ ଦୃଷ୍ଟିରେ, ଜଗନ୍ନାଥ ଥିଲେ ଆଂଚଳିକ ଅସ୍ମିତାର ପ୍ରତୀକ। ସେ ଯେହେତୁ ଅସ୍ମିତାର ଲଢ଼େଇ ଲଢୁଥିଲେ, ତାଂକର ବିଧର୍ମୀ ହେବା କିଂବା ସଂସ୍କାରବାଦୀ ହେବା, ତା' ଆଗରେ ବାଧକ ହୋଇ ନଥିଲା। ଶେଷରେ, ସରକାର ନିଜ ଭୁଲ ବୁଝି ପାରିଲେ ଏବଂ ପୁରୀ ମଂଦିରର କର୍ତ୍ତୃତ୍ୱ ପୂର୍ବବତ ରାଣୀଂକ ହାତରେ ରହିଲା। ନିଜ ଓକିଲାତି ଜୀବନର ଆରଂଭ କାଳରେ ଏହି ପ୍ରସିଦ୍ଧ କେଶ ଜିଣି ମଧୁସୂଦନ ଓଡ଼ିଆ ସ୍ୱାଭିମାନର ପ୍ରତୀକ ହେବା ସହିତ ଲୋକୋକ୍ତିରେ 'ମଧୁ ବାରିଷ୍ଟର'ର ଖ୍ୟାତି ମଧ୍ୟ ଅର୍ଜନ କରିଥିଲେ। "ପାଠ ପଢ଼ିବି, ଓକିଲ ହେବି, ମଧୁ ବାରିଷ୍ଟର ସଂଗେ ଲଢ଼ିବି।" ଏହି ପଦଟି ସାନ ପିଲା ମୁହଁରେ କୁହାଇଲା ବେଳେ ଲୋକେ ଆଗାମୀ ପିଢ଼ି ମଧୁବାବୁଂକ ସମାଜ କାମରେ ସହଯୋଗୀ ହେଉ ବୋଲି ଆଶା କରୁଥିଲେ।

ମଧୁସୁଦନଂକ ମହାଭାରତୀୟତା ଆଗରେ ତାଂକ ଧାର୍ମିକତା କଦାପି ବାଧକ ନ ହୋଇ ପୂର୍ଣ୍ଣତଃ ଅନୁପୂରକ ହେବାର ଏକ ବଳିଷ୍ଠ ପ୍ରମାଣ ହେଲା ୧୯୧୫ରେ

ଆହ୍ଲାବାଦରେ ଆୟୋଜିତ ଅଖିଳ ଭାରତୀୟ ଖ୍ରୀଷ୍ଟିଆନ ସମ୍ମିଳନୀରେ ସେ ଦେଇଥିବା ସଭାପତି ଅଭିଭାଷଣ, ଯାହାର ଶୀର୍ଷକ ଥିଲା "Duty of An Indian Christian." ଦେଶର ଖ୍ରୀଷ୍ଟଧର୍ମୀମାନଂକୁ ନିସ୍ୱାର୍ଥ ଦେଶ ସେବା କରିବାକୁ ପରାମର୍ଶ ଦେଇ ସେ କହିଥିଲେ, "Do not expect and credit for what you have done for the nation. Be prepared to do all you can, but do not expect any credit. Be merged in the nation, be lost in the nation. You have no independent individual life without the nation, your life must belong to the nation."

(The Lecture is appended in Debendra Kumar Dash, ed., Madhusudan Das : The man and hs Missions, Rourkela, 1998, P.212)

ଏକଥା ସତ ଯେ ଓଡ଼ିଶାର ପ୍ରାଦେଶିକ ଉନ୍ନତି ଥିଲା ମଧୁସୂଦନଂକ ପ୍ରଧାନ ପ୍ରାଥମିକତା। ପ୍ରଥମେ କଟକ ସ୍ତରରେ ଉତ୍କଳସଭା (୧୮୮୨) ଏବଂ ପରେ ବ୍ୟାପକ ଓଡ଼ିଶା ସ୍ତରରେ ଉତ୍କଳ ସମ୍ମିଳନୀ (୧୯୦୩) ଗଢ଼ି ସାମାଜିକ କାମକୁ ଗୋଷ୍ଠୀଭିତ୍ତିକ କରିବାକୁ ସେ ପ୍ରୟାସ କରିଥିଲେ। ଫଳରେ ଉତ୍କଳ ସମ୍ମିଳନୀ ଏକ ଆଂଦୋଳନର ସ୍ୱରୂପ ନେଲା। ପ୍ରତି ବର୍ଷ ବିଭିନ୍ନ ସ୍ଥାନରେ ସଭାମାନ ଆୟୋଜନ କରି ଓଡ଼ିଶାର ଶିକ୍ଷା, ସ୍ୱାସ୍ଥ୍ୟ, କୃଷି, ଶିଳ୍ପ, ବିଜ୍ଞାନ, କାରିଗରୀ ଓ ବାଣିଜ୍ୟ ଆଦି ପ୍ରତ୍ୟେକ କ୍ଷେତ୍ରରେ ଆଧୁନିକ ବିକାଶ ଆଣିବା ଲାଗି ସମ୍ମିଳନୀ ଆଂଦୋଳନ କଲା। ସେତେବେଳେ ଓଡ଼ିଆ ଭାଷା-ଭାଷୀ କ୍ଷେତ୍ରଗୁଡ଼ିକ ଭିନ୍ନ ଭିନ୍ନ ପ୍ରଦେଶର ଶାସନାଧୀନ ଥିଲା। ଗଂଜାମ ମାନ୍ଦ୍ରାସ ପ୍ରେସିଡ଼େନ୍‌ସିରେ; ସଂବଲପୁର କେଂଦ୍ର ପ୍ରଦେଶରେ; ପୁଣି, କଟକ, ପୁରୀ, ବାଲେଶ୍ୱର ବଂଗ ପ୍ରେସିଡ଼େନ୍‌ସିରେ। ଏହା ଓଡ଼ିଶାର ସ୍ୱାଭାବିକ ବିକାଶକୁ ବାଧା ଦେଉଥିଲା। ତେଣୁ, ଓଡିଆ ଭାଷା-ଭାଷୀ କ୍ଷେତ୍ରର ଏକତ୍ରୀକରଣ ସମ୍ମିଳନୀର ପ୍ରମୁଖ ଉଦ୍ଦେଶ୍ୟ ହେଲା। ୧୯୦୫ରେ ସଂବଲପୁରର ବଂଗ ପ୍ରେସିଡ଼େନ୍‌ସିସ୍ଥିତ ଓଡ଼ିଶା ଡିଭିଜନ ସହ ମିଶ୍ରଣ ପରେ ଗଂଜାମର ମିଶ୍ରଣ ପାଇଁ ଦାବି ହେଲା। ୧୯୩୬ରେ ଭାଷା ଭିତ୍ତିରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପର୍ଯ୍ୟନ୍ତ ଆଂଦୋଳନ ଚାଲିଲା।

ମୋଟ କଥା ହେଲା ଯେ ଜାତୀୟ କଂଗ୍ରେସ ପରି ଉତ୍କଳ ସମ୍ମିଳନୀ ଥିଲା

ଓଡ଼ିଶାର ସାମାଜିକ ଓ ରାଜନୈତିକ ଆଂଦୋଳନର ମହାମଂଚ। ତା'ଠାରୁ ମଧ୍ୟ ଅଧିକ ତାତ୍ପର୍ଯ୍ୟପୂର୍ଣ୍ଣ ବିଷୟ ହେଲା ଯେ ଗଠନ ପରଠାରୁ ଦୀର୍ଘ ଦେଢ଼ ଦଶଂଧି ପର୍ଯ୍ୟନ୍ତ (୧୯୧୮) ମଧୁସୂଦନ ଥିଲେ ଏହାର କର୍ଣ୍ଣଧାର। କେବେ ସେ ଏହାର ଉଦ୍ୟୋକ୍ତା ହୋଇଛନ୍ତି, ତ କେବେ ସଭାପତି, (୧୯୧୩, ୧୯୧୮)ତ କେବେ ସଂପାଦକ (୧୯୧୮), ତ ଆଉ କେବେ ଅନ୍ତରାଳରେ ରହି ସମ୍ମିଳନୀର ପରିଚାଳନା କରିଛନ୍ତି। ତାଂକରି ଦୂରଦୃଷ୍ଟି ଯୋଗୁଁ କେବଳ ବାର୍ଷିକ ସଭା କରିବା ବା କେତୋଟି ପ୍ରସ୍ତାବ ପାସ କରିବା ଯାଏ ସମ୍ମିଳନୀର ଦାୟିତ୍ୱ ସୀମିତ ନ ଥିଲା। ତା'ର ସ୍ୱଳ୍ପ ପାଣ୍ଠିରେ ସମ୍ମିଳନୀ କିଛି ମେଧାବୀ ଛାତ୍ରଂକୁ ଉଚ୍ଚଶିକ୍ଷା ପାଇଁ ବୃତ୍ତି ପ୍ରଦାନ କରିଥିଲା, ଶିଳ୍ପୋନ୍ନତି ପାଇଁ ଯୁବକ ମାନଂକୁ ଆବଶ୍ୟକ ତାଲିମ ଦେବାର ବ୍ୟବସ୍ଥା କରିଥିଲା, ଆଂଦୋଳନକୁ ସଂପ୍ରସାରିତ କରିବା ନିମନ୍ତେ ଶାଖାମାନ ଗଠନ କରିଥିଲା, ସାହିତ୍ୟ ଓ ସଂସ୍କୃତିର ଉନ୍ନତି ପାଇଁ ଅନେକ ପଦକ୍ଷେପ ନେଇଥିଲା ତଥା କୁଟୀର ଶିଳ୍ପକୁ ପ୍ରୋତ୍ସାହିତ କରିବା ପାଇଁ ସମ୍ମିଳନୀ ପ୍ରାଂଗଣରେ ପ୍ରତିବର୍ଷ ପ୍ରଦର୍ଶନୀ ଆୟୋଜନ କରୁଥିଲା। ଏ ସବୁରି ମୂଳରେ ଅନ୍ତତଃ ୧୯୧୮ ପର୍ଯ୍ୟନ୍ତ ପ୍ରମୁଖ ଭୂମିକା ରହିଥିଲା ମଧୁସୂଦନ ଦାସଂକର। ଉଦ୍ଦେଶ୍ୟ ଥିଲା ଓଡ଼ିଶା ସବୁ କ୍ଷେତ୍ରରେ ସ୍ୱାଲଲଂବୀ ହେଉ। ପ୍ରତ୍ୟେକ ଓଡ଼ିଆ ଭାଷୀଂକୁ ସମ୍ମିଳନୀରେ ପ୍ରାଣ ଢାଳି ଦେବାକୁ ଆହ୍ୱାନ କରି ସେ ଗାଇଥିଲେ :

ଏହି ସମ୍ମିଳନୀ ଜାତି ପ୍ରାଣ ସିଂଧୁ
 କୋଟି ପ୍ରାଣ ବିଂଦୁ ଧରେ
ତୋର ପ୍ରାଣ ବିଂଦୁ ମିଶାଇ ଦେ, ଭାଇ
 ଡେଇଁ ପଡ଼ି ସିଂଧୁନୀରେ(୧୯୧୫)

'ଉତ୍କଳ ସମ୍ମିଳନୀ' ବାହାରେ ମଧ୍ୟ ମଧୁବାବୁ ଓଡ଼ିଶାର ସାମଗ୍ରିକ ବିକାଶ ଲାଗି ଅନେକ କାମ କରିଛନ୍ତି। ୧୮୯୭ ଓ ୧୯୦୭ରେ ଦୁଇଥର ଇଂଲଣ୍ଡ ଯାଇ ସେଠାରେ ଓଡ଼ିଶାକୁ ନେଇ ବିଶଦ ଚର୍ଚ୍ଚା କରିଛନ୍ତି। ବିଦେଶରେ ଓଡ଼ିଶା ଜାତିକୁ ଗୌରବ ମଣ୍ଡିତ କରିଥିଲେ ବୋଲି ତାଂକୁ 'ଉତ୍କଳ ଦୀପିକା' ପକ୍ଷରୁ 'ଉତ୍କଳ ଗୌରବ' ଉପାଧି ଦିଆଯାଇଥିଲା। ୧୯୦୮ରେ କଟକଠାରେ କନ୍ୟା ବିଦ୍ୟାଳୟ ପ୍ରତିଷ୍ଠା ହୋଇଥିଲା ତାଂକରି ଉଦ୍ୟମରେ। କୁଟୀର ଶିଳ୍ପର ବିକାଶ ପାଇଁ ୧୮୮୭ରେ ସେ ଓଡ଼ିଶା ଆର୍ଟୱେର ଏଣ୍ଡ ଆର୍ଟ ସ୍କୁଲ ସ୍ଥାପନ କରିଥିଲେ। ପ୍ରାୟ

୧୫୦ ଜଣ କାରିଗର ଏଠାରେ ତାରକସୀ, ସୁନା କାମ କରୁଥିଲେ, ୧୯୦୪ରେ ସ୍ୱଦେଶୀ ଚମଡ଼ା ଉଦ୍ୟୋଗର ପ୍ରୋତ୍ସାହନ ଲାଗି ସେ ଉତ୍କଳ ଟେନେରୀ ଆରଂଭ କରିଥିଲେ। ଜଣେ ସାଂବାଦିକ ଭାବରେ ସେ 'ଦ ଓରିଆ' (୧୯୧୭)ର ସଂପାଦନା କରିଛନ୍ତି, 'ଉତ୍କଳ ଦୀପିକା'ରେ ଇଂରେଜୀ ସ୍ତମ୍ଭ ଲେଖିଛନ୍ତି ତଥା 'ଷ୍ଟାର ଅଫ୍ ଉତ୍କଳ' (୧୯୦୪; ସଂପାଦକ କ୍ଷିରୋଦଚଂଦ୍ର ରାୟଚୌଧୁରୀ) ଓଡ଼ିଆ ପତ୍ରିକାର ପୃଷ୍ଠପୋଷକତା କରିଛନ୍ତି। ତାଂକରି ଉଦ୍ୟମରେ ୧୯୦୩-୦୪ରେ ଉତ୍କଳ ବ୍ୟାୟାମ ସମିତି (Orissa Sports Association) ଆରଂଭ ହୋଇଥିଲା; ଆଧୁନିକ ରଂଗମଂଚର ପ୍ରୋତ୍ସାହନ ଲାଗି ମଧ୍ୟ ସେ ଅନେକ ସହାୟତା ଦେଇଥିଲେ। ଏଭଳି ଜଣେ ଯୁଗପୁରୁଷ ଯେ ଓଡ଼ିଶାରେ ନବଜାଗରଣର ପ୍ରମୁଖ ବିଂଧାଣୀ ଆଖ୍ୟା ପାଇବେ - ଏଥର ଦ୍ୱିମତ ନାହିଁ।

ମୋଟ କଥା ହେଲା ଯେ ୧୮୮୧ରେ ମଧୁସୂଦନ କଲିକତାରୁ ଓଡ଼ିଶା ଫେରିଲେ ଏବଂ ଓକିଲାତି ସାଂଗରେ ଜନଜୀବନରେ ସଂପୃକ୍ତ ହେଲେ। ୧୯୩୩ ଫେବୃଆରୀ ୧୩ରେ କଟକଠାରେ ଅନୁଷ୍ଠିତ ଓଡ଼ିଶା ନେତୃବର୍ଗ ସମ୍ମିଳନୀରେ ସେ ଶେଷ ମହତ୍ତ୍ୱପୂର୍ଣ୍ଣ ବକ୍ତବ୍ୟ ପ୍ରଦାନ କରିଥିଲେ। ଏହାର ବର୍ଷେ ପରେ ତାଂକର ମୃତ୍ୟୁ ହେଲା। ଦୀର୍ଘ ୫୨ ବର୍ଷର ତାଂକ ସାମାଜିକ ସଂପୃକ୍ତି ଏତେ ଅଧିକ ଯେ ତାକୁ ବାଦ ଦେଇ ସେହି କାଳଖଣ୍ଡର ଇତିହାସ ଲେଖା ଯାଇ ପାରେନା। ଏହି କାରଣରୁ ତାଂକୁ ଆଧୁନିକ ଉତ୍କଳର ଜନକ ବୋଲି କୁହାଯାଏ।

ବିଶ୍ଳେଷଣ କଲେ ଜଣାଯାଏ ଯେ ମଧୁସୂଦନଂକର ଏହି ପ୍ରାଦେଶିକତା କଦାପି ତାଂକ ରାଷ୍ଟ୍ରୀୟତାର ପରିପନ୍ଥୀ ହୋଇନାହିଁ। ୧୮୮୫ରେ ଜାତୀୟ କଂଗ୍ରେସର ସ୍ଥାପନା ପୂର୍ବରୁ କଲିକତାରେ ସୁରେଂଦ୍ରନାଥ ବାନାର୍ଜି 'ଇଣ୍ଡିଆନ ଆସୋସିଏସନ' ନାମରେ ଏକ ଅନୁଷ୍ଠାନ ଆରଂଭ କରିଥିଲେ। ଏହାର ବାର୍ଷିକ ସମ୍ମିଳନୀରେ ମଧୁସୂଦନ ଅଗ୍ରଣୀ ଭୂମିକା ନେଇଥିଲେ। ୧୮୮୬ରୁ ୧୯୧୨ ମଧ୍ୟରେ ସେ ଅନ୍ୟୁନ ୧୬ ଥର କଂଗ୍ରେସର ବାର୍ଷିକ ଅଧିବେଶନରେ ଯୋଗ ଦେଇଥିଲେ ବୋଲି ପ୍ରମାଣ ରହିଛି। ପୁଣି, ଅନେକ ଥର ଉତ୍କଳ ସଭାର ପ୍ରତିନିଧିଂକୁ କଂଗ୍ରେସ ଅଧିବେଶନରୁ ଫେରିଲା ପରେ ସ୍ୱାଗତ ଜଣାଇ ସେ ସଭା ଆୟୋଜନ କରୁଥିଲେ। ସଭାର ଉଦ୍ଦେଶ୍ୟ ଥିଲା ଜାତୀୟ କଂଗ୍ରେସକୁ ପ୍ରାଦେଶିକ

ସ୍ତରରେ ଲୋକଲୋଚନକୁ ଆଣିବା। ମଧୁସୂଦନଂକ କଂଗ୍ରେସ ସହ ସଂପୃକ୍ତିର ଅନ୍ୟ ଏକ ବଡ଼ ଉଦାହରଣ ହେବ ୧୯୧୨ରେ ବିହାରର ବାଂକିପୁରରେ ଆୟୋଜିତ କଂଗ୍ରେସ ସମ୍ମିଳନୀ। ଏଥିରେ ଛାତ୍ରମାନଂକୁ ମଧୁସୂଦନ ଉଦବୋଧନ ଦେଇଥିଲେ।

ମଧୁସୂଦନ ୧୮୯୬ରୁ ଆରଂଭ କରି ୧୯୨୬ ପର୍ଯ୍ୟନ୍ତ ନିରନ୍ତର ବ୍ୟବସ୍ଥାପକ ସଭାକୁ ନିର୍ବାଚିତ ହୋଇଥିଲେ। ୧୮୯୬ରେ ବଂଗ ବ୍ୟବସ୍ଥାପକ ସଭାକୁ, ୧୯୧୨ରେ ବିହାର ଓ ଓଡ଼ିଶା ପ୍ରାଦେଶିକ ସଭାକୁ, ୧୯୧୩ରୁ ୧୯୧୬ ପର୍ଯ୍ୟନ୍ତ ଗଭର୍ଣ୍ଣର ଜେନେରାଲଂକ କାଉନସିଲକୁ ଏବଂ ୧୯୧୬ରୁ ୧୯୨୬ ମଧ୍ୟରେ ଏକାଧିକ ଥର ବିହାର ଓ ଓଡ଼ିଶା କାଉନସିଲକୁ ସଭ୍ୟ ଭାବରେ ସେ ନିର୍ବାଚିତ ହୋଇଥିଲେ। ସେଠାରେ ସେ ଅନ୍ୟ ଜାତୀୟବାଦୀ ନେତୃବର୍ଗଂକ ସହ ମିଶି ବିଭିନ୍ନ ରାଷ୍ଟ୍ରୀୟ ସ୍ତରର ଦାବି ଉପସ୍ଥାପିତ କରିଥିଲେ। ସେ ଶିଳ୍ପ ବିକାଶ ପ୍ରଶ୍ନକୁ ନେଇ ହେଉ ବା ପ୍ରଶାସନର ଭାରତୀୟକରଣ ପ୍ରଶ୍ନ ହେଉ, ବିଦେଶରୁ ଆମଦାନି ବସ୍ତୁ ଉପରେ କରବୃଦ୍ଧି (tarrif) ହେଉ ବା ଭାରତୀୟ ଉତ୍ପାଦନ ଉପରେ ବାଣିଜ୍ୟ ଶୁଳ୍କ ହ୍ରାସ ପ୍ରସଂଗ ହେଉ, ମଧୁସୂଦନଂକ ବକ୍ତବ୍ୟକୁ ଅନୁଧ୍ୟାନ କଲେ ମନେ ହେବ ସତେ ଯେମିତି ସେ ଅନ୍ୟ ଜାତୀୟବାଦୀଂକ ସହ ଦଳବଦ୍ଧ ହୋଇ କାର୍ଯ୍ୟ କରୁଥିଲେ। ତାଂକ ବକ୍ତବ୍ୟକୁ କୌଣସି ହିସାବରେ ମହାଭାରତୀୟ ଜାତୀୟତାର ପରିପନ୍ଥୀ କିଂବା ସଂକୀର୍ଣ୍ଣ ଆଂଚଳିକତାପୂର୍ଣ୍ଣ ବୋଲି କୁହାଯାଇ ନ ପାରେ।

କାଉନସିଲରେ ଦେଶୀୟ ସଭ୍ୟମାନଂକର ବକ୍ତବ୍ୟ ପୂର୍ଣ୍ଣତଃ ଜାତୀୟତାବାଦୀ କାର୍ଯ୍ୟ ଥିଲା ବୋଲି ମଧୁସୂଦନ ମନେ କରୁଥିଲେ। ସେତେବେଳେ କାଉନସିଲରେ ବେସରକାରୀ ସଭ୍ୟର କୌଣସି ଯମତା ନ ଥିଲା। ଏପରିକି ବକ୍ତବ୍ୟ ଲାଗି ଆବଶ୍ୟକ ହେଉଥିବା ସରକାରୀ ନଥିପତ୍ର ବି ସଭ୍ୟମାନଂକୁ ସହଜରେ ମିଳି ପାରୁ ନ ଥିଲା। ସରକାର ସେମାନଂକୁ ବିରୋଧୀ ମନେକରୁଥିଲେ। ପୁଣି, ଲୋକ ସାଧାରଣ ଜନପ୍ରତିନିଧି ବୋଲି ସେମାନଂକ ପାଖରୁ ଅନେକ କିଛି ଆଶା କରୁଥିଲେ, ଯାହା ପୁରଣ ନ ହେବାରୁ ସଭ୍ୟମାନଂକଠାରେ ଜନତାର ଆସ୍ଥା ତୁଟି ଯାଉଥିଲା। ଏଭଳି ସ୍ଥିତିରେ ମଧ୍ୟ ମଧୁସୂଦନଂକର କାଉନସିଲକୁ ନେଇ ନିରାଶା ନ ଥିଲା। ସରକାର ଓ

ଜନସାଧାରଣଙ୍କ ମଧ୍ୟରେ କାଉନସିଲ ସଭ୍ୟ ଏକ ମହତ୍ତ୍ୱପୂର୍ଣ୍ଣ ସଂବାହକର ଦାୟିତ୍ୱ ନିର୍ବାହ କରୁଥିଲେ ବୋଲି ମଧୁସୂଦନ ବିଶ୍ୱାସ କରୁଥିଲେ। ଏ ସଂବଂଧରେ ୧୯୦୨ ରେ ବଂଗ କାଉନସିଲରେ ସେ କହିଥିଲେ :

I have always considered myself here as a humble interpreter of the Government and the people I represent. That is the right view of the position of a non-official member, it quadrates with the laws and rules which regulate the proceedings of this Council and hermonizes best with our experience. As an interpreter his duties are to communicate to the Government the wishes and wants of the people, and to see that the intensions of the Government are not misunderstood by the people.

(Proceedings of the Council of Lt. Governor of Bengal, 4 April 1902, in N. K. Sahu and P. K. Mishra, ed., Madhusudan Das : The Legislator, P.32)

ସମସାମୟିକ ଅନ୍ୟ ଆଦ୍ୟ-ଜାତୀୟତାବାଦୀଂକ ଭଳି ମଧୁସୂଦନଂକର ବିଶ୍ୱାସ ଯେ ଇଂରେଜ ସରକାର ସନ୍ତାନ ମନେ କରି ଭାରତର ଉନ୍ନତି ଚାହାନ୍ତି। ୧୯୨୦ରେ ଯେତେବେଳେ ଅସହଯୋଗର ଜୁଆର ଆସିଲା ଓ ସରକାରର ଉଦ୍ଦେଶ୍ୟକୁ ଜାତୀୟତାବାଦୀମାନେ ପ୍ରଶ୍ନ କଲେ, ସେତେବେଳେ ମଧ୍ୟ ମଧୁବାବୁଂକ ସରକାରଠାରେ ଆସ୍ଥା ତୁଟି ନ ଥିଲା। ୧୯୨୮ରେ ସାଇମନ କମିଶନକୁ ଦେଶର ଚାରିଆଡ଼େ ବିରୋଧ କରାଗଲା। ମାତ୍ର ଓଡ଼ିଶାର ସ୍ୱତନ୍ତ୍ର ପ୍ରଦେଶ ସ୍ୱପ୍ନ ସାକାର ହେବା ଆଶାରେ ମଧୁବାବୁ ପାଟନାରେ କମିଶନକୁ ସ୍ୱାଗତ କରାଇଥିଲେ। ସରକାରଠାରେ ଏତେ ବିଶ୍ୱାସ ରଖି ସୁଦ୍ଧା ଯେତେବେଳେ ଜାତୀୟବାଦୀ କାଉନସିଲ ସଭ୍ୟ ସରକାର ଦ୍ୱାରା ଉପେକ୍ଷିତ ହୁଅନ୍ତି, ତହିଁରେ ଦୁଃଖ ପ୍ରକାଶ କରି ମଧୁବାବୁ ନିଜ ବକ୍ତବ୍ୟରେ (୧୯୦୨) କହିଥିଲେ :

Is it really a useless waste of time to give a few minutes during the term of two years to the interpreter of the wishes and

wants of people ? Should it not be the duty of wise and sympathetic Government to know the wants and wishes of the people, although it may not be in its power to grant ready and immediate relief ? A wise pater familieas, is anxious to enforce loyal and loving obedience to his children, should be attentive to the hostile critics even when their demands are wild and far beyond his powers and means. (Ibid.)

ଏକଥା ସତ ଯେ ମଧୁସୂଦନ ଓଡ଼ିଶାର ପ୍ରାଦେଶିକ ବିକାଶକୁ ପ୍ରାଥମିକତା ଦେଇଥିଲେ। ତା' ସହିତ, ଏକଥା ମଧ୍ୟ ସତ ଯେ ମହାଭାରତୀୟତାକୁ ବି ନା ସେ ଉପେକ୍ଷା କରିଥିଲେ, ନା ଅସ୍ୱୀକାର କରିଥିଲେ। ରାଷ୍ଟ୍ରର ସ୍ୱାର୍ଥ ରକ୍ଷା ଲାଗି ସରକାରର ସହଯୋଗ ନେବା ମଧ୍ୟ ତାଂକ ଦୃଷ୍ଟିରେ ଦୋଷାବହ ନ ଥିଲା। ସରକାର ଓ ଜନସାଧାରଣଂକ ପାରସ୍ପରିକ ସହଯୋଗରେ ହିଁ ଜାତୀୟ ଉନ୍ନତି ସଂଭବ। ତେଣୁ ଜାତୀୟବାଦୀ ନେତୃବର୍ଗକୁ ଉଭୟଂକ ମଧ୍ୟରେ ବୁଝାମଣା କରିବାକୁ ହେବ ବୋଲି ସେ ଯୁକ୍ତି କରୁଥିଲେ। ମଧୁସୂଦନଂକ ଏହି ଦୃଷ୍ଟିକୋଣ ତାଂକ ବିଶ୍ୱଦୃଷ୍ଟିର ପରିପନ୍ଥୀ ନ ଥିଲା। ନିଜ ଅଂଚଳ, ନିଜ ରାଷ୍ଟ୍ରର ମଂଗଳ ଚିନ୍ତା ତାଂକର ଥିଲା। ହେଲେ ରାଷ୍ଟ୍ରବାଦର ସୀମିତ ବଂଧନୀ ମଧ୍ୟରେ ତାଂକ ବ୍ୟକ୍ତିତ୍ୱ ବାଂଧି ହୋଇ ନ ଥିଲା। ସେ ଥିଲେ ଜଣେ ବିଶ୍ୱଦ୍ରଷ୍ଟା। ବିଶ୍ୱମାନବର ହିତ ଥିଲା ତାଂକର ଧ୍ୟେୟ। ସମସ୍ତ ମଣିଷ ବିଂଶ୍ୱସ୍ରଷ୍ଟାଂକର ସନ୍ତାନ; ବିଶ୍ୱମୈତ୍ରୀ ସେମାନଂକର କାମ୍ୟ ! ସଂସାରର ବିଶାଳତାକୁ ଦେଖି ପାରିଲେ ହିଁ ବ୍ୟକ୍ତି ବିଶ୍ୱମୈତ୍ରୀ ଓ ମାନବିକତାକୁ ହୃଦୟଂଗମ କରି ପାରିବ ବୋଲି ସେ କହୁଥିଲେ। ୧୯୧୦ରେ ମଧୁସୂଦନ ପ୍ରାଚ୍ୟ ସହିତ ପାଶ୍ଚାତ୍ୟକୁ ମଧ୍ୟ ଅନୁଶୀଳନ କରିବାକୁ ନିଜର ନିକଟ ପରିଚିତ କନିକାର ଜମିଦାର ରାଜେଂଦ୍ରନାରାୟଣ ଭଂଜଂକୁ ଇଂଲଣ୍ଡ ଭ୍ରମଣରେ ଯିବାକୁ ପରାମର୍ଶ ଦେଇଥିଲେ। ଇଂଲଣ୍ଡ ଯାତ୍ରା କରୁଥିବା ଭଂଜଂକୁ ମଧୁସୂଦନ ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟର ଧ୍ୟେୟ ଉଦାର ମାନବୀୟତାକୁ ହୃଦବୋଧ କରିବାକୁ ପ୍ରେରଣା ଦେଇ ଲେଖିଥିଲେ :

The human soul comes from God - from Heaven, it comes as an image of God.It has no nationalism or nationality just as

rain water has no colour... we must work for the making of race and nation, but we must so work that the race might join in the march of humanity in which we as an individual must join whether we wish it or not, for that is the law of our nature, the will of our creator and the design of human constitutution.

(Debendra Kumar Dash, Madhusudan Das : The Man and His Missions, Rourkela, 1998, PP.259-260)

ମଧୁସୂଦନ ଦାସ ଥିଲେ ଜଣେ  ବହୁବିଧ ପ୍ରତିଭା, ବର୍ଣ୍ଣାଢ୍ୟ ଚରିତ୍ର ! ସେ ସଫଳ ଓକିଲ ଥିଲେ, ସୁବକ୍ତା ଥିଲେ, ସାଂବାଦିକ ଥିଲେ, ସଂସ୍କାର ଓ ସଂସ୍କୃତି ପ୍ରେମୀ ଥିଲେ, ଶିଳ୍ପୋଦ୍ୟୋଗୀ ଥିଲେ, ଜନ ପ୍ରତିନିଧି ଥିଲେ, ସଂଗଠକ ଥିଲେ, ତଥା ଲେଖକ ଓ କବି ଥିଲେ। ତାଂକ କବିତାର ଏକାଧିକ ପଦ ଓଡ଼ିଆ ଲୋକୋକ୍ତିର ସଂଭାଗ ହୋଇଛି। ତାଂକ ବ୍ୟକ୍ତିତ୍ୱର ଏତେ ସବୁ ଦିଗକୁ ଯଦି ମିଶାଇ ଦିଆଯାଏ, ତେବେ ଗୋଟାଏ ଶବ୍ଦରେ କହିଲେ, ସେ ଜଣେ ଦିଗଦ୍ରଷ୍ଟା ଥିଲେ। ତାଂକୁ ନା ଧର୍ମୀୟ ସାଂପ୍ରଦାୟିକତାରେ ବାଂଧି ହେବ, ନା ସଂକୀର୍ଣ୍ଣ ପ୍ରାଦେଶିକତା ମଧ୍ୟରେ ଆବଦ୍ଧ କରିହେବ। ଜଣେ ଧାର୍ମିକ ଖ୍ରୀଷ୍ଟିଆନ ହେବା ସତ୍ତ୍ୱେ ସେ ଯେମିତି ଅଣ-ଖ୍ରୀଷ୍ଟିଆନ ବିରୋଧୀ ନ ଥିଲେ ତଥା ପୂର୍ଣ୍ଣତଃ ଧର୍ମନିରପେକ୍ଷ ଥିଲେ, ସେମିତି ଓଡ଼ିଶାର ସାମଗ୍ରିକ ବିକାଶ ଲାଗି ଉଦ୍ୟମ କଲାବେଳେ, କଦାଚିତ ରାଷ୍ଟ୍ରୀୟତା ବିରୋଧୀ କିଂବା ଅଣ-ଓଡ଼ିଆ ବିରୋଧୀ ନ ଥିଲେ। ଆଂଚଳିକ ଦାବିକୁ ପ୍ରାଥମିକତା ଦେବା ପଛରେ ତାଂକ ଉଦ୍ଦେଶ୍ୟ ଥିଲା ଓଡ଼ିଶାକୁ ଅନ୍ୟ ଅଂଚଳ ଗୁଡ଼ିକର ସମକକ୍ଷ କରିବା, ପଛରେ ପଡ଼ିବାକୁ ନ ଦେବା। ବିଶ୍ୱମାନବତା ଥିଲା ତାଂକର ଯୁଗଧର୍ମ। ପ୍ରଭୁ ଯୀଶୁଂକଠାରୁ ନେଇଥିବା 'ପରାର୍ଥେ ଜୀବନ'ର ମନ୍ତ୍ରକୁ ବିକିରଣ କରିବାକୁ ସେ ନିରନ୍ତର ପ୍ରୟାସ କରୁଥିଲେ।

ମଧୁସୂଦନ ଦାସ କିଂବା ତାଂକର ସମସାୟିକ ଅନ୍ୟ ନେତୃବର୍ଗଂକର ଐତିହାସିକ ମୂଲ୍ୟାଂକନ କଲାବେଳେ ଆମକୁ ତତ୍‌କାଳୀନ ସମାଜ ଓ ସମୟକୁ ଦୃଷ୍ଟିରେ ରଖିବାକୁ ହେବ। ୧୯୨୦ ଦଶକଠାରୁ ଦେଶର ଜାତୀୟତା ସଂଗ୍ରାମରେ ଯେଉଁ ଉତ୍‌ଥାନ ଦେଖାଦେଲା, ରାଜନୀତି ଯେଉଁ ମାତ୍ରାରେ

ଗଣାଭିମୁଖୀ ହେଲା, ତାହା ମଧୁସୂଦନଂକ ବେଳେ ଦେଖା ନ ଥିଲା। ଆଧୁନିକ ରାଜନୀତିର ଭିତ୍ତି ମାତ୍ର ସେତେବେଳେ ପଡ଼ିଥିଲା। ୧୮୫୭ ଗଣସଂଗ୍ରାମର କ୍ରୂର ଦମନ ପରେ ସାମାଜିକ ନେତୃତ୍ୱ ରାଜା-ରାଜୁଡ଼ା ବର୍ଗ ହାତରେ ରହିବ ନାହିଁ, ରାଜନୀତି ଲୋକ ଭିତ୍ତିକ ହେବ, ପାଶ୍ଚାତ୍ୟର ଆଦର୍ଶରେ ରାଷ୍ଟ୍ରୀୟ ବିକାଶର ମାନଦଣ୍ଡ ତିଆରି ହେବ ବୋଲି ଯେଉଁ ଅବଧାରଣାର ଭିତ୍ତି ପଡ଼ିଲା, ତହିଁରେ ଥିଲେ ମଧୁସୂଦନଂକ ଭଳି ନେତୃବର୍ଗ। ଦ୍ୱିତୀୟତଃ, ଏକାଥରକେ ଏ ସବୁ କଥା ନିଷ୍ପତ୍ତି ହୋଇ ଯାଇନାହିଁ। ଉଦାହରଣ ସ୍ୱରୂପ, ରାଜା-ରାଜୁଡ଼ା ସାମନ୍ତ ବର୍ଗର ପ୍ରଭୁତ୍ୱ ଏକା ଥରକେ ବା ଏକା ଦିନକେ ଶେଷ ହେଲା ନାହିଁ। ଓଡ଼ିଶା ଭଳି କ୍ଷେତ୍ରରେ ଗଡ଼ଜାତ ନାମରେ ୨୬ଟି ଦେଶୀୟ ରାଜ୍ୟ ରହିଥିଲା। ତା' ସହିତ ଅସଂଖ୍ୟ ଜମିଦାରୀ ରହିଥିଲା। ଏହି ରାଜା-ଜମିଦାର ବର୍ଗର ଓଡ଼ିଶା ସମାଜରେ ଯଥେଷ୍ଟ କର୍ତ୍ତୃତ୍ୱ ରହିଥିଲା। ଅନ୍ୟ ପକ୍ଷରେ, ଆଧୁନିକ ଶିକ୍ଷା ଓ ଶିଳ୍ପର ଅଭାବ ଯୋଗୁଁ ନୂଆ ବର୍ଗ, ଯେମିତି ଆଧୁନିକ ଶିକ୍ଷିତ ବୁଦ୍ଧିଜୀବୀ, ପୁଂଜିପତି ଓ ଶ୍ରମିକ ବର୍ଗର ଆନୁପାତିକ ସଂଖ୍ୟା ଓ ବଳ ଖୁବ୍ କମ ଥିଲା। ଏହିଭଳି ପରିସ୍ଥିତିରେ ମଧୁସୂଦନଂକର ବା ତାଂକର ଅନ୍ୟ ସମସାମୟିକ ନେତୃବର୍ଗଂକର ଦେଶଗଠନ ଲାଗି ସରକାରଠାରେ ଆସ୍ଥା ରଖିବା ତଥା ରାଜା-ରାଜୁଡ଼ା ବର୍ଗ ପାଖରୁ ସହଯୋଗ ଲୋଡ଼ିବା ଏକ ସ୍ୱାଭାବିକ ପ୍ରକ୍ରିୟା ଥିଲା। ସେତେବେଳେ ରାଜନୈତିକ ଶିକ୍ଷାର ଅଭାବ ଯୋଗୁଁ ଗଣ ଆଂଦୋଳନର ବିଶେଷ ସଂଭାବନା ନ ଥିଲା। ତେଣୁ, ମଧୁସୂଦନ ଓ ତାଂକ ସହଯୋଗୀମାନେ ସରକାରଠାରେ ହାରି ଗୁହାରି କରି ସରକାରୀ ସହାୟତାରେ ଦେଶଗଠନ କାମ କରିବାକୁ ଆଶା ରଖିଥିଲେ। ଏହା ସାଂଗକୁ ଲୋକଂକୁ ରାଜନୈତିକ ଶିକ୍ଷା ଦେବାକୁ ମଧ୍ୟ ସେ କାର୍ଯ୍ୟକ୍ରମ ତିଆରି ଥିଲେ। ସେହି ଏକାନ୍ୟାୟରେ ରାଜା-ରାଜୁଡ଼ା ବର୍ଗର ହୃଦୟ ପରିବର୍ତ୍ତନ କରି ସେମାନଂକୁ ସାମାଜିକ ସମସ୍ୟା ପ୍ରତି ସଂବେଦନଶୀଳ କରିବାକୁ ମଧ୍ୟ ପ୍ରୟାସ କରୁଥିଲେ। ଏହି ଉଦ୍ଦେଶ୍ୟରେ ମଧୁସୂଦନ ୧୯୧୦ରେ କନିକା ଜମିଦାର ତଥା ଓଡ଼ିଶା ଆଂଦୋଳନର ଜଣେ କର୍ତ୍ତା ରାଜେଂଦ୍ର ନାରାୟଣ ଭଂଜଂକୁ, ଯିଏ ସାମାଜିକ ଜୀବନରେ ପ୍ରଜା ପୀଡ଼କ ବୋଲି ପରେ ଅପଖ୍ୟାତି ପାଇଥିଲେ, ଇଂଲଣ୍ଡ ଭ୍ରମଣ କରିବାକୁ ଉତ୍ସାହିତ କରିଥିଲେ। ସମୁଦ୍ର ଯାତ୍ରାବେଳେ ସଂକୀର୍ଣ୍ଣତାରୁ ଉଠି ମହାସାଗରର ବିଶାଳତାକୁ ହୃଦୟଙ୍ଗମ କରିବାକୁ ସେ ଭଂଜଂକୁ ସ୍ମରଣ କରାଇ ଦେଉଥିଲେ।

୧୯୩୪ ମସିହା ଫେବୃଆରୀ ୪ ତାରିଖ ଦିନ ଦୀର୍ଘ ୮୬ ବର୍ଷର ପରିପକ୍ୱ ବୟସରେ ମଧୁସୂଦନଙ୍କର କଟକଠାରେ ଦେହାନ୍ତ ହେଲା। ମଧୁବାବୁ ଓକିଲାତିରୁ ରୋଜଗାର କରିଥିଲେ ଅନେକ; କଟକ, କଲିକତା ଓ ଜନ୍ମଭୂମି ସତ୍ୟଭାମାପୁରରେ ଘର କରିଥିଲେ; କଟକଠାରେ ଖୁବ୍ ବିଷୟ ସଂପତ୍ତି ବି କରିଥିଲେ। ଆୟର ଅନେକ ଅଂଶ ସେ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ଦେଶ କାମରେ ମଧ୍ୟ ବ୍ୟୟ କରିଥିଲେ। ୧୯୨୬ରେ ଋଣ ପରିଶୋଧ କରି ନ ପାରିବାରୁ ତାଂକୁ ଦେବାଳିଆ ଘୋଷଣା କରାଗଲା। ଘର ବାଡ଼ି ନିଲାମ ହେଲା। ତାଂକ ଦ୍ୱାରା ପ୍ରତିଷ୍ଠିତ 'ଉତ୍କଳ ଟେନେରୀ' ମଧ୍ୟ ନିଲାମ ହେଲା। ଓଡ଼ିଆ ଭାଷା-ଭାଷୀ କ୍ଷେତ୍ରର ଏକତ୍ରୀକରଣ ପାଇଁ ସେ ଲଢ଼ିଥିଲେ। ଏହି ଉଦ୍ଦେଶ୍ୟ ପୂରଣ ଲାଗି ସାରା ଭାରତର ଜାତୀୟତାବାଦୀଂକ ଇଚ୍ଛା ବିରୁଦ୍ଧରେ ସେ ୧୯୨୮ ସାଇମନ କମିଶନକୁ ସ୍ୱାଗତ କରିଥିଲେ। ତାଂକ ମୃତ୍ୟୁର ଦୁଇ ବର୍ଷ ପରେ ଭାଷା ଭିତ୍ତିରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେଲା। ସରକାରଂକ ସହଯୋଗରେ ଦେଶ ଗଠନ କାମ ସଂଭବ ବୋଲି ଯୁକ୍ତି କରି ସେ ଗାଂଧି ନେତୃତ୍ୱରେ ଆରଂଭ ହୋଇଥିବା ଅସହଯୋଗ ଆଂଦୋଳନକୁ ୧୯୨୦-୨୨ରେ ବିରୋଧ କରିଥିଲେ ଏବଂ ବିହାର-ଓଡ଼ିଶା ପ୍ରାଦେଶିକ ସରକାରରେ ମନ୍ତ୍ରୀ ପଦ ଗ୍ରହଣ କରିଥିଲେ। ଏଥିରୁ ସ୍ପଷ୍ଟ ହୁଏ ଯେ ଜାତୀୟ ରାଜନୀତିରେ ଯେଉଁ ପଟ୍ଟ ପରିବର୍ତ୍ତନ ହୋଇଥିଲା, ତହିଁରେ ସେ ସହଭାଗୀ ହୋଇ ପାରି ନ ଥିଲେ। ଫଳରେ ତାଂକ ମାନସ ସନ୍ତାନ 'ଉତ୍କଳ ସମ୍ମିଳନୀ' ମଧ୍ୟ ତାଂକ ନେତୃତ୍ୱକୁ ଅସ୍ୱୀକାର କଲା ଓ ମଧୁବାବୁଂକ ଇଚ୍ଛା ବିରୁଦ୍ଧରେ ଯାଇ କଂଗ୍ରେସରେ ସମିଶ୍ରିତ ହେଲା।

ଅସହଯୋଗ ଆଂଦୋଳନ ସମୟରେ ସେ ମନ୍ତ୍ରୀ ପଦ ଗ୍ରହଣ କରିଥିଲେ ବୋଲି, ତାଂକୁ ଯୁବ ଜାତୀୟତାବାଦୀଂକ ତୀବ୍ର ବିରୋଧ ସହ୍ୟ କରିବାକୁ ପଡ଼ିଥିଲା। ୧୯୨୩ରେ ସେ ମନ୍ତ୍ରୀ ପଦରୁ ଇସ୍ତଫା ଦେଇ ସୁସ୍ପଷ୍ଟ କଲେ ଯେ ଉଚ୍ଚ ବେତନ ଲାଭ ତାଂକର କେବେ ଉଦ୍ଦେଶ୍ୟ ନ ଥିଲା। ୧୯୨୪ରେ ସେ ଜାତୀୟ କଂଗ୍ରେସର ପ୍ରାଥମିକ ସଭ୍ୟ ପଦ ଗ୍ରହଣ କରି ମହାତ୍ମା ଗାଂଧି ଓ ଗୋପବଂଧୁ ଦାସ ଆଦି ନେତୃବର୍ଗଂକ ସହାୟତାରେ ମୃତପ୍ରାୟ 'ଉତ୍କଳ ଟେନେରୀ' ସଂସ୍ଥାକୁ ଜୀବନ୍ୟାସ ଦେବାକୁ ଆଶା ବାଂଧି ଥିଲେ। ୧୯୨୫ରେ ମହାତ୍ମା ଗାଂଧି କଟକ ଆସି ମଧୁବାବୁଂକୁ ସାକ୍ଷାତ ମଧ୍ୟ କରିଥିଲେ। ମଧୁସୂଦନ ମଧ୍ୟ ମହାତ୍ମା ଗାଂଧିଂକ

ସହ 'ଉତ୍କଳ ଟେନେରୀ' ସଂପର୍କରେ ଆଲୋଚନା କରିବା ଲାଗି ଅହମଦାବାଦ ଯାତ୍ରା କରିଥିଲେ। ଏଥିରୁ ଗୋଟାଏ କଥା ସ୍ପଷ୍ଟ ହୁଏ ଯେ ଜୀବନର ଶେଷ ଯାଏଁ ମଧୁସୂଦନ ନା ନିରାଶ ହୋଇଥିଲେ, ନା ଦେଶ ଗଠନ କାମକୁ ଗୌଣ ମନେ କରିଥିଲେ।

ଉଚ୍ଚଶିକ୍ଷା ପାଇଁ କଲିକତା ଗଲେ ଓ ଧର୍ମାନ୍ତର କଲେ ବୋଲି ପରିବାର ତାଂକୁ ତ୍ୟାଗ କରିଥିଲା। ବିବାହର ମାତ୍ର ପାଂଚ ବର୍ଷ ପରେ ୧୮୬୮ରେ ସେ ପତ୍ନୀଂକୁ ହରାଇଥିଲେ। ନିଃସନ୍ତାନ ଥିଲେ। ପାରିବାରିକ ସୁଖ ତାଂକୁ ମିଳିନଥିଲା। ଏତଦ୍‌ବ୍ୟତୀତ ସାରା ଜୀବନ abdominal ulcer ରୋଗଗ୍ରସ୍ତ ଥିଲେ। କୋଷ୍ଠକାଠିନ୍ୟ ତାଙ୍କର ଅନିଚ୍ଛାକୃତ ସହଚର ହୋଇ ରହିଥିଲା। ବୋଧହୁଏ ଏହି ସବୁ ଶାରୀରିକ ଓ ପାରିବାରିକ କାରଣରୁ ଚିଡ଼ିଚିଡ଼ା ସ୍ୱଭାବର ହୋଇ ଯାଇଥିଲେ। ଓଡ଼ିଶା ରାଜନୀତିରେ ତାଂକୁ ମାର୍ଗ ଦର୍ଶନ କରିବା ପାଇଁ କେହି ନ ଥିଲେ। ଅନ୍ୟ ପକ୍ଷରେ, ଓଡ଼ିଶା ବାହାରେ ତାଂକ ଦୃଷ୍ଟିକୋଣକୁ ରାଷ୍ଟ୍ରୀୟ ନେତାର ମର୍ଯ୍ୟାଦା ପାଉଥିବା ଅନେକ ବୁଦ୍ଧିଜୀବୀ ବୁଝୁ ନ ଥିଲେ ବୋଲି ସେ ଏକ ରକମର ଏକ ଜିଦିଆ ଭଳି ବ୍ୟବହାର କରୁଥିଲେ। ଏତେ ସବୁ ପ୍ରତିକୂଳ ପରିସ୍ଥିତିରେ ମଧ୍ୟ ଜୀବନ ଓ ଜଗତ ପ୍ରତି ତାଂକର ଦୃଢ଼ ଅଂଗୀକାର-ବଦ୍ଧତା କେବେ ଊଣା ହୋଇ ନ ଥିଲା। ଆଜି ମଧୁସୂଦନଂକ ମୃତ୍ୟୁର ପ୍ରାୟ ୭୫ ବର୍ଷ ପରେ ସୁଦ୍ଧା ଏହା ତାଂକ ଐତିହାସିକ ମହତ୍ତ୍ୱକୁ ଦର୍ଶାଏ। ତାଂକ ସାମାଜିକ ଓ ରାଜନୈତିକ ଭୂମିକାକୁ ଏଭଳି ଏକ ସାମଗ୍ରିକ ଦୃଷ୍ଟିକୋଣ ରଖି ପରଖିଲେ ପରିଚର୍ଚ୍ଚା ଯୁକ୍ତିନିଷ୍ଠ ହେବ- ଏଥିରେ ସଂଦେହ ନାହିଁ।



(୨୦୧୧)

# ଗଂଗାଧରଂକ ରଚନା ସଂଭାରଃ ଏକ ଦୃଷ୍ଟି

ଗଂଗାଧର ମେହେର (୧୮୬୨-୧୯୨୪) ଜଣେ କବି ରୂପରେ ଆଧୁନିକ ଓଡ଼ିଆ ସାହିତ୍ୟର ଏକ ଅତି ପରିଚିତ ନାଁ। ମୋଟ ୬୨ ବର୍ଷ ତାଂକ ଜୀବନ କାଳ; ତହିଁରୁ ଅନ୍ୟୁନ୍ୟ ୪୦ ବର୍ଷ (୧୮୮୨-୧୯୨୨) କାଳ ସେ ସାହିତ୍ୟ ରଚନା କରିଛନ୍ତି। ଉଭୟ ଗୁଣାତ୍ମକ ଓ ପରିମାଣାତ୍ମକ ଦୃଷ୍ଟିରୁ ତାଂକ ସାହିତ୍ୟକୃତି ଖୁବ୍ ମହତ୍ତ୍ୱପୂର୍ଣ୍ଣ ବୋଲି ତାଂକ ମୃତ୍ୟୁର ପ୍ରାୟ ୯୦ ବର୍ଷ ପରେ ବି ସେ ବିସ୍ମୃତ ହୋଇ ନାହାନ୍ତି। ବରଂ ତାଂକ ଜନ୍ମର ୧୫୦ ବର୍ଷ ପୂର୍ତ୍ତି ଉପଲକ୍ଷେ ଓଡ଼ିଶା ଓ ଓଡ଼ିଶା ବାହାରେ ସଭା ସମିତି ହେଉଛି। ଉଭୟ ସରକାରୀ ଓ ଲୌକିକ ସ୍ତରରେ ତଥା ପୂର୍ବ ଓଡ଼ିଶା ଓ ପଶ୍ଚିମ ଓଡ଼ିଶାରେ ଯେଉଁ ଅଳ୍ପ କେତେ କଣ କବି ଲେଖକ ମାନ୍ୟତା ପାଆନ୍ତି, ତନ୍ମଧ୍ୟରେ କବି ଗଂଗାଧାର ହେବେ ଅନ୍ୟତମ। ଗଂଗାଧରଂକ ପ୍ରସିଦ୍ଧ କାବ୍ୟ 'ତପସ୍ୱିନୀ' ନାଁରେ ଟ୍ରେନଟିଏ ଚାଲେ; ଗଂଗାଧରଂକ ନାଁରେ ଯୁବକ ସଂଘ, କ୍ଲବ ଓ ରାସ୍ତାଘାଟ ତଥା ଅନ୍ୟାନ୍ୟ ଅନେକ ଅନୁଷ୍ଠାନ। ଏହା ତାଂକ ଲୋକ ସ୍ୱୀକୃତିକୁ ଦର୍ଶାଏ। ରବୀଂଦ୍ରନାଥ ଟେଗୋରଂକ କାବ୍ୟ 'ଗୀତାଂଜଳି'କୁ ବାଦ ଦେଲେ, ବୋଧହୁଏ 'ତପସ୍ୱିନୀ' ହେବ ଏକମାତ୍ର ସାହିତ୍ୟ କୃତି, ଯାହାରି ନାଁରେ ଦେଶରେ ଟ୍ରେନଟିଏ ଚାଲେ। ଏମିତିରେ ଦେଖିଲେ ଅନେକ ଟ୍ରେନ ମଧ୍ୟରୁ ଗୋଟାଏ ତାହା। ମାତ୍ର ଆଉ ଏକ ଦୃଷ୍ଟିରୁ ଦେଖିଲେ ତାହା ପୂର୍ବ ଓଡ଼ିଶା ଓ ପଶ୍ଚିମ ଓଡ଼ିଶା ମଧ୍ୟରେ ସଂପର୍କର ସେତୁ ଭଳି କାମ କରେ ଏବଂ ଓଡ଼ିଶା ବାହାରକୁ ଦେଖିବା ପାଇଁ ଗବାକ୍ଷ ସଦୃଶ ହୁଏ। ପ୍ରାୟ ଶହେ ବର୍ଷ ତଳେ ଯେତେବେଳେ ଓଡ଼ିଶାର ଉପାନ୍ତରେ ରହି 'ଗଂଗାଧର ତପସ୍ୱିନୀ' ଲେଖୁଥିଲେ, ବୋଧହୁଏ ସାହିତ୍ୟ ମଣିଷ-ମଣିଷ ମଧ୍ୟରେ ଏମିତି ଅର୍ନ୍ତସଂବଂଧର ଏକ ଠୋସ ମାଧ୍ୟମ ହେଉ ବୋଲି ସେ କଳ୍ପନା କରିଥିଲେ, କାବ୍ୟ ନାଁରେ ଟ୍ରେନଟିକୁ ନାମିତ କରି ସରକାର କବିଂକ କଳ୍ପନାକୁ ସାକାର କରିବାକୁ ତଥା ଓଡ଼ିଶା ଭିତରେ ବଢୁଥିବା ତାରତମ୍ୟକୁ ଊଣା କରିବାକୁ ପ୍ରୟାସ କରୁଛନ୍ତି ବୋଲି ବୁଝିବାକୁ ହେବ।

ଯେଉଁ ସମୟରେ ଗଂଗାଧର ସାହିତ୍ୟ ରଚନା ଆରଂଭ କଲେ, ସେତେବେଳେ କବିଂକର ଜନ୍ମ ସ୍ଥାନ ବରପାଲି ସମେତ ସମଗ୍ର ପଶ୍ଚିମ ଓଡ଼ିଶା କ୍ଷେତ୍ର ଥିଲା କେଂଦ୍ର ପ୍ରଦେଶର ଅଂଶ। ଅର୍ଥାତ୍ ସେଠାକାର ପ୍ରମୁଖ ଭାଷା ହିଂଦି। ଓଡ଼ିଆର ଉପସ୍ଥାନ ସରକାରୀ ସ୍ତରରେ ଅସୁବିଧା ସୃଷ୍ଟି କରୁଥିଲା ବୋଲି

୧୮୯୫ରେ ପଶ୍ଚିମ ଓଡ଼ିଶା କ୍ଷେତ୍ରରେ କେଂଦ୍ର ପ୍ରଦେଶର ସରକାର ହିଂଦିର ପ୍ରଚଳନ ପାଇଁ ମସୁଧା କଲେ। ଓଡ଼ିଆ ଭାଷା ଭାଷୀ ଲୋକଂକ ପାଇଁ ଏହା ଥିଲା ଏକ ସଂକଟର କଥା; ଯଦି ପଶ୍ଚିମ ଓଡ଼ିଶାରେ ଓଡ଼ିଆ ସ୍ଥାନରେ ହିଂଦିର ପ୍ରଚଳନ ହୁଏ, ପ୍ରାକୃତିକ ଓଡ଼ିଶାର ମୋଟ ପରିଧି ଏକ ତୃତୀୟାଂଶ ପ୍ରାୟ ସଂକୁଚିତ ହେବ। ଦ୍ୱିତୀୟରେ ପଶ୍ଚିମ ଓଡ଼ିଶା କ୍ଷେତ୍ରର ଓଡ଼ିଆ ଭାଷାଭାଷୀ ଲୋକ ନିଜର ଭାଷା ଅସ୍ମିତା ହରାଇବେ ! ଉନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଯେତେବେଳେ ମଧ୍ୟଯୁଗୀୟ ରକ୍ଷଣଶୀଳତାରୁ ବିମୁକ୍ତ ହୋଇ ଓଡ଼ିଆ ଭାଷା-ସାହିତ୍ୟ ନବଜାଗରଣର ପ୍ରଭାବରେ ଆଧୁନିକତା ଆଡ଼କୁ ଅଗ୍ରସର ହେବାକୁ ଅଣ୍ଟା ଭିଡୁଥିଲା, ନୂଆଁ କରି ଗଦ୍ୟ ସାହିତ୍ୟ ରଚନାର ଶୁଭାରଂଭ କରିଥିଲା, ସାମାଜିକ ବିଷୟ ଓ ମୂଲ୍ୟବୋଧକୁ ନିଜର ପ୍ରମୁଖ ଆଧାର କରିଥିଲା, ସେତେବେଳେ ଓଡ଼ିଆ ଯେମିତି ଅପମୃତ୍ୟୁର ସତର୍କ ଘଣ୍ଟି ଶୁଣିବାକୁ ପାଇଥିଲା। ଏହିଭଳି ଏକ ସଙ୍କଟ ସଂଧି ମୁହୂର୍ତ୍ତରେ ଗଂଗାଧର ଆଉ କେତେକ ବୁଦ୍ଧିଜୀବୀଂକ ସଂଗେ "ଉତ୍କଳ-ଭାରତୀଂକ ନିବେଦନ" ଓ "ଭାରତୀ ରୋଦନ" କଥା କହିଥିଲେ।

ଗଂଗାଧରଂକ ଐତିହାସିକ ବୈଶିଷ୍ଟ୍ୟ ହେଲା ଯେ, ତାଂକର ଭାଷା-ସାହିତ୍ୟର ସହଯୋଗୀମାନେ, ବିଶେଷ କରି ପୂର୍ବ ଓଡ଼ିଶାରେ ସ୍ଥିତ ସହଯୋଗୀମାନେ, ଯେଉଁ ସୁରକ୍ଷିତ ବଳୟ ଭିତରେ ରହି ଭାଷା-ସାହିତ୍ୟର ଅସ୍ମିତା ପାଇଁ ଲଢୁଥିଲେ, ସେହି ବଳୟ ଗଂଗାଧରଂକୁ କେବେ ମିଳି ନ ଥିଲା। ଏକ ଅନୁପୂରକତାର ସୁରକ୍ଷିତ ବାତାବରଣରେ ଆଂଦୋଳନ କରିବା, ସାହିତ୍ୟ ରଚନା କରିବା, କିଂବା ବୌଦ୍ଧିକ ପ୍ରତିରୋଧ କରିବା ଯେତେ ସୁବିଧା ଜନକ, ଏକ ନିରୋଳା ବାତାବରଣରେ ସ୍ରୋତର ପ୍ରତିକୂଳରେ ଆଂଦୋଳନ କରିବା ସେତେ କାଠିକର। ଗଂଗାଧର ସେହି କାଠିକର ପରିବେଶରେ ଉତ୍କଳ ଭାରତୀଂକ ନିବେଦନକୁ ଅଭିବ୍ୟକ୍ତ କରୁଥିଲେ। ସେହି ଦୃଷ୍ଟିରୁ ଦେଖିଲେ ଉନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ଓ ବିଂଶ ଶତାବ୍ଦୀର ଦୁଇ ଆରଂଭ ଦଶଂଧିରେ ଯେଉଁ ଓଡ଼ିଆ ଭାଷା-ସଂସ୍କୃତି ଭିତ୍ତିକ ଆଂଦୋଳନ ଚାଲିଲା, ତା'ର ଏକ ସୀମାନ୍ତ ପ୍ରହରୀ ଥିଲେ ଗଂଗାଧର। ତାଂକ ପାଇଁ ଓଡ଼ିଆ ସାହିତ୍ୟର ସେତେବେଳର କେଂଦ୍ର କଟକ-ବାଲେଶ୍ୱର ତ ଖୁବ୍ ଦୂର, ଏମିତିକି "ସଂବଲପୁର ହିତୈଷିଣୀ" ପ୍ରକାଶ ପାଉଥିବା ବାମଣ୍ଡା (ଦେବଗଡ଼) ବି ପାଖ, ହାତ ପାହାନ୍ତା ନ ଥିଲା। ଦୃଢ଼ ଇଚ୍ଛାଶକ୍ତି ଓ ଅଂଗୀକାରବଦ୍ଧତା ବିନା ଏମିତି ଜଣେ ସୀମାନ୍ତ ପ୍ରହରୀ ଯେ ବାଟବଣା

ହୋଇପାରେ- ଏ ଆଶଂକା ଅମୂଳକ ନୁହେଁ। ଏହି ପରିପ୍ରେକ୍ଷୀରେ ବିଚାର କଲେ, ଓଡ଼ିଆ ଅସ୍ମିତାର ଆଂଦୋଳନକୁ ଗଂଗାଧରଂକ ଦାନ ଅନ୍ୟମାନଂକ ତୁଳନାରେ ଯଥେଷ୍ଟ ବେଶି ବୋଲି ପ୍ରତୀତ ହେବ- ଏହା ସ୍ୱାଭାବିକ କଥା।

ଗଂଗାଧରଂକ ଅନ୍ୟ ଏକ ମହତ୍ତ୍ୱ ହେଲା ଯେ, ସେ ଥିଲେ ପଶ୍ଚିମ ଓଡ଼ିଶାର ଜଣେ ମାଟିର ମଣିଷ। ତାଂକ ଭଳି ମାଟିର ମଣିଷ ନ ଥିଲେ, ପଶ୍ଚିମ ଓଡ଼ିଶାରେ ଓଡ଼ିଆ ଭାଷା ଅସ୍ମିତାର ଆଂଦୋଳନ ଉଧେଇ ପାରି ନ ଥାନ୍ତା ! ପଶ୍ଚିମ ଓଡ଼ିଶା କ୍ଷେତ୍ରରେ ହିଂଦି ସ୍ଥାନରେ ଓଡ଼ିଆର ପୁର୍ନସ୍ଥାପନ ବେଳେ ଅଥବା ପଶ୍ଚିମ ଓଡ଼ିଶା କ୍ଷେତ୍ରକୁ କେଂଦ୍ର ପ୍ରଦେଶରୁ ଆଣି ଓଡ଼ିଶା ଡିଭଜନ ସହ ମିଶ୍ରଣ ବେଳେ ଯଦି ଗଂଗାଧରଂକ ପରି ଜଣେ ସ୍ଥାନୀୟ, ମାଟିର ମଣିଷ ସାହିତ୍ୟ ରଥୀ ଭୂମିକା ନିର୍ବାହ କରି ନ ଥାନ୍ତେ, ଓଡ଼ିଆରେ ଲିଖିତ ସାହିତ୍ୟକୃତି ନ ଥାନ୍ତା, କାର୍ଯ୍ୟଟି ସହଜ ହୋଇ ନ ଥାନ୍ତା। ଓଡ଼ିଆ ଆଂଦୋଳନକୁ ବହିଁଆଂଦୋଳନ କହି ହୁଏତ ସରକାର ଓ ଆଉମାନେ ଉପେକ୍ଷା କରି ଦେଇଥାନ୍ତେ। ଅନ୍ୟ ବିଛିନ୍ନାଂଚଳରେ ଯଦି ଗଂଗାଧରଙ୍କ ଭଳି ସାହିତ୍ୟ ରଥି ଥାଆନ୍ତେ, ସେହି ଅଂଚଳଗୁଡ଼ିକର ଓଡ଼ିଶାରେ ମିଶ୍ରଣ ଜଟିଳ ହୋଇଥାନ୍ତା ? ଏହି ଦୃଷ୍ଟିରୁ ମଧ୍ୟ ଗଂଗାଧରଂକ ସାହିତ୍ୟ ରଚନାକୁ ଏକ ଐତିହାସିକ ପଦକ୍ଷେପ ବୋଲି କହିବା ଅତିଶୟୋକ୍ତି ହେବ ନାହିଁ।

ଗଂଗାଧରଂକ ରଚନାକାଳ (୧୮୮୨-୧୯୨୨)କୁ ଯଦି ଦେଖାଯାଏ, ତେବେ ଏହା ହେବ ଇତିହାସ ଦୃଷ୍ଟିରୁ ଏକ ଅତି ମହତ୍ତ୍ୱପୂର୍ଣ୍ଣ କାଳାଂଶ. ୧୮୫୭ର ଗଣ ସଂଗ୍ରାମର ଆତଂକକୁ ଧୂଳିସାତ କରିବା ସକାଶେ ଏହି ସମୟରେ ଇଂରେଜ ଶାସନ ଭାରତରେ ଇଂରେଜ ବିରୋଧିତାକୁ କ୍ରୁର ହସ୍ତରେ ଦମନ କରିବାକୁ ପ୍ରୟାସ କରିଛି, ଯାହାକୁ ଉପନିବେଶବାଦର ଶକ୍ତିପ୍ରଦର୍ଶନ ରୂପେ ଦେଖିହେବ। ଏହି ସମୟରେ ଦ୍ୱିତୀୟ ଶିଳ୍ପ ବିପ୍ଳବ ସଂଘଟିତ ହୋଇଛି, ଯାହା ଫଳରେ ଇଂଲଣ୍ଡର ପ୍ରତିଦ୍ୱଂଦୀ ସଂଖ୍ୟା ବୃଦ୍ଧି ପାଇଛି। ଏହା ଇଂରେଜ ଶକ୍ତିକୁ ଭାରତ ଉପରେ ଅଧିକ କର୍ତ୍ତୃତ୍ୱ ସାବ୍ୟସ୍ତ କରିବାକୁ ଉତ୍‌ପ୍ରେରିତ କରିଛି। ଏହି ସମୟରେ ପୁଣି, ଉପନିବେଶବାଦୀ ହସ୍ତକ୍ଷେପର ପ୍ରତିକ୍ରିୟା ସ୍ୱରୂପ ସମାଜ ସଂସ୍କାର ଆଂଦୋଳନ, ନରମପନ୍ଥୀମାନଂକର ଜାତୀୟତାବାଦୀ ଆଂଦୋଳନ, ୧୯୧୫ରେ ମହାତ୍ମା ଗାଂଧିଂକର ଭାରତୀୟ ରାଜନୀତିରେ ପ୍ରବେଶ, ୧୯୧୯ରେ ଜାଲିଆନୱାଲାବାଗ ହତ୍ୟାକାଣ୍ଡ ଓ ୧୯୨୦-୨୨ରେ ଅସହଯୋଗ ଆଂଦୋଳନ ଦେଖିବାକୁ ମିଳିଛି। ଗଂଗାଧର ରାଜନୈତିକ ନେତା

ନ ଥିଲେ; ପାଶ୍ଚାତ୍ୟ ଶିକ୍ଷିତ ନ ଥିଲେ; ନିମ୍ନ ମଧ୍ୟ ବର୍ଗର ଥିଲେ ବୋଲି ଖର୍ଚ୍ଚ କରି ଓଡ଼ିଶା ବାହାରକୁ ବି ଯାଇ ନ ଥିଲେ। ୧୯୦୪ରେ କଟକରେ ଅନୁଷ୍ଠିତ ହୋଇଥିବା ଉତ୍କଳ ସମ୍ମିଳନୀକୁ ଥରେ ଯୋଗ ଦେବାକୁ ଆସିଥିଲେ ଯେ, ତାଂକର ଅତ୍ୟନ୍ତ ସାଧାସିଧା ପରିଧାନ ଦେଖି ସ୍ୱେଚ୍ଛାସେବକମାନେ ପ୍ରଥମେ ତାଂକୁ ସମ୍ମିଳନୀ କକ୍ଷକୁ ଛାଡ଼ୁ ନ ଥିଲେ। ହେଲେ ଏଭଳି ଜଣେ ବ୍ୟକ୍ତିତ୍ୱ ହେବା ସତ୍ତ୍ୱେ, ତାଂକ ରଚନାରେ ସମକାଳୀନ ଜାତୀୟତାବାଦୀ ରାଜନୀତିର ପୂର୍ଣ୍ଣ ପ୍ରତିଫଳନ ଦେଖିବାକୁ ମିଳେ। ଏହା ତାଂକ ରଚନାକୁ ଏବଂ ତାଂକୁ ଏକ ବିଶେଷ ଐତିହାସିକ ମର୍ଯ୍ୟାଦା ଦିଏ ବୋଲି କହିବା ଅସମୀଚିନ ହେବ ନାହିଁ।

ଊନବିଂଶ ଶତାବ୍ଦୀର ଶେଷ ଭାଗରେ ନରମପନ୍ଥୀଂକ ବିନମ୍ରତା ଥିଲା ଜାତୀୟତାବାଦର ପ୍ରମୁଖ ସ୍ୱର। ଇଂରେଜର ପ୍ରବଳ ଶକ୍ତି ତୁଳନାରେ ନରମପନ୍ଥୀଂକ ବଳ ନାହିଁ ବରାବର। ପ୍ରବଳ ପ୍ରତାପୀ ଇଂରେଜମାନଂକୁ ଧମକଚମକ ବା କଟୂକଥା କହିଲେ ଦେଶକାମ ସାଧିତ ହେବ ନାହିଁ; ପୁଣି ଇଂରେଜର ରୋଷର ଶିକାର ହେଲେ ପ୍ରାରଂଭିକ ସ୍ତରରେ ଥିବା ଜାତୀୟତା ଆଂଦୋଳନ ଅବଦମିତ ହେବ ! ତା' ଛଡ଼ା ଯେଉଁ ଶିଳ୍ପ ପ୍ରଗତି ଇଂରେଜମାନେ ନିଜ ଦେଶରେ ଆଣିଛନ୍ତି, ତାହା ଭାରତରେ ବି ଆଣିବେ ତଥା ଭାରତକୁ ନୂଆଁ କରି ଗଢ଼ିବେ ବୋଲି ବିଶ୍ୱାସ ଥିଲା। ଏହି ସବୁ କାରଣରୁ ନରମପନ୍ଥୀ ରାଜନୀତିରେ ସରକାର, କର୍ତ୍ତୃପକ୍ଷ, ଉଚ୍ଚଜନ ପ୍ରତି ବିନମ୍ରତାକୁ ପ୍ରମୁଖତା ଦିଆଯାଇଥିଲା।

ଏହି ପରିପ୍ରେକ୍ଷୀରେ ଗଂଗାଧରଂକ "ଭାରତୀ ରୋଦନ" (୧୮୯୫)ଓ "ଉତ୍କଳ ଭାରତୀଂକ ନିବେଦନ" (୧୮୯୫) କବିତା ବିଶେଷ ଦୃଷ୍ଟିକୁ ଆସେ। "ଭାରତୀ ରୋଦନ"ରେ କବିଂକ "ଉତ୍କଳ ଭାରତୀ ରୋଦନ କରୁଛି" ଯେଉଁ "ବିକଳ ଧ୍ୱନି କର୍ଣ୍ଣରେ ପଡ଼ିଲେ ନୟନେ ଲୋତକ ପୂରେ।" ତା' ରୋଦନର କାରଣ ହେଲା ଯେ, "ହିଂଦି ସରସ୍ୱତୀ ମୋ ଛାତିରେ ବସି କରିବ ପରା ରାଜତ୍ୱ।" ଉତ୍କଳ ଭାରତୀର ଅବସୋସ ଯେ "ଉପମାତା ଆସି ଗର୍ଭ ଧାରିଣୀର ମସ୍ତକେ ଚରଣ ଦେବ।" ମାତ୍ର ଏ ଯେଉଁ ଅତ୍ୟାଚାର ତହିଁରୁ ନିସ୍ତାର ପାଇବା ଲାଗି କବିଂକର "ଉତ୍କଳ-ଭାରତୀ" କର୍ତ୍ତୃପକ୍ଷଂକଠାରେ ତୀବ୍ର ଅଭିଯୋଗ ଅଥବା ଦୃଢ଼ ପ୍ରତିବାଦକୁ ପଛା କରି ପାରିବ ନାହିଁ। ବରଂ ତାଂକ ଭାଷାରେ :

ବିନୟ ଭାବରେ ନିବେଦନ କର     ସର୍ବେ ହୋଇ ଏକ ମୁଖ

ଧର୍ମ ଅବତାର ରାଜରାଜେଶ୍ୱର ଅବଶ୍ୟ ଶୁଣିବେ ଦୁଃଖ
ମହତ ଛାମୁରେ ପ୍ରାର୍ଥନା କରିବା ପ୍ରଶଂସ୍ୟ ଅଟଇ ସଦା
ଫଳ ଲାଭ ପଛେ ନ ହେଲେ ନ ହେବ ନୀଚେ ନ ଯାଚିବ କଥା ।

*(ଗଙ୍ଗାଧର ଗ୍ରନ୍ଥାବଳୀ, ସମ୍ପାଦନା ନଗେନ୍ଦ୍ରନାଥ ପ୍ରଧାନ, କଟକ, ୧୯୯୦, ପୃ.୪୩୮-୩୨)*

ସମସାମୟିକ ଅନ୍ୟ ନରମପନ୍ଥୀଙ୍କ ପରି ଗଂଗାଧର ଏହି ସମୟରେ ସମସ୍ୟାକୁ ବୁଝନ୍ତି, ମାତ୍ର ତା'ର ପ୍ରତିକାର ପାଇଁ 'ନୀଚପନ୍ଥା' ବା ବିରୋଧର ପନ୍ଥା ଆଚରଣ କରିବାକୁ ଚାହାନ୍ତି ନାହିଁ। ସୁଫଳ ନ ମିଳିଲେ, ସୁଦ୍ଧା ବିନୟ ଭାବରେ ନିବେଦନ କରିବାକୁ ପସଂଦ କରନ୍ତି। 'ରାଜରାଜେଶ୍ୱର' ଇଂରେଜ ସରକାର 'ଧର୍ମ ଅବତାର'! ସେ ନିଶ୍ଚୟ ଦୁଃଖ ଶୁଣିବେ ବୋଲି ତାଂକର ବିଶ୍ୱାସ ରହିଛି। ଏକା ନ୍ୟାୟରେ ଗଂଗାଧରଂକ 'ଉତ୍କଳ ଭାରତୀ' ଇଂରେଜ ସାହେବ 'ଉଡ଼ବର୍ଣ୍ଣ'ଙ୍କ ଠାରେ କୃପାଭାବ ଜଣାଇ ଗାଇଛନ୍ତି :

ଜୟ ଜୟ ଉଡ଼ବରନ ଦୟାମୟ ହୃଦୟ
ନ୍ୟାୟ କଳାକାର ସ୍ୱରୂପ ହୋଇଅଛ ଉଦୟ...
ମୋହର ବିନତି କାହିଁକି ତୁମ୍ଭେ ନ କର କଣା...
ଦୟାମୟ ଉଡ଼ବରନ ନିଶ୍ଚେ ଶୁଣି ଗୁହାରି
ସଂକଟ ସାଗର ତରଂଗୁ ମୋତେ (ଉକ୍ରଳ ଭାରତୀଂକୁ) କରିବେ ପାରି।

*(ଗଙ୍ଗାଧର ଗ୍ରନ୍ଥାବଳୀ (ଗ-ପ୍ର.), ପୃ.୪୪)*

ଇଂରେଜ ସରକାରର 'ନ୍ୟାୟପୂର୍ଣ୍ଣ' ଶାସନରେ କବିଂକର ଯେଉଁ ଆସ୍ଥା ଓ ତଦ୍‌ଜନିତ ପ୍ରଶଂସା ଭାବ, ତାହା ତାଂକ 'ଭିକ୍ଟୋରିଆ ସ୍ତବ' କବିତାରେ ଅଧିକ ସୁସ୍ପଷ୍ଟ। ରାଣୀ ଭିକ୍ଟୋରିଆ (ଶାସନ କାଳ ୧୮୩୭ ରୁ ୧୯୦୧) ଭାରତର ମଧ୍ୟ ସାମ୍ରାଜ୍ଞୀ। ରାଣୀଂକ ପ୍ରଶଂସାରେ କବି ଗାଇଛନ୍ତି :

ଯା କୀର୍ତ୍ତି ଲତିକା-ପ୍ରସୂନ-ସୁରଭି ସଂଚାର ଦିଗ ମଣ୍ଡଳେ
ଯା ମୂର୍ତ୍ତି ପରମୋପକାରିଣୀ ସଦା ପୂଜିତ ପୃଥ୍ୱୀ ତଳେ
ଯା କାନ୍ତି ଅକଳଂକ ଚଂଦ୍ର ସଦୃଶୀ ବିଦ୍ୟାରେ ଯେ ଭାରତୀ
ହେଉନ୍ତୁ, ଚିରଜୀବିନୀ ମହିତଳେ ଭିକ୍ଟୋରିଆ ଶ୍ରୀମତୀ।

ଭିକ୍ଟୋରିଆଂକ ପ୍ରଜାପାଳନ ନୀତି କବିଂକୁ ସମ୍ମୋହିତ କରିଛି। ସେ ଭାରତର ନଦନଦୀକୁ ମଧ୍ୟ ରାଣୀଂକ ସାମ୍ରାଜ୍ୟରେ ସମାହିତ କରି ଗାଇଛନ୍ତି :

ଗଂଗା, ଗୋମତୀ, ଘର୍ଘରା, ସରିଦବରା   ଗୋଦାବରୀ ନର୍ମଦା
ପ୍ରଜାହିତାର୍ଥରେ ତ୍ୱରିତ ପ୍ରବାହିତା   ଯା' ରାଜ୍ୟରେ ସର୍ବଦା
ସେବନ୍ତି ନୀର ଦାନରେ ନିରତରେ   ଯା' ନାମେ ନିତି
ହେଉନ୍ତୁ, ଚିରଜୀବିନୀ ମହିତଳେ   ଭିକ୍ଟୋରିଆ ଶ୍ରୀମତୀ।
*(ଗ.ପ୍ର., ପୃ-୩୪୩)*

ବ୍ରିଟିଶ ସମ୍ରାଟ ସପ୍ତମ ଏଡୱାର୍ଡ (୧୮୩୮-୧୯୧୦; ଶାସନ କାଳ ୧୯୦୧-୧୯୧୦)ଙ୍କ ବିୟୋଗରେ ଗଂଗାଧର ଏଡ୍‌ୱାର୍ଡଂକ ପତ୍ନୀଂକ ଦୁଃଖରେ ସମଦୁଃଖି ହୋଇ କହିଛନ୍ତି :

ତୁମ୍ଭ ଅଶ୍ରୁବିଂଦୁ   ଭାରତରେ ସିଂଧୁ   ସମାନ ହେଉଛି ବୋଧ
ତହିଁ ଭାସି ଭାସି   କି ବୋଲି ଆଶ୍ୱାସି   ଜନନୀ, ଦେବୁ ପ୍ରବୋଧ
ଜନନୀ ରୋଦନ   ଚାହିଁ ପୁତ୍ରଗଣ   କାଂଦୁଛୁଁ ଅଧିକତର
ଆମ୍ଭ ନେତ୍ର ନୀର   ପୋଛି ଅବନୀର   ଶାନ୍ତି ସାଧି ଶାନ୍ତି ଧର।
*(ଗ.ପ୍ର., ପୃ.୩୪୩)*

କବିଂକର ଆସ୍ଥା, ବିନମ୍ରତା ଓ ପ୍ରଶଂସା ଭାବ କେବଳ ଇଂଲଣ୍ଡର ରାଜା, ରାଣୀ ଓ ପଦାଧିକାରୀଂକ ଠାରେ ସୀମିତ ନୁହେଁ। ବରଂ ଏହି ଆଦ୍ୟ ରଚନା ସଂଭାରରେ ସେ ଏକାମାତ୍ରାରେ ପ୍ରଶଂସା କରିଛନ୍ତି ଦେଶୀୟ ରାଜା, ରାଜୁଡ଼ାମାନଂକୁ। ତାଂକର ବିଶ୍ୱାସ, ରାଜନ୍ୟ ଓ ଅଭିଜାତ ବର୍ଗ ପ୍ରଜାହିତକୁ ଅଗ୍ରାଧିକାର ଦେବେ ! କବିଂକର 'ଉତ୍କଳ ଭାରତୀ' ନିଜର ଦୁଃଖମୋଚନ ପାଇଁ ଅନେକ ରାଜା-ଜମିଦାରଂକ ଠାରେ କୃପାପ୍ରାର୍ଥୀ ହୋଇଛନ୍ତି। ବରପାଲି ଜମିଦାର ନୃପରାଜ ସିଂହଂକୁ ନିବେଦନ କରି କହିଛନ୍ତି : ଆସ ବାପଧନ ନୃପରାଜ ସିଂହ ବରପଲ୍ଲି ଅଧୀଶ୍ୱର, ତୁମ୍ଭ ପରା ଲୋଡ ସହାୟ ନ ହେଲେ ହେଲି ସିନା ଅନାଦର।

୧୯୧୨ରେ ଲିଖିତ 'କବିତା କଲ୍ଲୋଳ'ରେ କବି ମୟୁରଭଂଜ ରାଜା ଶ୍ରୀରାମଚଂଦ୍ର ଭଂଜ, ବାମଣ୍ଡା ରାଜା ସୁଢ଼ଳ ଦେବ, 'ତାଳଚେର ପତି' ଶ୍ରୀ କିଶୋର ଚଂଦ୍ରଂକର ଗୁଣଗାନ କରିଛନ୍ତି। ଗଂଗାଧରଂକର ଗଦ୍ୟ ରଚନା ବେଶି ନାହିଁ। ମାତ୍ର ସେହି ସ୍ୱଳ୍ପ ଗଦ୍ୟ ସଂଭାର ମଧ୍ୟରେ ବରପାଲି ଜମିଦାର ନୃପରାଜ ସିହଂକର ପ୍ରଶସ୍ତି ଏକ ପ୍ରସଂଗ ହୋଇଛି।

ଯେଉଁ ରୀତିରେ ଗଂଗାଧର ଏହି ସମୟରେ ସମାଜର ପାରଂପାରିକ

ଶାସକ ବର୍ଗ ଓ ଅଭିଜାତ ବର୍ଗଠାରେ ଆସ୍ଥା ରଖିଛନ୍ତି ଏବଂ ସେମାନଂକ ପ୍ରଶଂସା କରି ଦେଶହିତ ପ୍ରତି ସେମାନଂକୁ ଆକୃଷ୍ଟ କରିବାକୁ ପ୍ରୟାସ କରିଛନ୍ତି, ସେହି ରୀତିରେ ସାହିତ୍ୟ ରଚନା ବେଳେ ବିଷୟ ଓ ଧାରା ଖୋଜିଛନ୍ତି ପୌରାଣିକ ପରଂପରା ଓ ରୀତିଯୁଗୀୟ କାବ୍ୟ ପରଂପରାରେ। ତାଂକ ରଚନାର ଅଧିକାଂଶ ବିଷୟବସ୍ତୁ ପୁରାଣରୁ ଆନୀତ- ସେ 'ତପସ୍ୱିନୀ' (୧୯୧୪) ହେଉ, ବା 'ଇଂଦୁମତୀ' (୧୮୮୪) ବା 'କିଚ଼କ ବଧ' (୧୯୦୪) ଅଥବା 'ପ୍ରଣୟ ବଲ୍ଲରୀ' (୧୯୧୫); 'ରସ ରତ୍ନାକର' (୧୮୮୨)ର ପ୍ରତ୍ୟେକ ପଦର ଆଦ୍ୟ ଓ ପ୍ରାନ୍ତରେ 'ର' ବର୍ଣ୍ଣ, ଯାହା ପ୍ରାଚ଼ୀନ ରୀତି ସାହିତ୍ୟର କାବ୍ୟ ଧାରାକୁ ଦର୍ଶାଏ।

ଜଣେ ସଂସ୍କାରୀ ମନ ନେଇ ଗଂଗାଧର ନାରୀମାନଂକୁ ମୁଖ୍ୟ ଚରିତ୍ର କରି ଗଢ଼ିଛନ୍ତି। ଫଳରେ 'ସୀତା' (ତପସ୍ୱିନୀ), ଶକୁନ୍ତଳା (ପ୍ରଣୟ ବଲ୍ଲରୀ) ଓ ଦ୍ରୌପଦୀ (କୀଚ଼କ ବଧ) ଆଦି ତାଂକ ରଚ଼ନାରେ ପ୍ରମୁଖତା ପାଆନ୍ତି, ଯାହାକୁ ପୁରୁଷତାନ୍ତ୍ରିକତା ବିରୁଦ୍ଧରେ ଏକ ପ୍ରତିବାଦ ରୂପେ ଦେଖି ହେବ। ମାତ୍ର ଏହି ଆଦର୍ଶ ନାରୀମାନଂକର ମହାନତା ଥାଏ ସେମାନଂକର ଦୁଃଖ ଯନ୍ତ୍ରଣା ସହ୍ୟ କରିବାରେ, ବିନମ୍ର ରହିବାରେ, ବିନା ପ୍ରତିବାଦରେ ସ୍ୱାମୀର ଆଦେଶ ମାନିନେବାରେ ! ପତି ରାମଂକର ଭୁଲ ବିଚ଼ାରର ଶିକାର ହୋଇ ସୀତାଂକୁ ସ୍ୱାମୀ ପରିତ୍ୟକ୍ତ ଜୀବନ, ନିର୍ବାସନ ଭୋଗ କରିବାକୁ ପଡ଼ିଛି; ଶକୁନ୍ତଳାଂକୁ ପତି ଦୁଷ୍ମନ୍ତ ଚିହ୍ନି ପାରୁ ନାହାନ୍ତି ବୋଲି ଶକୁନ୍ତଳା ଚରିତ୍ରହୀନାର ଆଖ୍ୟା ପାଇଲେଣି; ପୁଣି ଦ୍ରୌପଦୀ ଅନ୍ନଦାତା ବିରାଟ ରାଜାର ଶାଳକ କୀଚ଼କ ହାତରେ ସମ୍ମାନ ହରାଇବାକୁ ବସିଲେଣି। ହେଲେ ଯେଉଁ ପୁରୁଷ ଯୋଗୁଁ ନାରୀ ଏତେ ଯନ୍ତ୍ରଣା ପାଉଛି, ତା' ବିରୁଦ୍ଧରେ ତା'ର ପ୍ରତିବାଦ ନାହିଁ, ଅଭିଯୋଗ ନାହିଁ। ବରଂ ସେ ତାକୁ ହର୍ତ୍ତାକର୍ତ୍ତା ମନେ କରେ। ତା'ର ନିଜର ଅସ୍ମିତା ନାହିଁ; ପତିର ଅସ୍ମିତାରେ ସେ ଆଶ୍ରିତା। ନିର୍ବାସନର ଶିକାର ସୀତା 'ତପସ୍ୱିନୀ' କାବ୍ୟରେ କେବଳ ନିଜକୁ ଧିକ୍କାର କରୁଛନ୍ତି। ରାମଂକ ପ୍ରତି ତାଂକର ବିନମ୍ରଭାବ ଅତୁଟ। ତାଂକ ଭାଷାରେ :

ମୁଁ କି ଛାର, ହେଉ ତୁମ୍ଭ ପ୍ରକୃତି ରଂଜନ
ମୁଁ ମରେ, ତୁମ୍ଭର ହେଉ କଳଂକ ଭଂଜନ,
ଏଥିରୁ ଜନ୍ମିବ ଯେଉଁ ଅକ୍ଷୟ କୀରତି
ହୃଦେ ରଖ, ଗଢ଼ି ତା'ର ଅଳୟ ମୂରତି...
ଧିକ ମୋ ଜୀବନ, ନାଥ ! ଏକା ମୋହ ଲାଗି
ଅକଳଂକ ଥାଇ ହେଲ ଅପଯଶ ଭାଗୀ

(ଗ.-ପ୍ର., ପୃ.-୩)

'କିଚକ ବଧ'ରେ ଅବଶ୍ୟ ଖଳନାୟକ କୀଚକର ପ୍ରଶଂସା ନାହିଁ। ହେଲେ କୀଚକର ସୁରକ୍ଷା ଦାତା ବିରାଟ ରାଜାର ପ୍ରଶଂସାରେ ସୌରିନ୍ଦ୍ରୀ (ଦ୍ରୌପଦୀ) ଶତମୁଖା ଗଂଗାଧର ତାଂକ କଣ୍ଠରେ କହିଛନ୍ତି :

କି କରିବି ନିଂଦା ବିରାଟ ନୃପଂକୁ        ଖାଏଁ ତାଂକ ଅନ୍ନ ଜଳ
ସେ ଯେବେ ଅନୀତି ଆଚରିବେ        ଧର୍ମ ନ ଦେବ କି ପ୍ରତିଫଳ ?
ଅପବ୍ୟବହାର କରଇ ଯେ ନୃପ        ମୋହେ ରାଜ କ୍ଷମତାର
ଦାବାନଳ ଗ୍ରସ୍ତ ଇଂଧନ ପରାୟେ        ଅଚିରେ ବିନାଶ ତା'ର।

(ଗ.-ପ୍ର., ପୃ.-୧୩୫)

ମୋଟ କଥା ହେଲା ଯେ, ଗଂଗାଧର ନିଜ ଆଦ୍ୟ ରଚନା ସଂଭାରରେ ଶାସକ, ଅଭିଜାତ ବର୍ଗ ଓ 'ପତି'ର ଦୋଷ ଦେଖିଛନ୍ତି। ହେଲେ ନିସ୍ତାର ଲାଗି ଅନୁନୟ ବିନୟର ପନ୍ଥାକୁ ବିକଳ୍ପ ମନେ କରିଛନ୍ତି । ପ୍ରତିବାଦ, ପ୍ରତିରୋଧ ଆଦି ଉଗ୍ରପନ୍ଥାକୁ ସେ 'ନୀଚ' ପନ୍ଥା ବୋଲି ଅଗ୍ରାହ୍ୟ କରିଛନ୍ତି। ତା' ସହିତ ସେ ସ୍ପଷ୍ଟ ଶବ୍ଦରେ ରାଜାର ଧର୍ମ ପ୍ରଜାପାଳନ ବୋଲି ସୂଚିତ କରିଛନ୍ତି। କର୍ତ୍ତବ୍ୟରୁ ବିଚ୍ୟୁତ ହେଲେ ରାଜା ଧର୍ମ ହାତରେ ଦଣ୍ଡ ପାଇବେ ବୋଲି ପରୋକ୍ଷରେ ସତର୍କ ମଧ୍ୟ କରାଇଛନ୍ତି। ଅତ୍ୟାଚାରର ଶିକାର ପ୍ରଜାକୁ ସହିଷ୍ଣୁତା, ତ୍ୟାଗ, ବଳିଦାନ ଆଦି ମାନବୀୟ ଗୁଣ ବଳରେ ଶାସକ ଓ ଅଭିଜାତ ବର୍ଗର ତଥା ପୁରୁଷତାନ୍ତ୍ରିକ ସମାଜରେ ପୁରୁଷର ଗର୍ବ ଓ ଅହମିକାକୁ ଧ୍ୱଂସ କରିବା ସକାଶେ କବି ଆଶା ରଖିଛନ୍ତି। ଗଂଗାଧରଂକ ନାରୀ ବିପ୍ଳବିନୀ ନୁହେଁ, ତ୍ୟାଗୀ !

ଗଂଗାଧର ପାଶ୍ଚାତ୍ୟ ଶିକ୍ଷିତ ନ ଥିଲେ ସୁଦ୍ଧା ପାଶ୍ଚାତ୍ୟ ସଭ୍ୟତାର ଆଧୁନିକ ମୂଲ୍ୟବୋଧ ସଂବଂଧରେ ଅପରିଚିତ ନ ଥିଲେ। ଗାଣତାନ୍ତ୍ରିକତା ଓ ପ୍ରଜାହିତ ଆଦି ମୂଲ୍ୟବୋଧକୁ ତାଂକ ଆଦର୍ଶ ନାରୀ ଚରିତ୍ର ଆଦର କରେ। ଏହି ନ୍ୟାୟରେ ସୀତା ପତି ରାମଚଂଦ୍ରଂକ ପ୍ରତି ପ୍ରତିବଦ୍ଧ, କାରଣ ତାଂକର ବିଶ୍ୱାସ ଯେ, "ପରଜା-ରଂଜନ ବ୍ରତେ ଅଟ ତୁମ୍ଭେ ବ୍ରତୀ, ମୁଁ ସହଧର୍ମିଣୀ ତୁମ୍ଭ ପଦାଂକେ ମୋ ଗତି। ହେଉ ମୋର ନିର୍ବାସନ, ପ୍ରକୃତିର ଦୋଷ, ପ୍ରଭୁଂକର ବ୍ରତ ହେଉ ସଂପୂର୍ଣ୍ଣ ନିର୍ଦ୍ଦୋଷ।" ଅର୍ଥାତ୍ ଅଂଧ ପତି ଭକ୍ତି ନୁହେଁ, ବରଂ ରାମଂକର ପ୍ରଜାରଂଜନ ଗୁଣ ଲାଗି ସୀତା ରାମଂକର ସହଯୋଗୀ।

ଗଂଗାଧରଂକ ରାମଚଂଦ୍ର ଗାଣତାନ୍ତ୍ରିକ ବିଚାର ସଂପନ୍ନ। ସାଧାରଣ ବର୍ଗର

ମତକୁ ସମ୍ମାନ ଦେବାକୁ ଯାଇ ସେ ପତ୍ନୀ ସୀତାଂକୁ ନିର୍ବାସନ ଦେଇଛନ୍ତି। କବିଂକ ଭାଷାରେ :

ମିଥ୍ୟା କଥା ଯେବେ ପ୍ରଜାଏ କହିବେ    ମେଳ ହୋଇ ଶତ ଶତ
ମିଥ୍ୟା ଜାଣି ଜାଣି ତାଂକୁ ମାନି ମାନି    ବୋଲାଯାଏ ସତ ସତ...
ପ୍ରଜା ରକ୍ତ ଜଳ କଣିକା ପଟଳ    ସିନା ଉଚ୍ଚାସନ ପାଇ
ଜଳଧର ରୂପ ହୋଇଥାଏ ନୃପ    ପରଜାଂକ ହିତ ପାଇଁ...
ମାୟାକାର ପରି ଦଣ୍ଡ ଗୋଟି ଧରି    ସମଦୃଷ୍ଟି ସମଭାବେ
ରାଜତ୍ୱ ରଜ୍ଜୁରେ ବିଳଶି ରଜୁରେ    ନିଜ ଜୀବନ ନ ଭାବେ।

(ଗ.-ପ୍ର., ପୃ.-୧୧)

ବିନମ୍ର ହୋଇ  ଗଂଗାଧର ପୁରାଣକୁ ସ୍ୱୀକାର କରିଛନ୍ତି; ରାଜା ଓ ଇଂରେଜ ଶାସକ ବର୍ଗର କର୍ତ୍ତୃତ୍ୱକୁ ଅବମାନନା କରି ନାହାନ୍ତି; ପରଂପରାର ପତିଭକ୍ତି ବି ତାଂକ ପାଇଁ ଅଗ୍ରାହ୍ୟ ନୁହେଁ। ହେଲେ ଏ ସବୁ ତାଂକୁ ରଢ଼ିବାଦୀ, ସଂସ୍କାର ବିରୋଧୀ କରି ନାହିଁ। ଗଣତାନ୍ତ୍ରିକ ମୂଲ୍ୟବୋଧ, ପ୍ରଜାହିତ ଆଦି ଆଦର୍ଶକୁ ସେହି ପରଂପରା ମାଧ୍ୟମରେ ପେଶ କରିବାକୁ ପ୍ରୟାସ କରିଛନ୍ତି। ଆଦର୍ଶକୁ ହାସଲ କରିବା ଲାଗି ସେ ଲୋକଂକୁ ସହିଷ୍ଣୁ ହେବାକୁ, 'ନୀଚ ପନ୍ଥା' ଆଚରଣ ନ କରିବାକୁ ପରାମର୍ଶ ଦେଇଛନ୍ତି। ଯେଉଁ ରାଜନ୍ୟ ବର୍ଗକୁ ସେ 'ଧର୍ମ ଅବତାର' ବୋଲି ମନେ କରନ୍ତି, ସେହି ବର୍ଗ ପାଇଁ ରାଜତ୍ୱ ବିଳାସିତା ନୁହେଁ, ବରଂ ସମଦୃଷ୍ଟି ଓ ସମଭାବରେ ସମାଜ କାମ କରିବା ଲାଗି ଏକ ଅବସର ! ଗଂଗାଧରଂକ ରାଜା କଦାଚିତ ବିଚାର କୃପଣ ହୋଇ ନ ପାରନ୍ତି ! ନିଜ ଲେଖା ମାଧ୍ୟମରେ କବି ସମକାଳୀନ ରାଜନ୍ୟ ବର୍ଗ ଓ ବ୍ରିଟିଶ ଶାସକ ବର୍ଗଂକୁ ବିନମ୍ର ଭାବରେ ଆଦର୍ଶ ରାଜା ହେବାକୁ ବିନମ୍ର ପରାମର୍ଶ ଦେଇଛନ୍ତି।

ଗଂଗାଧର ମେହେରଂକ ଏ ଯେଉଁ ଅନୁନୟର ଭାଷା, ତହିଁରେ ତତ୍‌କାଳୀନ ନରମପନ୍ଥୀ ଜାତୀୟତାର ସ୍ୱରକୁ ଶୁଣି ହୁଏ। ଯେଉଁ ବିନୟ ସହକାରେ ଜାତୀୟ କଂଗ୍ରେସ ସେତେବେଳେ ଇଂରେଜ ସରକାରଠାରେ ଦେଶବାସୀଂକ ଦୁର୍ଦ୍ଦଶା ଲାଘବ କରିବା ଲାଗି ହାରି ଗୁହାରି କରୁଥିଲା, ତାହା 'ଉତ୍କଳ ସମ୍ମିଳନୀ' ଓ ଓଡ଼ିଆ ଭାଷା ଆଂଦୋଳନରେ ମଧ୍ୟ ଦୃଷ୍ଟିଗୋଚର ହେଉଥିଲା। ସେହି ବିନୟ ଭାବ ନେଇ ଗଂଗାଧର ବ୍ରିଟିଶ ସରକାରଂକୁ ବିଚାରବନ୍ତ ହେବାକୁ, ଅଯୋଧ୍ୟାର ରାଜା ରାମଂକୁ ପତ୍ନୀ ସୀତାଂକ ସ୍ୱଚ୍ଛତାକୁ

ଦେଖିବାକୁ ତଥା ରାଜା ବିରାଟଙ୍କୁ କୀଚକ ଭଳି କାମାଂଧକୁ ସୁରକ୍ଷା ନ ଦେବାକୁ ଅନୁରୋଧ କରୁଥିଲେ। କବିଂକ ଦୃଷ୍ଟିରେ ବିଶ୍ୱକୁ ମଧୁମୟ କରିବା ପାଇଁ ପ୍ରତିବାଦର ଲୋଡ଼ା ପଡ଼ିବ ନାହିଁ, ସଂଘର୍ଷର ଆବଶ୍ୟକତା ରହିବ ନାହିଁ। କର୍ତ୍ତୃତ୍ୱଧାରୀଂକ ହୃଦୟରେ ନ୍ୟାୟଭାବ, ଧର୍ମାବତାରର ଗୁଣ ଅର୍ନ୍ତନିହିତ ! ତାଂକୁ ସମସ୍ୟାଟି ବୁଝାଇ ଦେଲେ, ସେହି ଭାବ ଜାଗ୍ରତ ହେବ, ସେ ପ୍ରତିକାର କରିବେ ! ଗଂଗାଧରଂକ ବିଶ୍ୱ ଦୃଷ୍ଟିରେ ଆପୋଷ ବୁଝାମଣା ବଳରେ ହିଁ 'ବିଶ୍ୱ ମଧୁମୟ' ହେବ !

ଗଂଗାଧରଂକ ଲେଖନୀର କର୍ତ୍ତୃତ୍ୱଧାରୀ ଆଗରେ ବିନମ୍ର ହେବାର ଏହି ଭାଷା ପଛରେ ଆଉ ଏକ ବାସ୍ତବତାକୁ ବି ଦେଖିହୁଏ। ଭାରତରେ ମହାତ୍ମା ଗାଂଧିଂକ ରାଜନୈତିକ ଉତ୍‌ଥାନ ଏବଂ ତଦ୍‌କାଳୀନ ଅନ୍ୟାନ୍ୟ ରାଜନୈତିକ ଘଟଣା ଘଟିବା ଆଗରୁ ଭାରତର ବୁଦ୍ଧିଜୀବୀ ଗୋଷ୍ଠୀ ସଂଖ୍ୟାନ୍ୟୁନ ଥିଲେ; ସେମାନଂକର ଜନାଧାର ନ ଥିଲା; ଜନଗଣଙ୍କ କର୍ତ୍ତୃତ୍ୱଧାରୀଂକୁ ଭାଂଗି ଦେଲା ଭଳି ଶକ୍ତି ରହିଛି - ଏହା ଅନୁଭବକୁ ଆସି ନ ଥିଲା। ଆନ୍ତଃଶକ୍ତିକୁ ଚିହ୍ନି ନ ପାରିବା ଯୋଗୁଁ ଶାସକ ଓ ଅଭିଜାତ ବର୍ଗ ଆଗରେ କରୁଣାଭିକ୍ଷା କରିବା ବିକଳ୍ପ ହୋଇଥିଲା। ମାତ୍ର ୧୯୧୫ ପରେ ସ୍ଥିତି ବଦଳିଲା। ଗାଂଧି ଭାରତୀୟ ରାଜନୀତିର କର୍ଣ୍ଣଧାର ହେଲେ; ଜାତୀୟ କଂଗ୍ରେସ ଏକ ଗଣ ଆଂଦୋଳନ ହେବାକୁ ଆରଂଭ କଲା। ଅନ୍ୟ ପକ୍ଷରେ ପ୍ରଥମ ବିଶ୍ୱ ଯୁଦ୍ଧ (୧୯୧୪-୧୮) ପରେ ଇଂରେଜ ସାମ୍ରାଜ୍ୟବାଦ ଅଧିକ ଉଗ୍ର ହୋଇ ଜନମତକୁ ଉପେକ୍ଷା କଲା; ନିରୀହ ଲୋକଂକୁ ମଧ୍ୟ ଜାତୀୟବାଦୀ ହେବା ଅଭିଯୋଗରେ ବହୁ ସଂଖ୍ୟାରେ ହତ୍ୟା କରାଗଲା। ଏହାର ଜ୍ୱଳନ୍ତ ପ୍ରମାଣ ହେଲା ୧୯୧୯ର ଜାଲିଆନୱାଲାବାଗ ହତ୍ୟାକାଣ୍ଡ। ବୁଦ୍ଧିଜୀବୀର ଇଂରେଜଠାରେ ଥିବା ଆସ୍ଥା ଉଣା ହେଲା; ମୋହଭଂଗ ହେଲା। ଶାନ୍ତିପୂର୍ଣ୍ଣ ଉପାୟରେ ସଭା କରୁଥିବା ଲୋକଂକୁ ଯେଉଁ ସରକାର ଜଘନ୍ୟ ଭାବେ ହତ୍ୟା କରେ, ଆତ୍ମରକ୍ଷା ପାଇଁ ସୁଦ୍ଧା ସୁଯୋଗ ଦିଏ ନାହିଁ, ସେହି ସରକାରଠାରୁ କରୁଣା ମିଳିନପାରେ, ବରଂ ତା'ର ଶାସନରୁ ନିବୃତ୍ତି ଦରକାର ! ଏହି ନୂଆଁ ଅବଧାରଣା ଭାରତୀୟ ବୁଦ୍ଧିଜୀବୀକୁ ଆଂଦୋଳନ କଲା।

ବିଂଶ ଶତାବ୍ଦୀର ପ୍ରଥମ ଦେଢ଼ ଦଶଂଧି ପରେ ଏ ଯେଉଁ ବୈଚାରିକ ପରିବର୍ତ୍ତନ, ତା'ର ପ୍ରଭାବ ଗଂଗାଧରଂକ ସୃଜନୀରେ ମଧ୍ୟ ଦେଖିବାକୁ ମିଳେ।

୧୯୧୬-୧୭ ପରବର୍ତ୍ତୀ ଲେଖାରେ ଗଂଗାଧରଂକ ଭାଷାରେ କୃପାପ୍ରାର୍ଥୀ ହେବାର ଭାବ ଆଉ ଦେଖିବାକୁ ମିଳେନା। ସେ ଇଂରେଜ ସରକାର ଓ ରାଜନ୍ୟ ବର୍ଗକୁ କଟୁ ସମାଲୋଚନା କରିଛନ୍ତି; ସେମାନଂକ ସ୍ଥାନରେ ସେ ସାମାଜିକ ବିଷୟକୁ ପ୍ରମୁଖତା ଦେଇଛନ୍ତି ; ପୁରାଣର 'ଆଦର୍ଶ ପୁରୁଷ' ମଧ୍ୟ ତାଂକ ପାଇଁ ଆଦର୍ଶ ନୁହନ୍ତି; ଲୋକଗଣଂକୁ ନିଜ ଅନ୍ତଃଶକ୍ତି ଚିହ୍ନିବାକୁ ପ୍ରେରଣା ଦେଇଛନ୍ତି ; ଏପରିକି ସଂସ୍କୃତ ଆଶ୍ରିତ ତଥାକଥିତ ଶୁଦ୍ଧ ଓଡ଼ିଆ ପରିବର୍ତ୍ତେ ଚଳନ୍ତି ଭାଷା ଓ ଚଳନ୍ତି ଶବ୍ଦକୁ ନିଜ ସୃଜନୀର ମାଧ୍ୟମ କରିଛନ୍ତି। ମୋଟ କଥା ହେଲା, ପରିବର୍ତ୍ତିତ ପରିସ୍ଥିତିରେ ସେ ସ୍ଥାଣୁ ହୋଇ ନାହାନ୍ତି, ଦୃଷ୍ଟିଭଂଗୀ ବଦଳେଇଛନ୍ତି। ଏହି ଆଧାରରେ ତାଂକ ସୃଜନକୁ ସମକାଳୀନ ସମୟର ଏକ ପ୍ରତିଛବି ରୂପେ ଦେଖି ହେବ।

ଗଂଗାଧରଂକ ଏହି ନୂଆଁ ସ୍ୱରର ଲେଖାଗୁଡ଼ିକ ମଧ୍ୟରେ 'ଅର୍ଘ୍ୟଥାଳି' (୧୯୧୮), 'ଭାରତୀ ଭାବନା' (୧୯୧୯ ପରେ), ଏବଂ 'କୃଷକ ସଂଗୀତ' (୧୯୨୧) ବିଶେଷ ଦୃଷ୍ଟିକୁ ଆସନ୍ତି। 'ଅର୍ଘ୍ୟଥାଳି'ରେ ପୌରାଣିକତା ପରିବର୍ତ୍ତେ 'ବର୍ଷାଋତୁ ପ୍ରତି', 'ନର ଓ ମୟୂର', 'ଅଂଧକାରର ଅବସାଦ', 'ବାକ୍ୟବୀର ଓ କର୍ମବୀର' ତଥା 'ତାକୁ ମଧ୍ୟ ବୋଲିଥାନ୍ତି ଧର୍ମ ଅବତାର', 'ଆଦି କବିତାରେ ସାମାଜିକ ଓ ପ୍ରାକୃତିକ ପ୍ରସଂଗ ତାଂକ ଲେଖନୀର ବିଷୟ ହୋଇଛି।

ଏହି ପରିପ୍ରେକ୍ଷୀରେ 'ତାକୁ ମଧ୍ୟ ବୋଲିଥାନ୍ତି ଧର୍ମ ଅବତାର' କବିତାକୁ ଦେଖାଯାଇପାରେ। ଯେଉଁମାନଂକୁ 'ଧର୍ମ ଅବତାର' ବୋଲି ସେ ଅତୀତରେ ଆଖ୍ୟା ଦେଇଥିଲେ, ତହିଁରେ ସଂଶୋଧନ କରି ତଥାକଥିତ 'ଧର୍ମ ଅବତାର'ର ତୁଚ୍ଛତା, ହୀନମନ୍ୟତା, ବିଚାର କୃପଣତା ଓ ଅମାନବୀୟତାକୁ କବି ଚିହ୍ନିତ କରିଛନ୍ତି। କବିଂକ ଭାଷାରେ :

ମନଯାର ବ୍ୟସ୍ତସଦା ପରସ୍ୱ ହରଣେ, ଧନ ଯାର ବିଦଳିତ ଗଣିକା ଚରଣେ
ଜୀବନ ଯା ଲକ୍ଷ ଲକ୍ଷ ଲୋକଂକର ଭାର, ତାକୁ ମଧ୍ୟ ବୋଲିଥାନ୍ତି ଧର୍ମ ଅବତାର।
ବିଦ୍ୟା ଯାର ମୋଡୁଥାଏ ଧର୍ମନୀତି ମୁଣ୍ଡ, ବୁଦ୍ଧି ଯାର କରୁଥାଏ ଶତ ସତ୍ୟ ଗୁଣ୍ଡ
ଧନେ କ୍ରୀତ ହେଉଥାଏ ଯାହାର ବିଚାର, ତାକୁ ମଧ୍ୟ ବୋଲିଥାନ୍ତି ଧର୍ମ

ଅବତାର। (ଗ. ପ୍ର., ପୃ.-୨୫୪)

ସେହିଭଳି 'କୃଷକ ସଂଗୀତ'ରେ ରାମ ବା କୃଷ୍ଣ ନୁହନ୍ତି, କିଂବା କୌଣସି ରାଜା ବା ଜମିଦାର ନୁହନ୍ତି, ବରଂ କୃଷିଜୀବୀ ହଳିଆ ଚାଷୀ ହେଲା କବିଂକର ମୁଖ୍ୟ ପାତ୍ର। ହଳିଆ ଚାଷ କରେ, ଅଥଚ ସେ ଜମିର ମାଲିକ ନୁହେଁ। ସେ ଅଶିକ୍ଷିତ ବୋଲି ଆଧୁନିକ ପ୍ରଣାଳୀରେ ଚାଷ କରି ଜାଣେନା ; ଉତ୍ପାଦନ ବୃଦ୍ଧି କରି ପାରେନା ; ବଜାରରେ ଠକି ହୁଏ। କବି ତାକୁ ସାମର୍ଥ୍ୟ ଦେବା ଉଦ୍ଦେଶ୍ୟରେ ପାଠ ପଢ଼ିବାକୁ କହିଛନ୍ତି; ଧାନ, ଗହମ, ମକା, କପା ବାଇଗଣଠାରୁ ଆରଂଭ କରି ଆଳୁ ପିଆଜ ଯାଏଁ ଉନ୍ନତ ପ୍ରଣାଳୀରେ ଚାଷ କରି ଉତ୍ପାଦନ ବୃଦ୍ଧି କରିବାର ବିଧି ବତେଇଛନ୍ତି। ଜାତିଭେଦର ନିରର୍ଥକତାକୁ କୃଷକ ହୃଦୟଙ୍ଗମ କରୁ ବୋଲି କହିଛନ୍ତି। କେବଳ ସେତିକି ନୁହେଁ, ଗଂଗାଧର ଏଥିରେ ସଂସ୍କୃତ ଆଶ୍ରିତ 'ଶୁଦ୍ଧ' ଓଡ଼ିଆ ସ୍ଥାନରେ ପଶ୍ଚିମାଂଚଳର ଅନେକ ଗାଉଁଲି ଶବ୍ଦର ବ୍ୟବହାର କରିଛନ୍ତି। ଏଥିରେ କବିଂକର ଲକ୍ଷ୍ୟ ଉଚ୍ଚାଂଗ ସାହିତ୍ୟ ସୃଷ୍ଟି ନୁହେଁ: ବରଂ ସମାଜର ଅତି ସାଧାରଣ ସ୍ତରର ଲୋକଟିକୁ, ଗାଂଧିଂକ ଭାଷାରେ 'ଲାଷ୍ଟ ମେନ୍'କୁ ବୌଦ୍ଧିକ ଓ ଆର୍ଥିକ ଦୃଷ୍ଟିରୁ ସମର୍ଥ କରିବାର ଉଦ୍ୟମ ସୁସ୍ପଷ୍ଟ। ପ୍ରଚାର ଓ ପ୍ରସିଦ୍ଧି, ମନେହୁଏ, କବିଂକର ଧ୍ୟେୟ ନୁହେଁ। ଗଣସ୍ତରରେ ଓତଃପ୍ରୋତଃ ହୋଇ ସାମାଜିକ ପରିବର୍ତ୍ତନ ଆଣିବା ତାଂକର ଲକ୍ଷ୍ୟ। ଏଥିରେ ଶିକ୍ଷାର ମହତ୍ତ୍ୱକୁ ବିଳଂବରେ ହେଉ ପଛେ ବୁଝି ପାରିଥିବା କୃଷକ କହେ :

ରାତି ପାଂଚ ଦଣ୍ଡ ମୁଁ ନିତି ପଢ଼େ ପାଠ, ପୋଥିମାନେ ମୋ ଗୁରୁ ମୁହିଁ
ତାଂକ ଚାଟ
ଦେଖୁଛି ମୋ ହେଉଛି ମଂଗଳ ଅଶେଷ, ମାନି ଚଳୁଥିବାରୁ ସବେ
ପୋଥିଂକ ଉପଦେଶ ହେ।
ପଢ଼ିଥିଲି ଅଳପ ବାଳୁତ କାଳରେ, ପଶି ଯେବେ ନ ଥିଲି ଗୃହ
କଂଜାଳଳରେ
ଯେଉଁ ଦିନୁ ରହିଲି ଗୁରୁ ଗୃହ ଛାଡ଼ି, ରାତିରେ ମୋ ହାତରେ କଲମ,
ଦିବସରେ କୋଡ଼ି ବାଡ଼ି ହେ।

(ଗ.ପ୍ର., ପୃ.୩୬୧)

କବିଂକର 'ଭାରତୀ ଭାବନା'ରେ ହିଂଦୁ ପୁରାଣର ମହାନାୟକ' କୃଷ୍ଣ ଓ ସାମ୍ରାଜ୍ୟବାଦୀ ଇଂରେଜ ଶାସନ, ଉଭୟେ ତୀବ୍ର ସମାଲୋଚନାର ଶରବ୍ୟ,

ଖଳନାୟକ। ଦୁହେଁ ଛଳ କରି ନିଜ ସ୍ୱାର୍ଥ ପାଇଁ ଲୋକଂକ ସରଳ ମନକୁ ପ୍ରତାରିତ କରନ୍ତି। କୃଷ୍ଣ ଗୋପପୁରର ଗୋପୀମାନଂକୁ ଛଳ କରନ୍ତି ଆଉ ଇଂରେଜମାନେ ଭାରତବାସୀଂକୁ ! ବ୍ରାହ୍ମଣ୍ୟବାଦ, ପୁରୁଷତନ୍ତ୍ର ଓ ସାମନ୍ତବାଦର ପ୍ରତୀକ ପୌରାଣିକତା, ରାଜନ୍ୟ ବର୍ଗ ଓ ସାମ୍ରାଜ୍ୟବାଦ- କାହାକୁ କବି ଛାଡ଼ି ନାହାନ୍ତି। କବିଂକ ଭାଷାରେ, ଲୋକଂକ ପାଇଁ ଏହି ଧରଣର ଛଳନା ଆଉ ଅବୁଝା ନୁହେଁ। ତେଣୁ, ଦ୍ୱୈତ ଅର୍ଥବୋଧକ 'ଭାରତୀ ଭାବନା'ରେ କବି ଶ୍ଳେଷ ଭରା କଣ୍ଠରେ ଗାଇଛନ୍ତି :

ଡାକି ତ ନ ଥିଲୁ ତୁମ୍ଭ ଘର ଯାଇ      ଆସିଥିଲ ନିଜ ଲାଭରେ
ସରଳ ହୃଦୟ ମଣି ସିନା ଘରେ      ରଖିଲୁ ସିନା ସ୍ନେହାଦରେ,
ଗୋପେଂଦ୍ର କହିବ କଲ ଉପକାର
ଯାହା କରିଅଛ ନିଜ ସ୍ୱାର୍ଥ ପାଇଁ      ନ ଥିଲା ଆମ୍ଭ ଦରକାର।

*(ଗ.ପ୍ର., ପୃ.୨୯୦)*

'ଭାରତୀ ଭାବନା' ପୂର୍ଣ୍ଣତଃ ଏକ ରାଜନୈତିକ ରଚନା। ଏଥିରେ ଇଂରେଜ ସାମ୍ରାଜ୍ୟବାଦର କାଯ୍ୟ ବିସ୍ତାର, ପ୍ରଥମ ବିଶ୍ୱଯୁଦ୍ଧ, ଗାଂଧିଂକର ଭାରତୀୟ ରାଜନୀତିରେ ପ୍ରବେଶ ଓ ପ୍ରଭାବ ତଥା ଜାଲିଆନୱାଲା ହତ୍ୟାକାଣ୍ଡ, ଆଦି ରାଜନୈତିକ ଘଟଣାର ଉଲ୍ଲେଖ ରହିଛି; ଗଣ ଶକ୍ତି ଓ ଗଣ ଆଂଦୋଳନର ମଧ୍ୟ ଉଦ୍ଧରଣ ରହିଛି। ଗଂଗାଧର ଶିକ୍ଷିତ ନ ଥିଲେ; ପାଶ୍ଚାତ୍ୟ ସାହିତ୍ୟ ଓ ବିଚାରରେ ପ୍ରବେଶ କରିବାକୁ ତାଂକୁ ସୁଯୋଗ ମିଳି ନ ଥିଲା। ମାତ୍ର ପଂଚମ ଶ୍ରେଣୀ ଯାଏଁ ପାଠ ସେ ପଢ଼ିଥିଲେ; ଅମିନ, ମୋହରିର ଆଦି ନିମ୍ନବେତନ ଭୋଗୀ ଚାକିରି କରୁଥିଲେ ; ଲୁଗା ବୁଣିବାର କୌଳିକ ବୃତ୍ତିକୁ ବି ତ୍ୟାଗ କରି ନ ଥିଲେ, ଯାହା ସାମାନ୍ୟ ଅଧିକ ଉପାର୍ଜନର ବାଟ ଥିଲା। ପୁସ୍ତକ ପଠନ ବି ଥିଲା ତାଂକ ପାଇଁ ଏକ ବିଳାସିତା। ମାତ୍ର ସମଗ୍ର ବିଶ୍ୱ ଓ ପ୍ରକୃତିକୁ ପୁସ୍ତକ ତୁଲ୍ୟ ମଣୁଥିଲେ ବୋଲି ସେ କହୁଥିଲେ। ଫଳରେ ଆଧୁନିକ ଶିକ୍ଷାର ଅଭାବବୋଧ ତାଂକୁ କଦାଚିତ କବଳିତ କରି ପାରି ନ ଥିଲା, ତାଂକ ବିଚାର ଓ ବୌଦ୍ଧିକତା ସ୍ଥାଣୁ ହୋଇ ନ ଥିଲା, ବାମନତ୍ୱ ପାଇ ନ ଥିଲା। ଏହି କାରଣରୁ ଭବିଷ୍ୟତରେ ମଧ୍ୟ ତାଂକ ବ୍ୟକ୍ତିତ୍ୱ, ବିଚାର ଓ ସର୍ଜନା ଐତିହାସିକ ପ୍ରାସଂଗିକତା ବଜାୟ ରଖିବ- ଏହା ଅନୁମାନ କରିହୁଏ।



(୨୦୧୩)

# ଗୋପବଂଧୁ ଦାସ : ଏକ ପରିଚ଼ର୍ଚ୍ଚା

-କ-

୧୯୧୫ ମସିହାରେ ମହାତ୍ମା ଗାଂଧି ଦକ୍ଷିଣ ଆଫ୍ରିକାରୁ ଭାରତକୁ ପ୍ରତ୍ୟାବର୍ତ୍ତନ କଲେ। ଏହାର ଅଳ୍ପ ସମୟ ମଧ୍ୟରେ ତାଂକୁ ଦେଶର ସାଧାରଣ ଜନମାନସରେ ଏକ ସ୍ୱତନ୍ତ୍ର ପରିଚ଼ିତି ମିଳିଲା। ରାଜନୈତିକ ଆଂଦୋଳନର ପ୍ରତ୍ୟକ୍ଷ ରୂପେ ନେତୃତ୍ୱ ନେବା ଆଗରୁ ସେ ଯେତେବେଳେ ଦେଶର ଅଂଦିକଂଦି ଭ୍ରମଣ କଲେ, ହଜାର ହଜାର ଲୋକ ତାଂକ ଦର୍ଶନ ପାଇଁ ବାଟ ଚାହିଁ ରହୁଥିଲେ। ଜନ ମାନସରେ ଗାଂଧିଂକୁ ନେଇ ସେ ଯେଉଁ ଅଭୂତପୂର୍ବ ଉତ୍କଣ୍ଠା, ତାହା ତାଂକୁ ସ୍ୱାଧୀନତା ସଂଗ୍ରାମର ସର୍ବୋଚ୍ଚ ନେତା କରି ପକାଇଲା। ନେତୃତ୍ୱ ନିମନ୍ତେ ତାଂକୁ ଅନ୍ୟ କାହାରି ସାଂଗରେ କୌଣସି ପ୍ରତିଯୋଗିତା କରିବାକୁ ପଡ଼ିଲା ନାହିଁ। 'ମୋହନ ଦାସ'ଙ୍କ ଏହି 'ମହାତ୍ମା' ହେବା ପଛରେ ଅନ୍ୟତମ ପ୍ରମୁଖ କାରଣ ଥିଲେ ପ୍ରାନ୍ତୀୟ ଓ ଆଂଚ଼ଳିକ ସ୍ତରରେ ସାମାଜିକ କାର୍ଯ୍ୟ କରୁଥିବା ଅନେକ ଅନେକ 'ଗାଂଧି'। ସେମାନଂକ ନିଷ୍ଠାପର ସମାଜ କାମ ମୂଲ୍ୟ ଭିତ୍ତିକ ରାଜନୀତି ସକାଶେ ଯେଉଁ ଭିତ୍ତି ନିର୍ମାଣ କରିଥିଲା, ତାହା ପରବର୍ତ୍ତୀ ସମୟରେ ମହାତ୍ମା ଗାଂଧିଂକ ସତ୍ୟାଗ୍ରହ ରାଜନୀତିକୁ ସହଜରେ ବିସ୍ତାରିତ ହେବାରେ ଖୁବ୍ ସହଯୋଗ କଲା। ଅର୍ଥାତ୍ ସେହି ଆଂଚ଼ଳିକ ସ୍ତରର ଅନେକ 'ଗାଂଧିଂକ' ବିନା ଯେ ମହାତ୍ମା ଗାଂଧି ଭାରତୀୟ ଜାତୀୟତାର ପ୍ରମୁଖ ସ୍ତମ୍ଭ ହୋଇ ପାରି ନ ଥାନ୍ତେ ଏହା ନିଶ୍ଚିତ କଥା।

ଏହି ଧରଣର ଜଣେ ଆଂଚ଼ଳିକ, ସଂଘୀୟ, ପ୍ରାନ୍ତୀୟ ଓ ସ୍ଥାନୀୟ 'ଗାଂଧି' ଥିଲେ ଓଡ଼ିଶାର 'ଦାସ ଆପଣେ', 'ଉତ୍କଳମଣି' ଗୋପବଂଧୁ ଦାସ। ଓଡ଼ିଶା ସ୍ତରରେ ତାଂକ ପରିଚ଼ିତି ଗାଂଧିଂକ ଅପେକ୍ଷା କିଛି ଊଣା ନୁହେଁ। ସ୍ୱାଧୀନୋତ୍ତର ଭାରତରେ ଆଜି ଯେତେବେଳେ ମାନବୀୟ ମୂଲ୍ୟବୋଧ ଭିତ୍ତିକ ରାଜନୀତିର ପ୍ରାସଂଗିକତା ଊଣା ହୋଇ ନାହିଁ, ସମୂହଭିତ୍ତିକ ବୌଦ୍ଧିକତା ଓ ସାହିତ୍ୟର ମହତ୍ତ୍ୱ କମ୍ ହୋଇନାହିଁ, ସେତେବେଳେ 'ଅତୀତ' ହେବା ସତ୍ତ୍ୱେ ଗୋପବଂଧୁ ଦାସଂକ ପରି ସଂଘୀୟ ଗାଂଧିମାନେ ଯେ ବର୍ତ୍ତମାନ ତଥା ଆଗାମୀ ପିଢ଼ି ପାଇଁ ପ୍ରେରଣାର ଉତ୍ସ ହେବେ- ଏହା ଅନସ୍ୱୀକାର୍ଯ୍ୟ ! ସେହି ଉଦ୍ଦେଶ୍ୟକୁ ମନରେ

ରଖି ଏହି ପରିଚର୍ଚ୍ଚା!

ଗୋପବଂଧୁ ଦାସଂକ ଜନ୍ମ ଏକ ସାଧାରଣ ପରିବାରରେ। ବୟସରେ ସେ ମହାତ୍ମା ଗାଂଧିଂକଠାରୁ ଆଠ ବର୍ଷ ସାନ। ପରଲୋକକୁ ଯାଇଛନ୍ତି ଗାଂଧିଂକଠାରୁ କୋଡ଼ିଏ ବର୍ଷ ଆଗରୁ। ସେହି ଅନୁସାରେ ଅର୍ଥାତ୍ 'ବର୍ଷ, ମାସ, ଦିନ, ଦଣ୍ଡ'ର ଅବଧିରେ ଦେଖିଲେ ତାଂକ ଜୀବନ ସ୍ୱଳ୍ପ ! ପରିବାରର ଆର୍ଥିକ ଦୁରବସ୍ଥା ସତ୍ତ୍ୱେ କଠିନ ପରିଶ୍ରମ ଓ ଅଧ୍ୟବସାୟ ବଳରେ ସେ କଟକ ରେଭେନ୍‌ସା କଲେଜରୁ ବି.ଏ. ଓ କଲିକତା ବିଶ୍ୱବିଦ୍ୟାଳୟରୁ ଆଇନ ଡିଗ୍ରୀ ହାସଲ କରି ପାରିଥିଲେ। ଗାଂଧିଂକ ପରି ସେ ଧନାଢ୍ୟ 'ଦେବାନ'ର ପୁଅ ନ ଥିଲେ। ତାଂକର ପ୍ରାୟ ଲେଖା, ଟିପ୍ପଣୀ ଓ ବକ୍ତବ୍ୟ ଆଂଚ଼ଳିକ ଓଡ଼ିଆ ଭାଷାରେ। ଅର୍ଥାତ୍ ତଂକୁ ଜାଣିବା-କଣେଇବା ଏବଂ ବୁଝିବା-ବୁଝେଇବା ସକାଶେ ସମ୍ମୁଖ ପକ୍ଷର ସାଧାରଣ ଓଡ଼ିଆ ଭାଷାଜ୍ଞାନ ରହିବା ଏକ ଆବଶ୍ୟକତା। ନିଜ ସମୟର ଅନ୍ୟ ନରମପନ୍ଥୀ ରାଷ୍ଟ୍ରବାଦୀଂକ ପରି ସେ ଶିକ୍ଷାର ପ୍ରସାରକୁ ସାମାଜିକ ପରିବର୍ତ୍ତନ ଓ ଜାତୀୟ ଉନ୍ନତି ନିମନ୍ତେ ଏକ ପ୍ରମୁଖ ମାର୍ଗ ଭାବରେ ବାଛି ନେଇଥିଲେ। ଫଳରେ ଓଡ଼ିଶାରେ ଶିକ୍ଷା ପରିବେଷଣ ଥିଲା ତାଂକ ଜୀବନର ବ୍ରତ। ଏହି କାମରେ ତାଂକ ଅନ୍ୟ ସହଯୋଗୀମାନେ ଥିଲେ 'ପଂଚ଼ସଖା' ନାମରେ ପରିଚ଼ିତ ନୀଳକଣ୍ଠ ଦାସ, ଗୋଦାବରୀଶ ମିଶ୍ର, ଆଚ଼ାର୍ଯ୍ୟ ହରିହର ଦାସ ଓ କୃପାସିଂଧୁ ମିଶ୍ର। ପ୍ରାରଂଭିକ କାଳରେ ସଭିଏଁ ମିଶି ବୁଲି ବୁଲି ପାଣ୍ଠି ସଂଗ୍ରହ କଲେ। ସ୍ଥାପିତ ହେଲା ସତ୍ୟବାଦୀ ବନ ବିଦ୍ୟାଳୟ। ସମସ୍ତେ ଥିଲେ ଉଚ୍ଚ ଶିକ୍ଷିତ। କେହି ଧନାଢ୍ୟ ନ ଥିଲେ। ତଥାପି ଅନେକ ବଡ଼ କାମ କରି ପାରିଥିଲେ। ଉତ୍ସର୍ଗୀକୃତ ସମାଜ କାମ ନିମନ୍ତେ ସେମାନଂକ ନିଷ୍ଠତ୍ତିକୁ ସମସାମୟିକ ଭାରତୀୟ ରାଜନୀତିର ଏକ ମହତ୍ତ୍ୱପୂର୍ଣ୍ଣ ଉପଲବ୍ଧି ରୂପେ ଦେଖାଯାଇପାରେ। ଦ୍ୱିତୀୟତଃ, ଗୋପବଂଧୁ, ପଂଚ଼ସଖା ଓ ସତ୍ୟବାଦୀ ମଧ୍ୟରେ ଯେଉଁ ପରିପୂରକତା, ସେଥିରେ ପ୍ରାୟ ଶେଷ ଯାଏଁ କେବେ ଫାଂକ ପଡ଼ିନଥିଲା। ସମାଜ କାମ ନିମନ୍ତେ ବୈରଭାବହୀନ ଏଭଳି ନିବିଡ଼ ଗୋଷ୍ଠୀ ମନୋଭାବ କେବଳ ବିଂଶ ଶତାବ୍ଦୀର ଆରଂଭ ଦଶକ ନୁହେଁ, ଆଜି ସତ୍ୟବାଦୀ ଆରଂଭ ହେବାର ଶହେ ବର୍ଷ ପରେ ମଧ୍ୟ ବିରଳ କହିଲେ ଚଳିବ ! ଆଂଚ଼ଳିକ ସ୍ତରର ପ୍ରତିବଦ୍ଧ ସମାଜକର୍ମୀମାନେ ଯେମିତି ମହାତ୍ମା ଗାଂଧି ଏବଂ ତାଂକ ସତ୍ୟାଗ୍ରହକୁ ପ୍ରସାରିତ ହେବାରେ ଭିତ୍ତି ଦେଇଥିଲେ,

ଠିକ୍ ସେମିତି ପଂଚ୍‌ସଖା ଏବଂ ପଂଚ୍‌ସଖା ବାହାରେ ବି ଅନେକ ସାମାଜିକକର୍ତ୍ତା ଗୋପବଂଧୁ ଦାସ ଏବଂ ସତ୍ୟବାଦୀକୁ ବଢ଼ିବାରେ ତଥା ଗଢ଼ିବାରେ ଆଧାର ଯୋଗାଇଥିଲେ। ଫଳରେ ସତ୍ୟନିଷ୍ଠ ଆଧାରିତ 'ସତ୍ୟବାଦୀ' ଜାତୀୟ ରାଜନୀତିକୁ ମୂଲ୍ୟବୋଧଭିତ୍ତିକ, ମାନବୀୟ ତଥା ଜନାଭିମୁଖୀ କରିବାରେ ଏକ ପ୍ରମୁଖ ସ୍ଥାନୀୟ ପ୍ରୟାସ ହୋଇପାରିଥିଲା।

ମହାତ୍ମା ଗାଂଧି, ଗୋପବଂଧୁ ଦାସ, ପଂଚ୍‌ସଖା କିଂବା ଅନ୍ୟମାନଂକ ମଧ୍ୟରେ ରହିଥିବା ସମାନତା ଏବଂ ବିଭେଦତାକୁ ନେଇ ପରିଚ୍ଚର୍ଚ୍ଚା କଦାପି ଅଯଥାର୍ଥ ହୋଇ ନ ପାରେ। ମାତ୍ର ସାଂଗରେ ଏକଥା ମଧ୍ୟ ସତ ଯେ ସେମାନଂକୁ ସାନ-ବଡ଼, ତଳ-ଉପର ଇତ୍ୟାଦିର ସିଢ଼ିରେ ରଖି ତୁଳନା କରିବା ଆଦୌ ଇତିହାସ ସମ୍ମତ ଚର୍ଚ୍ଚା ନୁହେଁ। ଅର୍ଥାତ୍ ତାହା କେବେ ପ୍ରକୃତ ସାମାଜିକ-ପାଠ ହୋଇ ନ ପାରେ। ଗୋପବଂଧୁଂକର ବିଶ୍ୱଦୃଷ୍ଟି, ସାଧାରଣ ଲୋକ ପ୍ରତି ଦରଦ, ପ୍ରତିକୂଳ ପରିସ୍ଥିତିରେ କାମ କରିବାର ଅଦମ୍ୟ ପ୍ରୟାସ, ସଂକୀର୍ଣ୍ଣ ଆଂଚ୍‌ଳିକତାରୁ ଊର୍ଦ୍ଧ୍ୱକୁ ଉଠିବାର ଇଚ୍ଛା ଶକ୍ତି ତଥା ସେନାପତି ଭଳି ସମସ୍ତଂକୁ ସାଂଗରେ ନେଇ ସମାଜ କାମ କରିବାର ସାମର୍ଥ୍ୟ ସର୍ବଦା ଆଲୋଚ୍‌ନାର ପ୍ରସଂଗ ହେବା କଥା। ବ୍ୟକ୍ତି ରୂପରେ ସେ ଅନ୍ୟ ସମସ୍ତ ବ୍ୟକ୍ତିଂକ ପରି; ପୁଣି ଅନ୍ୟ ସମସ୍ତ ବ୍ୟକ୍ତିଂକଠାରୁ ଭିନ୍ନ ମଧ୍ୟ। ତା' ସତ୍ତ୍ୱେ ଅନ୍ୟ କେଉଁ ଯୁଗପୁରୁଷ ତୁଳନାରେ ତାଂକୁ ବଡ଼ ବା ସାନ ବୋଲି ସିଦ୍ଧ କରିବା ନିହାତି ଅସଂଗତ କଥା।

ଏ କଥା ସତ ଯେ ଗୋପବଂଧୁ ଓଡ଼ିଶା ଭଳି ଏକ ସୀମିତ ଭୂଗୌଳିକ ଅଂଚ୍‌ଳକୁ ନିଜର କର୍ମକ୍ଷେତ୍ର ରୂପେ ବାଛିଥିଲେ। ବନ୍ୟା ବିପନ୍ନଙ୍କ ପାଇଁ ତାଂକର ସାହାଯ୍ୟ ବାଣ୍ଟିବା କାମ ପୁଣି ମୁଖ୍ୟତଃ ଓଡ଼ିଶାର ଏକ ସାନ ପରିଧି, ଅର୍ଥାତ୍ ଉପକୂଳ ଅଂଚ୍‌ଳ ଯାକେ ହିଁ ସୀମିତ ଥିଲା। ତାଂକର ମାନସ ସନ୍ତାନ ସତ୍ୟବାଦୀ ବନ ବିଦ୍ୟାଳୟର ସ୍ଥାପନା ପୁରୀ ଜିଲ୍ଲାର ସାକ୍ଷୀଗୋପାଳ ନାମକ ଗାଁରେ ହିଁ ହୋଇଥିଲା। ଅର୍ଥ ହେଲା, ସତ୍ୟବାଦୀର ପ୍ରଭାବ କ୍ଷେତ୍ର ମଧ୍ୟରେ ଆସିଥିବା ମୋଟ ଅଂଚ୍‌ଳର ପରିସୀମା ଖୁବ୍ ବ୍ୟାପକ ହୋଇ ନ ପାରେ। ପ୍ରଭାବ କ୍ଷେତ୍ର ପରି ସତ୍ୟବାଦୀର ମୋଟ ଜୀବନ କାଳ ମଧ୍ୟ 'ବର୍ଷ, ମାସ, ଦିନ, ଦଣ୍ଡ'ରେ ଗଣିଲେ ଖୁବ୍ ସ୍ୱଳ୍ପ ! ୧୯୦୯ରୁ ୧୯୨୬ ପର୍ଯ୍ୟନ୍ତ। ପୁଣି ସେହି ସ୍ୱଳ୍ପ ଜୀବନକାଳ ମଧ୍ୟରେ ଅନୁଷ୍ଠାନଟି କେତେଥର ଯେ ମୁମୂର୍ଷୁ ପ୍ରାୟ ଦୁଃସ୍ଥିତିର ସମ୍ମୁଖୀନ

ହୋଇଛି, ତା'ର ହିସାବ ନାହିଁ। କେବଳ ସେତିକି ନୁହେଁ, ଗୋପବଂଧୁ ସଂପାଦିତ ସାହିତ୍ୟ ପତ୍ରିକା 'ସତ୍ୟବାଦୀ' (୧୯୧୪) ଏବଂ ସଂବାଦପତ୍ର 'ସମାଜ' (୧୯୧୯) ହେଲେ ଆଂଚ଼ଳିକ ଭାଷା ପତ୍ରିକା। ଏଭଳି କି ଭାରତୀୟ ଜାତୀୟ କଂଗ୍ରେସର ନେତା ଭାବରେ ଗୋପବଂଧୁଂଜର ବିଶେଷ ସର୍ବଭାରତୀୟ ମାନ୍ୟତା ନ ଥିଲା। ଜୀବନ ସାରା ସେ ପ୍ରାଦେଶିକ ଉତ୍କଳ କଂଗ୍ରେସ କମିଟୀ ସ୍ତରରେ ରହି ହିଁ କାର୍ଯ୍ୟ କରିଛନ୍ତି। ସେହି ଅନୁସାରେ ଆଜି ବାଳ ଗଂଗାଧର ତିଳକ, ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ ବା ରାଜେଂଦ୍ର ପ୍ରସାଦଂକୁ ସର୍ବଭାରତୀୟ ଜାତୀୟତାବାଦୀ ନେତା ନାଁରେ ଯେଉଁ ପରିଚ଼ିତି ମିଳେ, ସେତିକି ପରିଚ଼ିତି ଗୋପବଂଧୁ ଦାସଂକୁ ମିଳି ପାରେନା। ଏ ସବୁକୁ ବାଦ ଦେଲେ ତାଂକ ବଡ଼ତି ପାଇଁ ଦିଆଯାଇଥିବା 'ଉତ୍କଳମଣି'ର ସମ୍ମାନ ଗୋପବଂଧୁଂକୁ ଉତ୍କଳ ବାହାରେ ସ୍ୱୀକୃତି ଦେବାରେ ଏକ ରକମର ବାଧକ ଭଳି କାମ କରେ। ହେଲେ, ବାସ୍ତବରେ ଦେଖିଲେ ଗୋପବଂଧୁ କଦାଚ଼ିତ ସଂକୀର୍ଣ୍ଣ ଆଂଚ଼ଳିକତାର କବଳରେ ପଡ଼ି ନାହାନ୍ତି। ବରଂ ଜୀବନ ସାରା ସେ ଓଡ଼ିଆ ଜାତିକୁ ସଂକୀର୍ଣ୍ଣ ଆଂଚ଼ଳିକତାରୁ ଦୂରରେ ରଖିବା ପାଇଁ ପ୍ରଯତ୍ନ କରିଛନ୍ତି. ୧୯୨୦ ମସିହାରେ ଅନୁଷ୍ଠିତ 'ଉତ୍କଳ ସମ୍ମିଳନୀ'ର ଚକ୍ରଧରପୁର ଅଧିବେଶନରେ ସମ୍ମିଳନୀ ଯେତେବେଳେ ବ୍ରିଟିଶ ବିରୁଦ୍ଧରେ ଅସହଯୋଗକୁ ମନ୍ତ୍ର ରୂପେ ଗ୍ରହଣ କଲା ଏବଂ ସେହି ପ୍ରକ୍ରିୟାରେ ଜାତୀୟ କଂଗ୍ରେସରେ ସମାହିତ ହେଲା ତଥା ମହାଭାରତୀୟତାର ସ୍ରୋତରେ ଓତଃପ୍ରୋତଃ ହେଲା; ତା' ପଛରେ ରହିଥିଲା ଗୋପବଂଧୁଂକର ଉଦ୍ୟମ। ମହାଭାରତୀୟତାର ମହାସ୍ରୋତରେ ମିଶିବା ପାଇଁ ଗୋଡ଼ ଟେକୁଥିବା ଓଡ଼ିଶାର ଯୁବ ଜାତୀୟତାକୁ ସେ ଏକ ପରିପକ୍ୱ ନେତୃତ୍ୱ ଦେଇଥିଲେ। ପୁଣି, ଆହୁରି ଗଭୀରକୁ ଗଲେ ଦେଖାଯାଏ ଯେ ଗୋପବଂଧୁଙ୍କ ଜାତୀୟତା କସ୍ମିନକାଳେ ଭାରତର ଭୂଗୌଳିକ ପରିସୀମା ଯାକେ କେବଳ ଆବଦ୍ଧ ନ ଥିଲା। ବିଶ୍ୱର ସାମୂହିକ ଉନ୍ନତିର ଏହା ସଂପୂର୍ଣ୍ଣ ରୂପରେ ଅନୁପୂରକ ବୋଲି ସେ ଯୁକ୍ତି ବାଢୁଥିଲେ। ବିଶ୍ୱମାନବତା ଥିଲା ତାଂକର କାମ୍ୟ ! ବିଶ୍ୱମାନବର ହିତକୁ ଉପେକ୍ଷା କରି କଦାଚ଼ିତ ରାଷ୍ଟ୍ରର ଜାତୀୟତା ଉଧେଇ ନ ପାରେ ବୋଲି ସେ ଦୃଢ଼ ବିଶ୍ୱାସ ରଖିଥିଲେ। ସେହି ଦୃଷ୍ଟିରୁ ଦେଖିଲେ, ତାଂକର ଓଡ଼ିଶା କ୍ଷେତ୍ର, ଜାତୀୟତା ଆଂଦୋଳନ, ଆଂଚ଼ଳିକ ଭାଷାରେ ପତ୍ରିକା ସଂପାଦନା, ନିଜ ପୈତୃକ ଗାଁ କଡ଼ରେ ସ୍କୁଲ ପ୍ରତିଷ୍ଠା ଇତ୍ୟାଦି ପ୍ରତ୍ୟେକ କାର୍ଯ୍ୟ, ସେହି ମହତ ଲକ୍ଷ୍ୟ ପୂରଣ ଦିଗରେ ଗୋଟାଏ ଲେଖା ସରଳ ଉଦ୍ୟମ ମାତ୍ର !

ପ୍ରକୃତରେ ବିଚାର କଲେ, କାର୍ଯ୍ୟକ୍ଷେତ୍ରର ପରିଧି ଆଧାରରେ କୌଣସି କାର୍ଯ୍ୟକର୍ତ୍ତାଙ୍କୁ ଦୂରଦୃଷ୍ଟିସଂପନ୍ନ ବା ଦୂରଦୃଷ୍ଟି-ଶୂନ୍ୟ ବୋଲି କୁହାଯାଇ ନ ପାରେ। ବିଶ୍ୱର ନେତା ବା ଜଗତର ଅନୁଷ୍ଠାନ ବୋଲି ନାଁ ପାଇଥିବା ବ୍ୟକ୍ତି ଓ ଅନୁଷ୍ଠାନ ମଧ୍ୟ ଜାତି, ଭାଷା ଆଦିର ସଂକୀର୍ଣ୍ଣତାକୁ ଅତିକ୍ରମଣ କରି ଥାଇ ନ ପାରନ୍ତି। ଠିକ୍ ସେମିତି, ନିଜ ଆଶ୍ରମ ବାହାରକୁ କ୍ୱଚିତ ପାଦ କାଢ଼ିଥିବା କେହି ସାଧୁ, ସନ୍ଥ ବି ବିଶ୍ୱଦୃଷ୍ଟି ଯୁକ୍ତ ହୋଇପାରନ୍ତି ! ପୁଣି, ଅନ୍ୟ ଏକ ଦୃଷ୍ଟିରୁ ଦେଖିଲେ, ସମଗ୍ର ବିଶ୍ୱ ଯଦି ଏକ, ତା'ର ମାନବ ସମାଜ ଯଦି ଗୋଟାଏ ଜାତି, ତେବେ ଆପେକ୍ଷିକ ଅର୍ଥରେ 'ପ୍ରଦେଶ' ଅପେକ୍ଷା 'ଦେଶ' ବଡ଼ ନିଶ୍ଚୟ, କିନ୍ତୁ ବିଶ୍ୱ ପରିପ୍ରେକ୍ଷୀରେ ଉଭୟେ ଏକ ବିରାଟ ସମୂହର ଗୋଟାଏ ଲେଖା ଅଂଶ ଓ ଅଂଗ ମାତ୍ର ! ନା କେହି ବଡ଼, ଅଧିକ ମହତ୍ତ୍ୱପୂର୍ଣ୍ଣ, ନା କେହି ସାନ, କମ ମହତ୍ତ୍ୱପୂର୍ଣ୍ଣ ! ଠିକ୍ ସେହିଭଳି ଭାଷା ଆଧାରରେ କେହି ଆଂଚଳିକ (ସଂକୀର୍ଣ୍ଣ) ପଦବାଚ୍ୟ ହୋଇ ନ ପାରନ୍ତି। ଭାବର ଅଭିବ୍ୟକ୍ତି ନିମନ୍ତେ କାଗଜ ଓ କଲମ ପରି ଭାଷା ଏକ ଆବଶ୍ୟକୀୟ ମାଧ୍ୟମ ମାତ୍ର। କୌଣସି ଏକ ନିର୍ଦ୍ଦିଷ୍ଟ ଭାଷାକୁ କହିବା ଲୋକର ମୋଟ ସଂଖ୍ୟା ଆଧାରରେ 'ସାନ' ଅର୍ଥାତ 'ଆଂଚଳିକ' ବୋଲି ଉପେକ୍ଷା କରାଗଲେ, ବିଶ୍ୱର କୌଣସି ଭାଷା ଆଂଚଳିକତାରୁ ଊର୍ଦ୍ଧ୍ୱକୁ ଉଠି ନ ପାରନ୍ତି। ବଡ଼ କଥା ହେଲା ବ୍ୟକ୍ତିର ଦୃଷ୍ଟିକୋଣ, ବିଶ୍ୱସମାଜକୁ ଚିହ୍ନିବା ପାଇଁ ତଥା ତା' ସହ ଏକୀକୃତ ହେବା ପାଇଁ ମନରେ ଥିବା ଆନ୍ତରିକତା ଏବଂ ଅଖିଳ ବ୍ରହ୍ମାଣ୍ଡର ରହସ୍ୟ ଉଦ୍‌ଘାଟନ ସକାଶେ ଅନ୍ତରରେ ରହିଥିବା ଜିଜ୍ଞାସା। ତେଣିକି କାହାକୁ କେତେ ପଦବୀ, ପ୍ରସିଦ୍ଧି ଓ ପ୍ରତିଷ୍ଠା ମିଳିଛି, ସେ ଭିନ୍ନ କଥା। ଏହି ଆଧାରରେ ଦେଖିଲେ, କେତେ ଯେ ଯୁଗପୁରୁଷ ଏବଂ ଯୁଗପୁରୁଷ ହେବାର ସାମର୍ଥ୍ୟ ଓ ସୃଷ୍ଟିଶୀଳତା ରଖିଥିବା ବ୍ୟକ୍ତି ଆମ ନଜରକୁ ଆଦୌ ଆସି ପାରି ନ ଥିବେ, ତା'ର ଆକଳନ କରିବା କଠିନ। ପୁଣି, ବଡ଼ ପରିଧିରେ ବୋହିଯିବା ତଥା ଉଡ଼ି-ଉଭେଇଯିବା ଅପେକ୍ଷା ବ୍ୟକ୍ତି ଭାବରେ ସାନ ପରିଧିର କାର୍ଯ୍ୟକ୍ଷେତ୍ରରେ ରହି ଠୋସ କିଛି କରିବା ଆଦୌ ଅସମୀଚିନ ନୁହେଁ। ଏହି ଦୃଷ୍ଟିରୁ ଗୋପବଂଧୁ ଦାସଂକର କାର୍ଯ୍ୟ ଓ ଉପଲବ୍ଧି ଯେ ଏକ ବ୍ୟାପକ ବୌଦ୍ଧିକ ପରିଚର୍ଚ୍ଚା ପାଇଁ ସ୍ରୋତ ସାମଗ୍ରୀ ହେବ-ଏଥିରେ ସଂଦେହ ନାହିଁ।

ଦ୍ୱିତୀୟତଃ ଇତିହାସ ହେଲା ମୋଟ ସାମାଜିକ ବିବର୍ତ୍ତନର ଏକ ବିଜ୍ଞାନ

ସଂବତ ବସ୍ତୁନିଷ୍ଠ ଅଧ୍ୟୟନ। ତହିଁରୁ ନା କାହାକୁ ବାଦ ଦେଇ ଦେବ, ନା କାହାରିକୁ ଊଣା ବା ଅଧିକ ବୋଲି କହିହେବ ! ସେ 'ଗାଂଧି' ହୁଅନ୍ତୁ ବା ଗୋପବଂଧୁ, ବା ଅଖ୍ୟାତ ରାମା ହୁଅନ୍ତୁ ବା 'ଶାମା'! ସମସ୍ତଙ୍କୁ ନେଇ ଇତିହାସର ମୋଟ ସ୍ୱରୂପ, ସାମାଜିକ ବିବର୍ତ୍ତନର ମୋଟ ପରିଧି। କାହାକୁ ତହିଁରୁ ବାଦ ଦିଆଗଲେ, ଅତୀତର ସେହି ମୋଟ ସମୂହ ରୂପ ଖଣ୍ଡିଆ ହୋଇଯିବ। ଦେଖିବା ଲୋକକୁ ଯଦି ତାହା ଖଣ୍ଡିଆ ନ ଦିଶେ, ସେ ଆଖିର ଦୋଷ ! ଏହି ପରିପ୍ରେକ୍ଷୀରେ ବିଚାର କଲେ, ଗୋପବଂଧୁ କଦାଚିତ ଗାଂଧିଂକ ତୁଳନାରେ 'ଊଣା' ହୋଇ ନ ପାରନ୍ତି, ପଂଚସଖା ବା ଅନ୍ୟ କେହି ଗୋପବଂଧୁଂକ ତୁଳନାରେ 'ତଳ' ହୋଇ ନ ପାରନ୍ତି ; ଗାଂଧି ମଧ୍ୟ କେବେ ଗୋପବଂଧୁ ବା ଆଉ କାହା ତୁଳନାରେ ନିଜକୁ ବଡ଼ ବୋଲି ଦାବି କରି ନ ପାରନ୍ତି ! ଅର୍ଥାତ୍ ସାମାଜିକ ବିବର୍ତ୍ତନର ଏକ ସାମଗ୍ରିକ ଅଧ୍ୟୟନ ପ୍ରକ୍ରିୟାରେ ଗୋପବଂଧୁ କାହାରି ପ୍ରତିଦ୍ୱଂଦ୍ୱୀ ହୋଇ ନ ପାରନ୍ତି। ମୋଟ ସାମାଜିକ ବିବର୍ତ୍ତନର ଏକ ଆଂଚଳିକ ସ୍ୱରୂପ ଭାବରେ ଯଦି ଆଧୁନିକ ଭାରତ ଇତିହାସକୁ ଦେଖାଯାଏ, ଗୋପବଂଧୁଂକୁ ନେଇ ଚର୍ଚ୍ଚା ଅନ୍ୟ ଚର୍ଚ୍ଚାଗୁଡ଼ିକର ପରିପୂରକ ପ୍ରମାଣିତ ହେବ; କଦାପି ପରିପନ୍ଥୀ ହେବ ନାହିଁ।

ଏକଥା ପୂର୍ବରୁ ମଧ୍ୟ ଉଲ୍ଲେଖ କରାଯାଇଛି ଯେ, ନିଜ ବିଚାର ଏବଂ କାର୍ଯ୍ୟକୁ ଜାତୀୟ ସ୍ୱାର୍ଥ ଅନୁକୂଳ କରିବା ପାଇଁ ମହାତ୍ମା ଗାଂଧିଂକୁ ଆଂଚଳିକ ସ୍ତରରେ 'ଗୋପବଂଧୁମାନେ' ମିଶି ଆଧାରଶିଳା ଦେଇଛନ୍ତି। ଠିକ୍ ସେହିଭଳି, 'ଆଂଚଳିକ' ସ୍ତରର 'ଗୋପବଂଧୁମାନଂକ' ସାମାଜିକ କାର୍ଯ୍ୟ ପରିଧି ଭିତରେ ଗାଂଧିଂକ ପରି ଜଣେ ଦାୟିତ୍ୱବାନ, ପରିପକ୍ୱ ନେତୃ ସ୍ଥାନୀୟ ବ୍ୟକ୍ତି ଯଦି ସମନ୍ୱୟ ସ୍ଥାପନ ପାଇଁ ରହି ନ ଥାନ୍ତେ, କାର୍ଯ୍ୟକ୍ରମଗୁଡ଼ିକୁ ସଂଯୋଜନା କରି ନ ଥାନ୍ତେ, ମେଘର ଖଣ୍ଡ ଖଣ୍ଡ ଭସା ବାଦଲ ଭଳି ଏହି ଗୋପବଂଧୁମାନେ ନିଜ ନିଜ ଅଂଚଳରେ ନିରୋଳା ପଡ଼ି ଯାଇଥାନ୍ତେ। ସଂପର୍କର ସୂତ୍ରପାତ ବିନା ସେମାନେ ବର୍ଷା ପାଣିରେ ପରିଣତ ହୁଏତ ହୋଇ ପାରି ନଥାନ୍ତେ। ସେମାନଂକ ସାମ୍ରାଜ୍ୟବାଦ ବିରୋଧିତା ତଥା ନବ ନିର୍ମାଣର ବୌଦ୍ଧିକ ଚିନ୍ତନ, ମନେହୁଏ, ରଂଗରୂପ ନେଇ ପାରି ନ ଥାନ୍ତା। ଅର୍ଥାତ୍ ତାହା ମୂର୍ତ୍ତ ରୂପ ପାଇ ନ ଥାନ୍ତା ! ସେହି ଦୃଷ୍ଟିରୁ ଗାଂଧି ଓ ଗୋପବଂଧୁ ଆଦିଂକୁ ସେମାନଂକ ନିଜ ନିଜ ସମାଜ ଓ ସମୟର ସନ୍ତାନ ରୂପେ ଦେଖାଯାଇପାରେ। ଏହାର ଅର୍ଥ ହେଲା, ଗାଂଧି ଆଗରୁ ଜନ୍ମ ନେଇଥିଲେ ଯାହା କରିଛନ୍ତି, ବୋଧହୁଏ ତାହା କରି ପାରି ନ ଥାନ୍ତେ; ଠିକ୍

ଯେମିତି ଗୋପବଂଧୁ ପରେ ଜନ୍ମ ନେଇଥିଲେ ଯାହା କରିଛନ୍ତି, ହୁଏତ ତାହା କରି ପାରି ନ ଥାନ୍ତେ। ଅନ୍ୟ ପକ୍ଷରେ, ଏକଥା ମଧ୍ୟ ସତ ଯେ, ଗାଂଧି ଓ ଗୋପବଂଧୁଂକ ଅଭାବରେ ସମାଜ ଓ ସମୟ ଅନ୍ୟ କାହାକୁ 'ମହାତ୍ମା'ର ଭୂମିକା ଦେଇଥାନ୍ତା, 'ଉତ୍କଳମଣି' କରି ଗଢ଼ିଥାନ୍ତା ! ସେମାନଂକ ବିନା ସାମାଜିକ ବିବର୍ତ୍ତନର ପ୍ରକ୍ରିୟା ଅଟକି ଯାଇ ନ ଥାନ୍ତା !

ଗୋପବଂଧୁଂକୁ ନେଇ ଏହି ପରିଚ୍ଚର୍ଚ୍ଚାରେ ଏକାଧିକ ଥର ମହାତ୍ମା ଗାଂଧିଂକ ଉଲ୍ଲେଖ ରହିବା ପଛରେ କାରଣ ହେଲା ଯେ ଆଧୁନିକ ଭାରତୀୟ ରାଜ୍ୟ-ରାଷ୍ଟ୍ର ସାମ୍ରାଜ୍ୟବାଦୀ ବିରୋଧୀ ଗଣ ଚେତନା ଏବଂ ନୂଆଁ ଯୁଗ ଚେତନାର ଏକ ମୂର୍ତ୍ତିମନ୍ତ ପ୍ରତୀକ ହେଲେ ଗାଂଧି। ତାଂକ ନାଁର ଉଲ୍ଲେଖ ହେଲେ ଏକ ପ୍ରକ୍ରିୟାକୁ ମହତ୍ତ୍ୱ ଦିଆହେଲା ଭଳି ପ୍ରତୀତ ହୁଏ। ତେଣୁ, ସମୟ ଓ ପରିଧିର ସୀମିତତା ଦୃଷ୍ଟିରୁ ଅନେକ ନାଁ ଜାଗାରେ ଗାଂଧିଂକ ନାଁର ଉଲ୍ଲେଖ ଆବଶ୍ୟକୀୟ ଅଭାବକୁ ପୂରଣ କରିଦିଏ। ଓଡ଼ିଶା ସ୍ତରରେ ଗୋପବଂଧୁ ବି ସେହିଭଳି ଏକ ସାମାଜିକ ପ୍ରକ୍ରିୟାର ପ୍ରତୀକ ! 'ଅତୀତ' ହେବା ସତ୍ତ୍ୱେ, 'ବର୍ତ୍ତମାନ' ପାଇଁ ସେ କେବେ ଅନୁପଯୋଗୀ ହୋଇ ନ ପାରନ୍ତି। ତାଂକଭଳି ଏକ ପ୍ରତୀକକୁ ନେଇ ଚର୍ଚ୍ଚାରେ ବୃଥା ଆସ୍ଫାଳନ କରିବା ବା ତାଂକର ଅଂଧ ପକ୍ଷଧର ହେବା ଯେତିକି ଅଯୌକ୍ତିକ, ତାଂକ ସାମାଜିକ ମହତ୍ତ୍ୱକୁ ଉପେକ୍ଷା କରିବା ତତୋଧିକ ମାତ୍ରାରେ ଅସଂଗତ ! ସେ ଗୋପବଂଧୁ ଦାସ ହୁଅନ୍ତୁ ବା ଅନ୍ୟ କେହି- ତାଂକୁ ନେଇ ଯୁକ୍ତିନିଷ୍ଠ, ବସ୍ତୁନିଷ୍ଠ ଆଲୋଚ଼ନା ହେବା କଥା। ଅନ୍ୟାଥା ସେ ଇତିହାସର ଘୋଷାପାଠ ହୋଇଯିବେ; ବର୍ତ୍ତମାନ ସକାଶେ ଦର୍ପଣ ହୋଇ ପାରିବେ ନାହିଁ। ଆଗାମୀ ପିଢ଼ିକୁ ଅର୍ଥପୂର୍ଣ୍ଣ ଜୀବନ କିଇଁବା ନିମନ୍ତେ ସେହି ଧରଣର ଘୋଷାପାଠ କେବେ ଖୋରାକ ବା ପ୍ରାସଂଗିକ ହୋଇ ନ ପାରେ। ଅଧ୍ୟୟନ ପ୍ରାସଂଗିକ ନ ହେଲେ ଆଉ ତ ଆଉ 'ସ୍ୱର୍ଗବାସୀ' ଗୋପବଂଧୁଂକର ମଧ୍ୟ କୌଣସି ମଂଗଳ ହେବ ନାହିଁ। ବିଶ୍ୱଦ୍ରଷ୍ଟା ହେବା ସତ୍ତ୍ୱେ ସେ ନିଜ ଘର କୋଣରୁ ସୁଦ୍ଧା ବାହାରି ପାରିବେ ନାହିଁ- ଏହା ସ୍ୱତଃସିଦ୍ଧ କଥା।

## (ଖ)

ଗୋପବଂଧୁ ଦାସ (୧୮୭୭-୧୯୨୮) ପୁରୀ ଜିଲ୍ଲାର ସାକ୍ଷୀଗୋପାଳ ନିକଟସ୍ଥ ସୁଆଣ୍ଡୋ ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ। ପିତାଂକ ନାମ ଦୈତାରି

ଦାସ; ମା' ସ୍ୱର୍ଣ୍ଣମୟୀ। ଶୈଶବାବସ୍ଥାରେ ସେ ମାତୃହରା ହେଲେ ଏବଂ ପିଉସୀ କମଳା ଦେବୀଂକ ଯତ୍ନରେ ଲାଳିତ ପାଳିତ ହେଲେ। ମାତ୍ର ମା'ର ଏ ଯେଉଁ ଅଭାବ, ତାକୁ ସେ ଖୋଜି ପାଇଛନ୍ତି ମାତୃଭୂମିଠାରେ। ସେତେବେଳେ ମାତୃଭୂମି ତାଂକର ଗାଁ, ପ୍ରଦେଶ ବା ଦେଶ ଯାକେ ସୀମିତ ହୋଇ ରହିନାହିଁ। ସମଗ୍ର ମାଟି ମା' ଅର୍ଥାତ୍ ବିଶାଳ ବିଶ୍ୱ ଜନନୀ ଯାଏଁ ତାହା ପରିବ୍ୟାପ୍ତ ହୋଇଛି। ଏହାକୁ ଭାଷା ଦେବାକୁ ଯାଇ ଗାଁ, ପ୍ରଦେଶ ଦେଶ ଓ ବିଶ୍ୱ ମଧ୍ୟରେ ସେ ଅନୁପୂରକତା ଦେଖିଛନ୍ତି। ୧୯୨୫ ମସିହାରେ ବୋଲଗଡ଼ ଠାରେ ଆୟୋଜିତ ପ୍ରାଦେଶିକ ସମ୍ମିଳନୀ (କଂଗ୍ରେସ)ର ଅଭ୍ୟର୍ଥନା ସମିତିର ଅଧ୍ୟକ୍ଷ ଭାବରେ ଏହି କଥାକୁ ସିଦ୍ଧ କରି ସେ କହିଥିଲେ :

ଉତ୍କଳ ଭାରତର ଅଂଗ। ଭାରତର ଉତ୍‌ଥାନ ପତନରେ ଏହାର ଉନ୍ନତି ଓ ଅଧୋଗତି। ଅବଶ୍ୟ ପ୍ରତ୍ୟେକ ପ୍ରଦେଶର ସ୍ୱାତନ୍ତ୍ର୍ୟ ଅଛି, ସ୍ୱତନ୍ତ୍ର ଅଭାବ ଅଭିଯୋଗ ଅଛି। ସେ ସ୍ୱାତନ୍ତ୍ର୍ୟର ବିକାଶ ଓ ସେସବୁ ଅଭିଯୋଗର ସମାଧାନ ହେବା ଆବଶ୍ୟକ। ତାହା ଭାରତୀୟ ଉନ୍ନତିର ପ୍ରତିଦ୍ୱଂଦୀ ନୁହେଁ, ଅନୁକୂଳ। ଭାରତୀୟ ସମସ୍ୟାର ସମାଧାନ ଏବଂ ବିକାଶ ଭାରତର ମହାଜାତୀୟ ଆକାଂକ୍ଷା ପୂରଣରେ ପ୍ରାଦେଶିକ ଉନ୍ନତି ଓ ବିକାଶ ସହାୟ। ବ୍ୟକ୍ତି ବିଶେଷର ଉନ୍ନତି ପରିବାର ଉନ୍ନତିର ବିରୋଧୀ ନୁହେଁ। ଗ୍ରାମର ଉନ୍ନତି ପ୍ରଦେଶର ଉନ୍ନତିର ପ୍ରତିଦ୍ୱଂଦୀ ନୁହେଁ। ଜଗତ ବା ମାନବ ଉନ୍ନତିର ବାଧକ ନୁହେଁ। ଏ ପ୍ରତ୍ୟେକର ପ୍ରତ୍ୟେକ ସଂଗେ ଅଂଗାଂଗୀ ସଂବଂଧ। ପ୍ରତ୍ୟେକ ପ୍ରତ୍ୟେକର ସହାୟ ଓ ପରିପୂରକ।

*(ସମାଜ, ୨୫ ନଭେମ୍ବର ୧୯୨୫)*

ଜଗତ ଉନ୍ନତି ଓ ସ୍ୱ-ଉନ୍ନତି ମଧ୍ୟରେ ଅନୁପୂରକତା ରହିଛି ବୋଲି ଯୁକ୍ତି କରୁଥିବା ଗୋପବଂଧୁ ଦାସ ସଂକୀର୍ଣ୍ଣ ଆଂଚଳିକତାର ବା ପକ୍ଷ ନେବେ କେତେକେ ? ବିଂଶ ଶତାବ୍ଦୀର ଆରଂଭ ଦଶକରେ ସେ ଯେତେବେଳେ ଜାତୀୟତାବାଦୀ ରାଜନୀତିକୁ ଜଗତ ଉନ୍ନତିର ମାଧ୍ୟମ ଭାବରେ ଗ୍ରହଣ କରି ତହିଁରେ ସକ୍ରିୟ ହେଲେ, ତାଂକୁ 'ଉତ୍କଳ ସମ୍ମିଳନୀ' (୧୯୦୩)ରେ ବଢ଼ି ଉଠୁଥିବା ସଂକୀର୍ଣ୍ଣ ଆଂଚଳିକତା ପସଂଦ ହୋଇ ନାହିଁ। ଦ୍ୱିତୀୟ ପିଢ଼ିର ଓଡ଼ିଆ ବୁଦ୍ଧିଜୀବୀ ସେ। ବୟସରେ ତରୁଣ। କାହାରି ଅହେତୁକ କର୍ତ୍ତୃତ୍ୱକୁ ସେ ସ୍ୱୀକାର

କରି ପାରିବେ ନାହିଁ। ପ୍ରଥମ ପିଢ଼ିର ବୁଦ୍ଧିଜୀବୀ ଭାବରେ ମଧୁସୂଦନ ଦାସ ବାଧ୍ୟରେ ପଡ଼ି ରାଜା-ରାଜୁଡ଼ା ବର୍ଗର କର୍ତ୍ତୃତ୍ୱକୁ ମାନି ନେଇଥିଲେ, ସେମାନଂକର ସାହାଯ୍ୟ ଓ ସହଯୋଗକୁ ପୁଂଜି କରି ଓଡ଼ିଶାରେ ରାଜନୈତିକ ଆଂଦୋଳନ ଆରଂଭ କରିଥିଲେ; ଭାଷା-ସଂସ୍କୃତିର ଅସ୍ମିତା ରକ୍ଷା ପାଇଁ ୧୯୦୩ ମସିହାରେ ଉତ୍କଳ ସମ୍ମିଳନୀ ଆରଂଭ କରିଥିଲେ। ତହିଁରେ ରାଜନ୍ୟ ବର୍ଗର ଯେଉଁ କର୍ତ୍ତୃତ୍ୱ ରହିଥିଲା, ତାହା ଗୋପବଂଧୁକ ପାଇଁ ସ୍ୱୀକାର୍ଯ୍ୟ ହୋଇନପାରେ। ପୁଣି ଗୋପବଂଧୁଙ୍କୁ ଜାତୀୟତାର ବୀଜମନ୍ତ୍ର ମିଳିଛି କଲିକତାର ବଂଗାଳି ପରିବେଶରେ। ତାଂକ ଜାତୀୟତା କେବେ ବଂଗାଳି ବିରୋଧୀ ହୋଇ ନ ପାରେ। ତେଣୁ ୧୯୦୪ ମସିହାରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀ ମଣ୍ଡପକୁ ସେ ତାଂକର କେତେଜଣ ବଂଗାଳି ବଂଧୁଂକୁ କଲିକତାରୁ ଆମନ୍ତ୍ରଣ କରିଥିଲେ। ମାତ୍ର ମଧୁସୂଦନ ଦାସଂକ ନିର୍ଦ୍ଦେଶରେ ସେମାନଂକୁ ମଣ୍ଡପ ଭିତରକୁ ବାରଣ କରାଗଲା। ଏହାର ତୀବ୍ର ବିରୋଧ କରି ନିଜେ ଗୋପବଂଧୁ ମଣ୍ଡପ ତ୍ୟାଗ କଲେ। କିନ୍ତୁ ଏତିକିରେ ସେ ଚୁପ୍ ହୋଇ ନାହାନ୍ତି, ତାଂକର ଦୁଇଗୁଣ ବୟସର (ଗୋପବଂଧୁଂକୁ ସେତେବେଳେ ୨୬ ବର୍ଷ ଓ ମଧୁବାବୁଂକୁ ୫୬ ବର୍ଷ ବୟସ।) ତଥା ସମ୍ମିଳନୀ ଏବଂ ଓଡ଼ିଶା ଆଧୁନିକ ରାଜନୀତିର ଅଦ୍ୱିତୀୟ ନେତା ମଧୁସୂଦନ ଦାସଂକ ଦୃଷ୍ଟିଭଂଗୀକୁ ସମାଲୋଚନା କରି ପତ୍ର ଲେଖିଛନ୍ତି। ସବୁଠାରୁ ବଡ଼ କଥା, ମଧୁବାବୁ ପତ୍ର ପାଇ ନିଜ ଭୁଲ ସ୍ୱୀକାର ମଧ୍ୟ କରିଛନ୍ତି।

ନିଜ ଦୃଷ୍ଟିଭଂଗୀକୁ ଅଟଳ, ଅଚଳ ହୋଇ ରଖିବା, କାହାରି ଆଗରେ ହାର ନ ମାନିବାର ଯେଉଁ ବ୍ୟକ୍ତିତ୍ୱ, ତାହା ଗୋପବଂଧୁଂକଠାରେ ଆଉ ଏକ ଘଟଣାରେ ମଧ୍ୟ ଦେଖାଯାଇପାରେ। ସେତେବେଳେ (୧୮୯୩) ସେ ପୁରୀ ଜିଲ୍ଲା ସ୍କୁଲର ଛାତ୍ର। ଓଡ଼ିଆ ସାହିତ୍ୟରେ ରାଧାନାଥ ରାୟଙ୍କ ସ୍ୱୀକୃତି ପୂରା ଶୀର୍ଷରେ। ଆଧୁନିକତାର ଦ୍ୱାହି ଦେଇ ରାଧାନାଥ ଓଡ଼ିଆ ପରଂପରାରେ ସର୍ବସ୍ୱୀକୃତ କବି ଉପେଂଦ୍ର ଭଂଜଂକର କାବ୍ୟ ପ୍ରତିଭାକୁ ଅସ୍ୱୀକାର କରୁଥାନ୍ତି ବୋଲି ଅଭିଯୋଗ ହେଉଥାଏ । ତାଂକ ମତକୁ ସର୍ବମାନ୍ୟ କରିବା ସକାଶେ 'ବିଜୁଳି' ନାମରେ ଏକ ସାହିତ୍ୟ ପତ୍ରିକା ଆଗଭର ହୋଇଥାଏ। ଅନ୍ୟ ପକ୍ଷରେ 'ଇଂଦ୍ରଧନୁ' ନାମରେ ଆଉ ପତ୍ରିକା ପୁରାତନ ସାହିତ୍ୟ, ଛାଂଦ, ଅଳଂକାର ଓ ଶବ୍ଦ ବିନ୍ୟାସକୁ ସମର୍ଥନ କରି ଲେଖାମାନ ପ୍ରକାଶ କରୁଥାଏ। ଏମିତିରେ ଉଭୟ ପତ୍ରିକା

ଆଧୁନିକତାବାଦୀ; ମାତ୍ର ତା'ପାଇଁ ପରଂପରା ସହ କେଉଁ ସଂବଂଧ ରହିବ ସେ ନେଇ ମତଭେଦ ରହିଥାଏ। ପୁଣି, ଆଉ ଏକ ସ୍ତରରେ 'ବିଜୁଳି' ଓ 'ଇଂଦ୍ରଧନୁ' ଯଥାକ୍ରମେ ରାଧାନାଥ ଗୋଷ୍ଠୀ ଏବଂ ରାଧାନାଥ ବିରୋଧୀ ଗୋଷ୍ଠୀଙ୍କ ପାଇଁ ଦୁଇଟି ପୃଥକ ମଂଚ ହୋଇଥାନ୍ତି। ସ୍କୁଲ ଛାତ୍ର ଗୋପବଂଧୁ ତାଂକର ସେହି କୈଶୋରାବସ୍ଥାରେ ସୁଦ୍ଧା ବୁଝି ପାରିଥିଲେ ଯେ ଗୋଟାଏ ଜାତି ନିଜର ସାହିତ୍ୟ ପରଂପରାକୁ ପୁଂଜି କରି ତିଷ୍ଠେ। ନୂଆଁ ପରଂପରା ସୃଷ୍ଟି କରିବା ନାଁରେ ଜଣାକେତେ ସମସାମୟିକ ଲେଖକଙ୍କର (ଏହି କ୍ଷେତ୍ରରେ ରାଧାନାଥ ରାୟ) ପ୍ରାଚୀନ ପରଂପରାର କବି ଓ ଲେଖକଂକୁ (ଏହି କ୍ଷେତ୍ରରେ ଉପେଂଦ୍ର ଭଂଜ) ଅସ୍ୱୀକାର କରିବା କଦାପି ବିଜ୍ଞତା ହେବ ନାହିଁ। 'ଅତୀତ'ର ଭିତ୍ତି ଉପରେ 'ବର୍ତ୍ତମାନ'ର ସୃଷ୍ଟି। ଏହି ବିଶ୍ୱାସରେ ସେ 'ଇଂଦ୍ରଧନୁ'ରେ ଉପେଂଦ୍ର ଭଂଜ ବିରୋଧୀ ରାଧାନାଥଂକୁ ସମାଲୋଚନା କରି ଏକ କବିତା ପ୍ରକାଶ କଲେ। କିଶୋର ସ୍କୁଲ ଛାତ୍ରଟିର ଏହି ଯୁକ୍ତିଟିକୁ ସ୍କୁଲ ପରିଦର୍ଶକ ରାଧାନାଥ ଗ୍ରହଣ କରିପାରିଲେ ନାହିଁ। ଗୋପବଂଧୁଂକର ସାହସକୁ ପସଂଦ କରିବା ପରିବର୍ତ୍ତେ ବ୍ୟକ୍ତିଗତ ଅପମାନ ମନେ କରି ତାଂକୁ (ଗୋପବଂଧୁଂକୁ) ଦଣ୍ଡ ଦିଆଇଲେ। ଗୋପବଂଧୁ ଦଣ୍ଡ ଭୋଗ କଲେ ସତ, ମାତ୍ର ନିଜ ବିଶ୍ୱାସରୁ ଓହରିଲେ ନାହିଁ। ଉପେଂଦ୍ର ଭଂଜଂକୁ ନବଯୁଗର ଅର୍ଥାତ ଆଧୁନିକ ଓଡ଼ିଆ ଭାଷା-ସାହିତ୍ୟର ଆଧାରଶିଳା ରୂପରେ ସ୍ଥାପନା କରି ସେ ପରେ ଲେଖିଲେ :

ହେ କବି ଶେଖର ଭଂଜ ବୀରବର
କୋଟି ଉତ୍କଳ-ସନ୍ତାନେ
ଆଜି ନବଯୁଗେ ଧନ୍ୟ ଧନ୍ୟବାଦ
କରୁଛନ୍ତି ତୁଂଭ ନାମେ
ଗାଏ ତୁଂଭ ଗୀତ ସଭାରେ ପଣ୍ଡିତ
ପଥେ ପାନ୍ଥ ହୃଷ୍ଟମନା
ବିଲେ ବୋଲେ ଚଷା ଅନ୍ତଃପୁରେ ଯୋଷା
ନୃତ୍ୟରଂଗେ ବାରାଂଗନା
କାଳ ବଳିଆର ଆଣଇ ସଂସ୍କାର
ନବ ରୁଚି ନବଜ୍ଞାନ

କିନ୍ତୁ 'ବୈଦେହୀଶ ବିଳାସ' ପାଇବ
କାଳେ କାଳେ ଉଚ୍ଚ ସ୍ଥାନ।
(ଗୋପବନ୍ଧୁ ଦାସ, ଅବକାଶ ଚିନ୍ତା)

କେବଳ ପରଂପରାର କବି ବୋଲି ନୁହେଁ, ଉପେନ୍ଦ୍ର ଭଂଜଂକୁ ମିଳିଥିବା ଲୋକ ସ୍ୱୀକୃତିକୁ ଗୋପବଂଧୁ ଦେଖି ପାରିଛନ୍ତି, ପଣ୍ଡିତ ଠାରୁ ଆରଂଭ କରି ବିଲରେ କାମ କରୁଥିବା ଚଷା ଏବଂ ନୃତ୍ୟଶାଳାର ବାରାଂଗନା ସ୍ତରରେ ଉପେନ୍ଦ୍ର ଭଂଜୀୟ ଶୈଳୀର ଯେଉଁ ପ୍ରଭାବ ତାକୁ ଦେଖି ପାରିଛନ୍ତି। ଫଳରେ ଉପେନ୍ଦ୍ର ଭଂଜଂକ ପ୍ରଭାବ ଏବଂ ପୂର୍ବ ପରଂପରାର ଅନ୍ୟ କବି ଯଥା ଜଗନ୍ନାଥ ଦାସଂକ ପ୍ରଭାବ ତାଂକ ରଚ଼ନାକୁ ମଧ୍ୟ ସର୍ବଦା ପ୍ରଭାବିତ କରିଛି। 'କାରାକବିତା' ଠାରୁ ଆରଂଭ କରି 'ଅବକାଶ ଚିନ୍ତା' ଯାଏଁ ତାଂକର ପ୍ରତ୍ୟେକ କାବ୍ୟ କବିତାର ବିଶେଷତ୍ୱ ହେଉଛି ଅପୂର୍ବ ଛାଂଦ ଓ ସରଳ ଶବ୍ଦ ବିନ୍ୟାସ। ଉପେନ୍ଦ୍ର ଭଂଜଂକ ଭଳି ଗୋପବଂଧୁଂକ ରଚ଼ନାରେ ଶବ୍ଦ ଚାତୁରୀ ନାହିଁ, ମାତ୍ର ଛଂଦ ବାଦ ପଡ଼ିନାହିଁ। ଏହି ଦୃଷ୍ଟିରୁ ଦେଖିଲେ, ଗୋପବଂଧୁ ପରଂପରାର କବି ଭଂଜଂକ ଠାରୁ 'ଛାଂଦ' ନେଇଛନ୍ତି, ଶବ୍ଦ ଚାତୁରୀ ନେଇ ନାହାନ୍ତି। ଏହି କାରଣରୁ ବୋଧେ ତାଂକ ରଚ଼ନାର କେତେ ଯେ ପଦ ସାଧାରଣ ଜନଶ୍ରୁତିରେ ରହିଗଲାଣି, ତାହା କହି ହେବ ନାହିଁ। ଉଦାହରଣ ସ୍ୱରୂପ 'ମିଶୁ ମୋର ଦେହ ଏ ଦେଶ ମାଟିରେ, ଦେଶବାସୀ ଚାଲିଯାଆନ୍ତୁ ପିଠିରେ', 'ପଛଘୁଂଚ଼ା ନାହିଁ ବୀରର କାତକେ, ନ ମରେ ସେ କେଭେ ପରାଣ ଆତଂକେ', 'ପୂଣ୍ୟ ଜନ୍ମମାଟି ପୂଣ୍ୟ ଦେବାଳୟ, ଉଦ୍ଧରିବା ପାଇଁ କଲେ ତନୁକ୍ଷୟ', 'ମାନବ ଜନମ ହୁଅଇ ସଫଳ, ଏ ମହାଦୀକ୍ଷା କି ବୁଝିବ ଉତ୍କଳ', 'ନ ଅଟକେ କର୍ମ ନେତାର ଅଭାବେ, ଧର୍ମନାବ ଚଳେ ଧର୍ମର ପ୍ରଭାବେ', 'ବିଶେଷେ ଉତ୍କଳେ ନାହିଁ ପ୍ରୟୋଜନ, ଉତ୍କଳର ନେତା ନିଜେ ନାରାୟଣ', ବା 'ମାନବ ଜୀବନ ନୁହଇ କେବଳ ବର୍ଷ ମାସ ଦିନ ଦଣ୍ଡ, କର୍ମେ ଜିଏ ନର କର୍ମ ଏକା ତା'ର ଜୀବନର ମାନଦଣ୍ଡ'କୁ ନିଆଯାଇପାରେ।

ଗୋପବଂଧୁଂକୁ ଓଡ଼ିଶା ଜାଣେ ଜଣେ ରାଜନେତା ଭାବରେ। ମୂର୍ଦ୍ଧନି କବି ହେବାର ଅବସର ସେ ପାଇ ନାହାନ୍ତି। ସାମାଜିକ ଓ ରାଜନୀତିକ କାମର ଭିଡ଼ରେ କବିତା ଲେଖା ତାଂକ ପାଇଁ କାଣି ଏକ ବିଳାସିତା। ତେଣୁ, ସାମାଜିକ କାମକୁ ଆସିବା ଆଗରୁ ଓ ରାଜନୀତିକ ବଂଦୀ ଜୀବନ ନିର୍ବାହ କଲାବେଳେ

ଯାହା କବିତା ଲେଖିଛନ୍ତି। ମାତ୍ର ତାଂକର ଯେତେ କବିତା ଲୋକ ମୁହଁରେ ଶୁଣାଯାଏ, ମାନ୍ୟତା ପ୍ରାପ୍ତ କବିଂକର ମଧ୍ୟ ସେତେ କବିତା ହୁଏତ ଶୁଣା ଯାଉନଥିବ। ଏହା ତାଂକ ରଚନା ସଂଭାରର ସାମାଜିକ ପ୍ରାସଂଗିକତାକୁ ଦର୍ଶାଏ। ଅନ୍ୟଥା କବି ଭାବରେ ତାଂକୁ ଏତେ ମାତ୍ରାରେ ଲୋକସ୍ୱୀକୃତି ମିଳିନଥାନ୍ତା।

ସଂକୀର୍ଣ୍ଣ ଆଂଚଳିକତାର ବିରୋଧରେ ଗୋପବଂଧୁ ଯେଉଁ ଦୃଢ଼ ସଂଗ୍ରାମ ୧୯୦୪ ମସିହାରେ ମଧୁସୂଦନଂକୁ ପତ୍ର ଲେଖି ଆରଂଭ କରିଥିଲେ, ତାହା ପରବର୍ତ୍ତୀ ସମୟରେ ଊଣା ପଡ଼ିନାହିଁ। ସେ ଉତ୍କଳ ସମ୍ମିଳନୀକୁ ଓଡ଼ିଶା ପରିପ୍ରେକ୍ଷୀରେ ଏକ ସର୍ବମାନ୍ୟ ଜାତୀୟ ସଂଗଠନ ବୋଲି ମନେ କରନ୍ତି ବୋଲି ତହିଁରୁ କଦାପି ବାହାରି ଯାଇ ନୂଆଁ ଦଳ ଗଢ଼ି ନାହାନ୍ତି। ମାତ୍ର ତା' ଭିତରେ ରହି ଉଗ୍ର ଆଂଚଳିକତାକୁ ବିରୋଧ କରିଛନ୍ତି ଏବଂ ସମ୍ମିଳନୀ ସର୍ବଭାରତୀୟ ଚେତନାକୁ ପ୍ରମୁଖତା ଦେଉ ବୋଲି ବାରଂବାର ଯୁକ୍ତି କରିଛନ୍ତି। ଏହି ମର୍ମରେ ୧୯୦୯ରେ ସତ୍ୟବାଦୀ ବିଦ୍ୟାଳୟର ସ୍ଥାପନାକୁ ଦେଖା ଯାଇପାରେ। ସତ୍ୟବାଦୀ ଏକ ସ୍କୁଲ; ପରେ ଏହା ରିଲିଫ କେଂଦ୍ରର ବି କାମ କଲା; ଶାସନୀ ବ୍ରାହ୍ମଣ ପରିବେଶରେ ସତ୍ୟବାଦୀ ସାମାଜିକ ସଂସ୍କାର ପାଇଁ ଆଂଦୋଳନ କଲା; ଏବଂ ୧୯୧୪ରେ 'ସତ୍ୟବାଦୀ' ସାହିତ୍ୟ ପତ୍ର ଏବଂ ୧୯୧୯ରେ 'ସମାଜ'ର ପ୍ରତିଷ୍ଠା ପରେ ସତ୍ୟବାଦୀ ଓଡ଼ିଶାରେ ସାଂବାଦିକତା କ୍ଷେତ୍ରରେ ଏକ ନୂଆ ଯୁଗ ଆରଂଭ କଲା। ସାହିତ୍ୟରେ ସତ୍ୟବାଦୀ ଗୋଷ୍ଠୀ ଏକ ନୂଆଁ ଯୁଗର ଦୂତ ମନେ ହୁଅନ୍ତି। ଏସବୁ ସାଂଗରେ ଏକଥା ବି ସତ ଯେ 'ଉତ୍କଳ ସମ୍ମିଳନୀ' ଏବଂ ସମ୍ମିଳନୀର ରାଜା-ରାଜୁଡ଼ା ଏବଂ ଉଦାରବାଦୀ କର୍ତ୍ତୃତ୍ୱ ବାହାରେ ଏକ ସ୍ୱତନ୍ତ୍ର ଅନୁଷ୍ଠାନ ଭାବରେ ସତ୍ୟବାଦୀର ସ୍ଥାପନା ହୋଇଥିଲା। ଏହା ଆରଂଭରୁ ମହାଭାରତୀୟ ଚେତନାକୁ ଅଗ୍ରାଧିକାର ଦେଲା; ଓଡ଼ିଶାର ମଧ୍ୟବର୍ଗୀୟ ରାଜନୀତିରେ ସମୂହ ପାଇଁ ବ୍ୟକ୍ତିସ୍ୱାର୍ଥକୁ ବଳି ଦେବା ବାଂଛନୀୟ ବୋଲି ଧାରଣା ସୃଷ୍ଟି କଲା ଏବଂ ତା' ପାଇଁ ନୀଳକଣ୍ଠ, ଗୋଦାବରୀଶ, କୃପାସିଂଧୁଂକ ଭଳି ସେ ସମୟର ଉଚ୍ଚ ଶିକ୍ଷିତ ଯୁବକମାନଂକୁ ସ୍ୱଳ୍ପ ବେତନରେ ସ୍କୁଲ୍ ଓ ସମାଜ କାମ କରିବାକୁ ଆକୃଷ୍ଟ କଲା। ଶିକ୍ଷା କ୍ଷେତ୍ରରେ ମଧ୍ୟ ଏକ ଅଭିନବ ପ୍ରୟୋଗ କରି ସତ୍ୟବାଦୀ ସିଦ୍ଧ କରିଦେଲା ଯେ ମଣିଷ ଗଢ଼ିବା ପାଇଁ କେବେ ଉଚ୍ଚ କୋଠାଘର, ବହୁଳ ଖର୍ଚ୍ଚ ଆଦି ଅତିଆବଶ୍ୟକୀୟ ଉପାଦାନ ହୋଇ ନ ପାରନ୍ତି। ୧୯୦୯ରୁ ୧୯୨୬ ପର୍ଯ୍ୟନ୍ତ ଥିଲା ସତ୍ୟବାଦୀର ମୋଟ ଜୀବନ କାଳ। ତନ୍ମଧ୍ୟରେ

ସାତବର୍ଷରୁ ଊର୍ଦ୍ଧ୍ୱ ନୁହେଁ ତା'ର ସୁଖର ଦିନ। ତା' ସତ୍ତ୍ୱେ ଜାତୀୟତା ଆଂଦୋଳନ କୁହ, ବା ଶିକ୍ଷକତା କୁହ, ସମାଜ କାମ କୁହ, ବା ବିଜ୍ଞାନ ଗବେଷଣା କୁହ, କେତେ ଯେ କ୍ଷେତ୍ରରେ ତା'ର ଛାତ୍ର ଉତ୍କର୍ଷର ଶୀଖରକୁ ଯାଇଛନ୍ତି, ଆଦର୍ଶ ପ୍ରମାଣିତ ହୋଇଛନ୍ତି, ତାହା କହିହେବ ନାହିଁ। ସତ୍ୟବାଦୀ ପଛରେ ଗୋପବଂଧୁଂକର ଏ ଯେଉଁ ମଣିଷ ଗଢ଼ିବାର ସୁଚିନ୍ତିତ ଯୋଜନା, ବ୍ୟକ୍ତିକ ଉଦ୍ୟମକୁ ଏକ ସାମୂହିକ ଉଦ୍ୟମ ଏବଂ ଏକ ସାମାଜିକ ଆଂଦୋଳନରେ ପରିଣତ କରିବାର ଯେଉଁ ପ୍ରୟାସ ତାହା ପରବର୍ତ୍ତୀ ସମୟରେ, ଅର୍ଥାତ୍ ୧୯୨୦ ବେଳକୁ, କେବଳ ଉତ୍କଳ ସମ୍ମିଳନୀକୁ ମହାଭାରତୀୟ ଚେତନାରେ ଓତଃପ୍ରୋତଃ କରି ନାହିଁ, ସାଂଗରେ ଓଡ଼ିଶା ସମାଜକୁ ମଧ୍ୟ ଜାତୀୟ କଂଗ୍ରେସରେ ସମାହିତ କରି ଦେଇଛି। ସର୍ବଭାରତୀୟ ଚେତନା କଥା କହିଲା ବେଳେ ସେ ଆଉ ଏକା ପଡ଼ି ଯାଇନାହାନ୍ତି, ବରଂ ସର୍ବଭାରତୀୟ ଚେତନା ଉତ୍କଳ ରାଜନୀତିର ମୁଖ୍ୟ ସ୍ରୋତ ହୋଇଯାଇଛି।

ଗୋପବଂଧୁ ଓଡ଼ିଆ ଭାଷା ଭାଷୀ ଅଂଚଳର ଏକତ୍ରୀକରଣ ଦାବିର ବଡ଼ ପକ୍ଷଧର ଥିଲେ। ଓଡ଼ିଆ ଭାଷା-ସଂସ୍କୃତିର ଅସ୍ମିତା ପ୍ରଶ୍ନ ବି ତାଂକ ପାଇଁ କେବେ ଗୌଣ ନ ଥିଲା। ସେହି ଆଧାରରେ ଗଢ଼ି ଉଠୁଥିବା ଉତ୍କଳ ସମ୍ମିଳନୀ ଏବଂ ଓଡ଼ିଆ ଆଂଦୋଳନ ତାଂକ ପାଇଁ କଦାପି କମ ମହତ୍ତ୍ୱପୂର୍ଣ୍ଣ ନ ଥିଲା। ମାତ୍ର ଜାତୀୟ କଂଗ୍ରେସ ଓ ସର୍ବଭାରତୀୟ ଚେତନାକୁ ଯେଉଁମାନେ ଓଡ଼ିଆ ଆଂଦୋଳନ ନିମନ୍ତେ ଅନ୍ତରାୟ ବୋଲି ବିଚାର କରୁଥିଲେ, ସେମାନଂକର ସେ ବିରୋଧ କରୁଥିଲେ। ସେ ଜାଣିଥିଲେ ଯେ, ରାଜା-ରାଜୁଡ଼ା ବର୍ଗ ବ୍ରିଟିଶ ସରକାରର ଚକ୍ଷୁଶୂଳ ନ ହେବା ଆଶାରେ ଜାତୀୟ କଂଗ୍ରେସକୁ ବିରୋଧ କରନ୍ତି ଏବଂ ମଧୁସୂଦନ ଦାସ ଆଦି ପ୍ରଥମ ପିଢ଼ିର ଉଦାରବାଦୀ ନେତୃତ୍ୱ ଭାବରେ ସରକାରର ଅଧିକ ଦୂର ଯାଏଁ ବିରୋଧ କରିବାକୁ ସାହସ କରି ପାରିବେ ନାହିଁ; ତା' ସାଂଗରେ ରାଜା-ରାଜୁଡ଼ା ବର୍ଗ ବା ସାମନ୍ତବାଦୀ ବର୍ଗର କର୍ତ୍ତୃତ୍ୱରୁ ଆଧୁନିକ ରାଜନୀତିକୁ ସ୍ୱତନ୍ତ୍ର କରି ଗଢ଼ିବା ପାଇଁ ସେମାନେ ସାହସ ସୁଦ୍ଧା କରିପାରିବେ ନାହିଁ। ସେହି କାରଣରୁ ସାମନ୍ତବାଦୀ ଏବଂ ଉଦାରବାଦୀଂକ ମଧ୍ୟରେ ଅନ୍ତର୍ଦ୍ୱଂଦ୍ୱ ରହିଥିବା ସତ୍ତ୍ୱେ ଉଭୟେ ମିଳିତ ହୋଇ ଉତ୍କଳ ସମ୍ମିଳନୀରେ ଜାତୀୟ କଂଗ୍ରେସର ପ୍ରବେଶକୁ ବାରଣ କରନ୍ତି। ଏହି ଆଧାରରେ ଗୋପବଂଧୁ ଏବଂ ତାଂକ ନେତୃତ୍ୱରେ ପରିଚାଳିତ ସତ୍ୟବାଦୀ ଗୋଷ୍ଠୀ ଉତ୍କଳ ସମ୍ମିଳନୀ ଭିତରେ ରହି

ତାକୁ ନିଜ ବିଚାରରେ ଡାକିଛନ୍ତି। ୧୯୧୮ ମସିହାରେ ଯଦୁମଣି ମଂଗରାଜ ଆଦି କଟକର ଯୁବଗୋଷ୍ଠୀ ମଧୁସୂଦନଂକ ନେତୃତ୍ୱକୁ ବିରୋଧ କରି ଶେଷ ସମୟରେ ସମ୍ମିଳନୀ ମଣ୍ଡପରେ ସ୍ୱେଚ୍ଛାସେବୀ ଭାବରେ ସହଯୋଗ କରିବାକୁ ମନା କରିଦେଲେ। ସେତେବେଳେ ଗୋପବଂଧୁ ସତ୍ୟବାଦୀ ବିଦ୍ୟାଳୟରୁ ୪୦ ଜଣ ଛାତ୍ର ଏବଂ କେତେଜଣ ଶିକ୍ଷକଂକୁ ନେଇ ସମ୍ମିଳନୀରେ ସ୍ୱେଚ୍ଛାସେବୀ କାମ କଲେ। ଏହାଦ୍ୱାରା ସତ୍ୟବାଦୀ ଗୋଷ୍ଠୀର ସମ୍ମିଳନୀରେ ପ୍ରଭାବ ବଢ଼ିଲା ଏବଂ ସେହି ସୁଯୋଗର ଫାଏଦା ନେଇ ଗୋପବଂଧୁ ସମ୍ମିଳନୀ ମଂଚରେ ଦେଶମିଶ୍ରଣ ନିମନ୍ତେ ସରକାରଂକ ପାଖରେ ହାରି ଗୁହାରି ନ କରି ଜନ ଆଂଦୋଳନକୁ ମାଧ୍ୟମ କରିବାକୁ ଦାବି କଲେ। ଯେଉଁ ଜନ ଆଂଦୋଳନ ୧୯୧୭ ମସିହାରେ ବିହାରର ଚଂପାରନଠାରେ ନୀଳଚାଷୀମାନେ ଆରଂଭ କରିଥିଲେ, ୧୯୧୮ରେ ଗୁଜରାଟର ଖେଡ଼ାଠାରେ ଭାଗଚାଷୀମାନେ ଆରଂଭ କରିଥିଲେ ଏବଂ ଯେଉଁ ଜନ ଆଂଦୋଳନର ପୁରୋଭାଗରେ ରହି ମହାତ୍ମା ଗାଂଧି ଭାରତର ଜାତୀୟତାବାଦୀ ଆଂଦୋଳନରେ ଏକ ନୂଆଁ ଯୁଗର ଶୁଭାରଂଭ କରିଥିଲେ, ଓଡ଼ିଆ ଭାଷା-ଭାଷୀ ଅଂଚଳର ଏକତ୍ରୀକରଣ ନିମନ୍ତେ ମଧ୍ୟ ସେହିଭଳି ଜନ ଆଂଦୋଳନକୁ ଓଡ଼ିଶାର ଉଦାରବାଦୀ ଓ ସାମନ୍ତବାଦୀ ନେତୃତ୍ୱ ଧ୍ୟେୟ କରନ୍ତୁ ବୋଲି ଗୋପବଂଧୁ ଆହ୍ୱାନ ଦେଇଥିଲେ।

ଏହି ଘଟଣାର ପରବର୍ଷ, ଅର୍ଥାତ୍ ୧୯୧୯ ବେଳକୁ ଓଡ଼ିଆ ଆଦୋଳନର ନେତୃତ୍ୱ ସତ୍ୟବାଦୀ ଗୋଷ୍ଠୀ ହାତକୁ ଆସିଲା, କାରଣ ଉଦାରବାଦୀ ଓ ସାମନ୍ତବାଦୀ ଗୋଷ୍ଠୀ ଗୋପବଂଧୁଂକ ଆହ୍ୱାନକୁ ସ୍ୱୀକାର କରି ପାରିଲେ ନାହିଁ। ଏଥିରେ ଆଦୌ ବିଡ଼ମ୍ବନା ନାହିଁ ଯେ ନେତୃତ୍ୱ ନେଲା ପରେ ଗୋପବଂଧୁ ଓ ସତ୍ୟବାଦୀ ଗୋଷ୍ଠୀ ନିଜ ଆହ୍ୱାନକୁ ନିଜେ ସ୍ୱୀକାର କରି ୧୯୨୦ ମସିହା ଶେଷ ବେଳକୁ ଓଡ଼ିଶାରେ ଜନ ଆଂଦୋଳନର ଜୁଆର ବୁହାଇ ଦେଲେ। ଓଡ଼ିଶା ଅସହଯୋଗ ମନ୍ତ୍ରରେ ଦିକ୍ଷିତ ହେଲା। ଏବଂ ସରକାରୀ ସ୍ତରରେ ଓଡ଼ିଶା ସ୍ୱତନ୍ତ୍ରଭାଷା ଭାଷୀ ପ୍ରଦେଶ ଘୋଷିତ ହେବାର ୧୬ ବର୍ଷ ପୂର୍ବରୁ ଭାରତୀୟ ଜାତୀୟ କଂଗ୍ରେସ ଗୋପବଂଧୁଂକ ସଭାପତିତ୍ୱରେ ଉତ୍କଳ ପ୍ରଦେଶ କଂଗ୍ରେସ କମିଟୀ ଗଠନ କରି ଓଡ଼ିଆ ଭାଷା ଭିତ୍ତିକ ପ୍ରଦେଶ ଗଠନର ଦାବିକୁ ସ୍ୱୀକାର କରି ନେଲା। ଅର୍ଥାତ୍ ଉତ୍କଳ ସମ୍ମିଳନୀର ଆରଂଭରୁ ଦୀର୍ଘ ୧୭ ବର୍ଷ ଧରି ହାରି ଗୁହାରି କରି ପ୍ରଥମ ପିଢିର ଉଦାରବାଦୀ ନେତୃତ୍ୱ ଯେଉଁ ସାମାନ୍ୟ ମାତ୍ର

ସଫଳତା ପାଇ ନ ଥିଲା, ଗୋପବଂଧୁଂକ ଯୁବ ଜାତୀୟତାବାଦୀ ଗୋଷ୍ଠୀ ଜନ ଆଂଦୋଳନର ଡାକରା ଦେଇ ସେହି ସଫଳତା ଅତ୍ୟଳ୍ପ ସମୟରେ ପାଇଗଲା। ଏହା ଗୋପବଂଧୁଂକ ସୁପରିକଳ୍ପିତ ରଣନୀତିକୁ ତଥା ତା' ସାଂଗରେ ଜନ ଆଂଦୋଳନର ମହତ୍ତ୍ୱକୁ ଦର୍ଶାଏ। ଏହି ଘଟଣାକୁ ଆଧାର କରି ଗୋପବଂଧୁ ଦାସ ସମୟର ଚକକୁ ନିଜ ମତାଦର୍ଶ ଅନୁସାରେ ଘୁରାଇ ଦେଲେ ବୋଲି କହିବା ବୋଧହୁଏ ଆସ୍ଖଳନ ହେବ। ବରଂ ନିଜର ଜନସଂପର୍କ ଯୋଗୁଁ ସେ ବଦଳୁଥିବା ସମୟର ଚକକୁ ଚିହ୍ନି ପାରିଲେ ବୋଲି କହିବା ଉଚିତ ହେବ। ଆଦର୍ଶ ନେତା ସମୟକୁ ବଦଳେଇ ଦିଏ ନାହିଁ; ବଦଳୁଥିବା ସମୟକୁ ଦେଖିପାରେ !

୧୯୧୯ରେ ଗୋପବଂଧୁ ଉତ୍କଳ ସମ୍ମିଳନୀର ସଭାପତି ହେଲେ। ୧୫ ବର୍ଷ ପୂର୍ବେ ୧୯୦୪ ମସିହାରେ ଓଡ଼ିଆର ଯେଉଁ ସଂକୀର୍ଣ୍ଣ ପରିଭାଷା ତାଂକୁ ଖର୍ବିକୃତ କରିଥିଲା, ନିଜ ସଭାପତି ଅଭିଭାଷଣରେ ତା'ର ଏକ ବ୍ୟାପକ ପରିଭାଷା ଦେଇ କହିଲେ : କେହି କେହି ପୁଣି ଉତ୍କଳ ଓ ଓଡ଼ିଆ ମଧ୍ୟରେ ପାର୍ଥକ୍ୟ ଦେଖନ୍ତି। ଯଥାର୍ଥରେ ଏ ଉଭୟ ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ କିଂବା ରହିବା ଉଚିତ ନୁହେଁ। ବଂଗଳାର ହୁଅନ୍ତୁ ବା ପଂଜାବର ହୁଅନ୍ତୁ, ମାରବାଡ଼ର ହୁଅନ୍ତୁ ବା ମାଂଦ୍ରାଜର ହୁଅନ୍ତୁ, ହିଂଦୁ ହୁଅନ୍ତୁ ବା ମୁସଲମାନ ହୁଅନ୍ତୁ, ଆର୍ଯ୍ୟ ହୁଅନ୍ତୁ ବା ଆଦିମ ଅଧିବାସୀ ହୁଅନ୍ତୁ ଯେ ଉତ୍କଳ ଓ ଓଡ଼ିଶା ସଂଗେ ଆପଣାର ସମସ୍ତ ସ୍ୱତ୍ୱ ଓ ସ୍ୱାର୍ଥ ମିଳାଇ ଦେଇ ଅଛନ୍ତି, ଓଡ଼ିଶା ତାଂକର ଏବଂ ସେ ଓଡ଼ିଶାର। ଆଜିକାଲି ସମୟରେ ଏକ ସ୍ଥାନରେ ଯେ କେବଳ ଏକ ପ୍ରକାର ଲୋକ ରହିବେ ତାହା ଅସଂଭବ। ପୃଥିବୀର ଏପରି ସ୍ଥାନ ନାହିଁ ଯେଉଁଠାରେ ଭିନ୍ନ ଭିନ୍ନ ଜାତି ବା ସମାଜର ଲୋକ ଏକତ୍ର ବାସ କରୁନାହାନ୍ତି। ମାତ୍ର ସେମାନଂକର ସ୍ୱାର୍ଥର କେଂଦ୍ର ଏକ। ତେଣୁ କାଳକ୍ରମେ ଏକୀଭୂତ ହେବା ସେମାନଂକ ପକ୍ଷେ ସ୍ୱାଭାବିକ ଓ ଶ୍ରେୟସ୍କର। (୧୯୧୯ର ଉତ୍କଳ ସମ୍ମିଳନୀ ଅଭିଭାଷଣ)

ଗୋପବଂଧୁଂକ ଜାତୀୟତା କେବଳ ଭାରତର ଭୂଗୋଳିକ ପରିସୀମା ଯାଏଁ ସୀମିତ ନ ଥିଲା। ଉଦାର ମାନବିକତାର ବିକାଶ ହେଲା ତା'ର ଲକ୍ଷ୍ୟ। ତାଂକ ଭାଷାରେ, ମାନବ ଭଗବାନଂକର ସନ୍ତାନ ଏବଂ ଉଦାର ମାନବୀୟ ପୂର୍ଣ୍ଣପ୍ରାଣତା ପ୍ରତ୍ୟେକ ଜାତିର ଧ୍ୟେୟ। ଏହା ସ୍ଥିର ବିଶ୍ୱାସ ନ ହେଲେ ବ୍ୟକ୍ତି ବିଶେଷର

ସମତା ଏବଂ ଏକତା ସଂଭବପର ନୁହେଁ। ଏହା ନ ହେଲେ ଜାତୀୟତା ଆଭିଜାତ୍ୟରେ ପରିଣତ ହେବ। ବୋଲିବା ନିଷ୍ପ୍ରୟୋଜନ ଯେ କୌଣସି କାରଣରୁ ହେଉ ଓଡ଼ିଶାରେ ତଥା ଭାରତରେ ଆଭିଜାତ୍ୟର ପ୍ରଭାବ ଆମ୍ଭମାନଂକ ଜାତୀୟ ଶକ୍ତିକୁ ଅତ୍ୟନ୍ତ ହୀନବଳ କରିଅଛି। (୧୯୧୯ର ଉତ୍କଳ ସମ୍ମିଳନୀ ଅଭିଭାଷଣ)

ସାଂଗରେ ସେ ଏକଥା ମଧ୍ୟ କହିଛନ୍ତି ଯେ ବିଶ୍ୱ ସମାଜର ଉନ୍ନତି ପ୍ରତ୍ୟେକ ମଣିଷର ଲକ୍ଷ୍ୟ ହେବା ସତ୍ତ୍ୱେ ବ୍ୟକ୍ତିକୁ ଏକ କ୍ଷୁଦ୍ର ପରିଧି ଭିତରେ ରହି ହିଁ ସମାଜ କାମ କରିବାକୁ ପଡ଼େ। କାରଣ ବ୍ୟକ୍ତି ବିଶେଷର ଶକ୍ତି କ୍ଷୀଣ, ବାହୁ କ୍ଷୁଦ୍ର, ଦୃଷ୍ଟି ସଂକୀର୍ଣ୍ଣ, ଗତି ସୀମାବଦ୍ଧ। ବିଶ୍ୱଜନୀନ ସମଗ୍ର ସମାନ ବିଚାରର ସେବା ତା' ପକ୍ଷରେ ଅସଂଭବ। ସେ ଯେଉଁ ନିର୍ଦ୍ଧିଷ୍ଟ ଦେଶରେ ଏବଂ ନିର୍ଦ୍ଦିଷ୍ଟ ଜାତି ମଧ୍ୟରେ ବାସ କରନ୍ତି ସେହି ଦେଶ ତାଂକର ପୂଜାପୀଠ ଏବଂ ସେହି ଜାତିର ସେବାରେ ହିଁ ତାଂକର ମାନବ ସେବା। (୧୯୧୯ର ଉତ୍କଳ ସମ୍ମିଳନୀ ଅଭିଭାଷଣ।)

୧୯୨୦ ଦଶକରେ ସତ୍ୟବାଦୀ ଗୋଷ୍ଠୀ ଏବଂ ସମାଜ ବିଚାରର ଅନ୍ୟ ଜାତୀୟତାବାଦୀ ଗୋଷ୍ଠୀ, ଯଥା କଟକର ଭାରତୀ ମଂଦିର ଗୋଷ୍ଠୀ, ଇତ୍ୟାଦି ଓଡ଼ିଶା ରାଜନୀତିର ମୁଖ୍ୟ ସ୍ରୋତ ହେଲେ। ଅସହଯୋଗକୁ ମନ୍ତ୍ର କରି ଗୋପବଂଧୁ ଚୌଧୁରୀ, ବୀରକିଶୋର ଦାସ, ବାଂଛାନିଧି ମହାନ୍ତି, ନୀଳକଣ୍ଠ ଦାସ ଆଦି ସରକାରୀ ଚାକିରି ଛାଡ଼ିଲେ। ଲକ୍ଷ୍ମୀ ନାରାୟଣ ମିଶ୍ର, ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ, ବଂଶୀଧର ମିଶ୍ର ଇତ୍ୟାଦି ଛାତ୍ରମାନେ ସରକାରୀ ସ୍କୁଲ କଲେଜ ବର୍ଜନ କଲେ। ସତ୍ୟବାଦୀ ସ୍କୁଲ ସରକାରୀ ମାନ୍ୟତା ଓ ଅନୁଦାନକୁ ପ୍ରତ୍ୟାଖ୍ୟାନ କରି ଜାତୀୟ ଅନୁଷ୍ଠାନରେ ପରିଣତ ହେଲା। ନିଜେ ଗୋପବଂଧୁ ଦାସ ଅସହଯୋଗର ଆରଂଭର ବହୁ ପୂର୍ବରୁ ବ୍ରିଟିଶ ନ୍ୟାୟ ବ୍ୟବସ୍ଥାର ନିରର୍ଥକତାକୁ ଉପଲବ୍ଧି କରି ଓକିଲାତି ଛାଡ଼ିଥିଲେ। ୧୯୧୯ରେ ବିହାର ଓଡ଼ିଶା ପ୍ରାଦେଶିକ କାଉନସିଲର ସଭ୍ୟପଦ ମଧ୍ୟ ସେ ଏଥର ତ୍ୟାଗ କଲେ। ପରେ ଯେତେବେଳେ କଂଗ୍ରେସ ଦଳର ନେତା ଓ କର୍ମୀମାନଂକୁ କାଉନସିଲ ଓ ଏସେମ୍ବ୍ଲି ପାଇଁ ନିର୍ବାଚନ ଲଢ଼ିବାକୁ ଅନୁମତି ମିଳିଲା, ସେତେବେଳେ ମଧ୍ୟ ସେ ଆଉ କାଉନସିଲ ସଭ୍ୟପଦ ପାଇଁ ଇଚ୍ଛା ପ୍ରକାଶ କରି ନାହାନ୍ତି। ୧୯୧୭ ରୁ

୧୯୨୦ ମଧ୍ୟରେ କାଉନସିଲ ସଭ୍ୟ ରହି ଏବଂ ତା' ମାଧ୍ୟମରେ ସମାଜ କାମ କରିବାକୁ ପ୍ରୟାସ କରି ସେ ସ୍ଥିର ନିଶ୍ଚିତ ହୋଇଛନ୍ତି ଯେ କାଉନସିଲ (ବା ଏସେମ୍ବ୍ଲି) କେବେ ଜାତିର ଉନ୍ନତି କରିବ ନାହିଁ, ଦେଶକୁ ସ୍ୱାଧୀନତା ଆଣି ଦେବ ନାହିଁ। ଜନ ଆଂଦୋଳନ ହିଁ ଦେଶ ଓ ଜାତିର ସ୍ୱାଧୀନତା ଓ ଉନ୍ନତି ପାଇଁ ଏକମାତ୍ର ପନ୍ଥା। ମୃତ୍ୟୁ ପର୍ଯ୍ୟନ୍ତ ତାଂକର ଏହି ବିଚାର ବଦଳି ନ ଥିଲା।

ଚାକିରି କ୍ଷେତ୍ରରେ ହେଉ, ବା କାଉନସିଲ ସଭ୍ୟ ପଦ ଗ୍ରହଣ କରି ହେଉ, ବା ଆବେଦନ ପ୍ରତିବେଦନ ଜଣାଇ ହେଉ, ବିଦେଶୀ ସରକାର ସାଂଗରେ ସହଯୋଗର ପନ୍ଥାକୁ ଅର୍ଥାତ୍ ଉଦାରବାଦୀ ରାଜନୀତିର ପନ୍ଥାକୁ ଗୋପବଂଧୁଂକର ଏ ଯେଉଁ ବିରୋଧ, ତାହା ତାଂକର ପୂର୍ବସୂରୀ ମଧୁସୂଦନ ଦାସଂକୁ ଗ୍ରାହ୍ୟ ନ ଥିଲା। ୧୯୨୧ରେ ମଧୁସୂଦନ ଅସହଯୋଗର ଡାକରାକୁ ବିରୋଧ କଲେ; ଉତ୍କଳ ସମ୍ମିଳନୀର ଜାତୀୟ କଂଗ୍ରେସରେ ବିଲୟକୁ ମଧ୍ୟ ସେ ଗ୍ରହଣ କରିପାରିଲେ ନାହିଁ। ଏକ ପ୍ରକାରେ କହିଲେ ରାଜନୀତିକ ପନ୍ଥାକୁ ନେଇ ଉଭୟଂକ ମଧ୍ୟରେ ନାହିଁ ନ ଥିବା କଟୁତା। ସେହି ଦୃଷ୍ଟିରୁ ଗୋପବଂଧୁଂକ ପାଇଁ ମଧୁସୂଦନ ଦାସ ହେବା କଥା ସବୁଠାରୁ ବଡ଼ ପ୍ରତିଦ୍ୱଂଦୀ (ଓ ଶତ୍ରୁ)। ବୈଚାରିକ ଦୃଷ୍ଟିରୁ ଗୋପବଂଧୁ ତୀବ୍ରଭାବରେ ମଧୁସୂଦନଂକର ବିରୋଧ ମଧ୍ୟ କରିଛନ୍ତି। ୧୯୨୦ ମସିହା ଡିସେଂବର ମାସରେ ଆୟୋଜିତ ହେବାକୁ ଥିବା ଉତ୍କଳ ସମ୍ମିଳନୀର ଚକ୍ରଧରପୁର ଅଧିବେଶନରେ ମତପାର୍ଥକ୍ୟ ଯୋଗୁଁ ମଧୁବାବୁ ସଭାପତି ହେବାକୁ ଶେଷ ସମୟରେ ଅମଂଗ ହେଲେ। ଗୋପବଂଧୁ ସେତେବେଳେ କଟୂକ୍ତି କରି କହିଛନ୍ତି, 'ଦେଶ ମିଶ୍ରଣ ପ୍ରସଂଗକୁ ଓଡ଼ିଶାର ନେତାମାନେ ଜୀବନମରଣ ସମସ୍ୟା ବୋଲି କହିଥାନ୍ତି। ମାତ୍ର ଏହି ଗୁରୁତର ବିଷୟର ବିଚାରବେଳେ କେହି ସଭାପତି ହେବାକୁ ଅମଂଗ ହେବା ଅବଶ୍ୟ କ୍ଷୋଭର ବିଷୟ। ମାତ୍ର ଏତେ ଅଧୀର ହେବାର କୌଣସି କାରଣ ନାହିଁ। ସଭାପତି ବିନା ସମ୍ମିଳନୀ ବଂଦ ହେବ ନାହିଁ। ମଧୁବାବୁ ହୋଇଥାନ୍ତେ ଆଉ କେଉଁ ବାବୁ ହେବେ।' ଓଡ଼ିଶାର ଶୀର୍ଷସ୍ଥାନୀୟ ନେତାଂକ ପ୍ରତି ଏହି ଖେଦୋକ୍ତି କେତେ କଟୂକର ହୋଇଥିବ, ତାହା ଅନୁମାନ କରାଯାଇ ପାରେ ! ୧୯୨୧ରେ ଯେତେବେଳେ ମଧୁବାବୁ ବିହାର-ଓଡ଼ିଶାର ମନ୍ତ୍ରୀ ପଦ ଗ୍ରହଣ କଲେ, ତାଂକୁ ଅଭ୍ୟର୍ଥନା ଦେବା ସକାଶେ ଉଦାରବାଦୀ ଗୋଷ୍ଠୀ ପୁରୀ, କଟକ ଆଦି ସ୍ଥାନରେ ବିଭିନ୍ନ ସଭାର ଆୟୋଜନ କଲେ। ସେତେବେଳେ ଅସହଯୋଗର ସମୟ।

ମଧୁବାବୁଂକ ସରକାରଂକ ପ୍ରତି ସହଯୋଗ ପଛାକୁ ବା ଗୋପବଂଧୁ ଏବଂ ଅନ୍ୟ କଂଗ୍ରେସ ସମର୍ଥକ ସହ୍ୟ କରନ୍ତେ କେମିତି ? ତେଣୁ ପ୍ରତ୍ୟେକ ଅଭ୍ୟର୍ଥନା ସଭାକୁ ସେମାନେ ଭଣ୍ଡୁର କଲେ ଏବଂ ମଧୁବାବୁଂକ ରାଜନୈତିକ ବିଚାରର ନିରର୍ଥକତାକୁ ସିଦ୍ଧ କଲେ। 'ଅଶୀତି ପର ବୃଦ୍ଧ' ସରକାରୀ ଚାକିରି କରିବାକୁ ବାହାରିଲେ ବୋଲି ତୀବ୍ର କଟୂକ୍ତି କଲେ।

ମଧୁବାବୁଂକ ବିଚାର ପ୍ରତି ବିରୋଧ ସତ୍ତ୍ୱେ ଗୋପବଂଧୁ ସର୍ବଦା ତାଂକୁ ଜାତୀୟ କଂଗ୍ରେସ ଏବଂ ଉଗ୍ର ବିଦେଶୀ ସରକାର ବିରୋଧିତା ଆଡ଼କୁ ଆକୃଷ୍ଟ କରିବାକୁ ପ୍ରୟାସ କରିଛନ୍ତି। ଜାତିପ୍ରାଣ ମଧୁସୂଦନଂକ ମନରେ ସ୍ଥାପିତ କରିବାକୁ ଚେଷ୍ଟା କରିଛନ୍ତି ଯେ ଏହା ହିଁ ଜାତୀୟତା ନିମନ୍ତେ ପ୍ରକୃତ ବିକଳ୍ପ। ତେଣୁ, ୧୯୨୪ରେ ମଧୁବାବୁଂକର କଂଗ୍ରେସ ଦଳର ପ୍ରାଥମିକ ସଭ୍ୟ ହେବାରେ ତଥା ୧୯୨୫ରେ କଟକରେ ମହାତ୍ମା ଗାଂଧିଂକ ସହିତ ତାଂକର (ମଧୁବାବୁଂକର) ସାକ୍ଷାତ ହେବାରେ ସେ ସହାୟକ ହୋଇଛନ୍ତି।

୧୯୨୭ରେ ଯେତେବେଳେ ମଧୁବାବୁ କଂଗ୍ରେସ ପକ୍ଷରୁ କାଉନସିଲ ବା ଆସେମ୍ଲିକୁ ଛିଡ଼ା ହେବା ଲାଗି ଅଭିପ୍ରାୟ କଣାଇଲେ, ଗୋପବଂଧୁ ତାଂକର ପୂର୍ଣ୍ଣ ସମର୍ଥନ କରି ଲେଖିଥିଲେ, ଘଟନା ବିଶେଷରେ ତାଂକ (ମଧୁବାବୁଂକ) ସହିତ କାହାରି କାହାରି ମତଭେଦ ହେଲେ ସୁଦ୍ଧା ସେ ଯେ ଉତ୍କଳରେ ଜଣେ କୃତି ପୁରୁଷ, ନିଜବୁଦ୍ଧି, ବିବେକ, ବିଚାର ଅନୁସାରେ ଦେଶ ସେବାରେ ଆପଣାର ଶକ୍ତି, ସମୟ, ସଂପଦ ବ୍ୟୟ କରି ଆଜି ଏ ବୃଦ୍ଧ ବୟସରେ ପଥର ଭିକାରି ରୂପେ ଛିଡ଼ା ହୋଇଛନ୍ତି ଏହା କେହି ଅସ୍ୱୀକାର କରି ପାରିବେ ନାହିଁ। ମଧୁବାବୁ ସେ କାଳର ରାଜନୀତି କ୍ଷେତ୍ରର ଖେଳୁଆଡ଼। ଓଡ଼ିଶାରେ ସେତେବେଳେ ତାଂକର ସେପରି କେହି ସହକର୍ମୀ ନ ଥିଲେ। ସେ କାହାରିଠାରୁ ପରାମର୍ଶ ପାଇ ନାହାନ୍ତି କି ସମାଲୋଚନା ସହି ନାହାନ୍ତି। ସୁତରାଂ ଏକ ସିଂଘା ଷଣ୍ଢ ପରି ଯେଉଁଆଡ଼େ ଯେତେବେଳେ ବିଚାରିଛନ୍ତି ଠେଲି ପେଲି ଚାଲି ଯାଇଛନ୍ତି। ଭଲ କରିଛନ୍ତି, ଭୁଲ କରିଛନ୍ତି। ସେ ଯାହା କରନ୍ତୁ ଓଡ଼ିଶାର ନବଜାଗରଣ ମୂଳରେ ତାଂକ ଶକ୍ତି ଓ ସ୍ୱାର୍ଥ ତ୍ୟାଗ ବହୁ ପରିମାଣରେ ରହିଅଛି। ବହୁକାଳ ଏକାଦିକ୍ରମେ ଗୋଟିଏ ରୀତି ଓ ଢଂଗରେ ଚାଲି ଆସି ଦେଶର ବର୍ତ୍ତମାନ ସାଧାରଣ ଜୀବନର ପରିବର୍ତ୍ତନ ଅବସ୍ଥାନୁସାରେ ସେ ନିଜର ଅଭ୍ୟାସ, ବ୍ୟବହାର ଓ ନୀତି ହଠାତ ବଦଳାଇ ନ ପାରିବାରେ କିଛି ଆଶ୍ଚର୍ଯ୍ୟ ନାହିଁ। ସେଥିଲାଗି ଆମ୍ଭମାନଂକର ତାଂକ ପ୍ରତି

କେବେହେଲେ ଭକ୍ତି ଉଣା ହୋଇନାହିଁ। (ସମାଜ ୨୪ ଏପ୍ରିଲ ୧୯୨୭)

ଯେଉଁମାନଂକ ପ୍ରଭାବ ଯୋଗୁଁ ମଧୁବାବୁ ପ୍ରାୟତଃ ବିଚାର ସ୍ତରରେ ଓଡ଼ିଶା କେଂଦ୍ରିକ ହୋଇଯାଇଥିଲେ, ସେମାନେ ହେଲେ ଓଡ଼ିଶାର ରାଜା-ଜମିଦାର ଗୋଷ୍ଠୀ। ଆଧୁନିକ ଶିକ୍ଷିତ ମଧବର୍ଗୀୟ ବୁଦ୍ଧିଜୀବୀର ଓଡ଼ିଶାରେ ଯେଉଁ ଅଭାବ; ସେମାନଂକ ମଧ୍ୟରୁ ଅନେକ ଶିକ୍ଷାଲାଭ କରି ତାକୁ ପୂରଣ କରିବାର ମିଥ୍ୟା ଭ୍ରମ ସୃଷ୍ଟି କରିଥିଲେ। ଫଳତଃ ମଧୁବାବୁ ଓଡ଼ିଶାର ପ୍ରଗତି ପାଇଁ ସେମାନଂକ ଉପରେ ବସ୍ତୁତଃ ଆଶ୍ରିତ ରହିଥିଲେ। ମାତ୍ର ଜାତୀୟତାର ପ୍ରଗତିରେ ଏହି ରାଜନ୍ୟ ବର୍ଗ ଏକ ବଡ଼ ଅନ୍ତରାୟ, ତାହା ଗୋପବଂଧୁ ଅନୁଭବ କରି ପାରିଥିଲେ। ବର୍ଗ ସ୍ୱାର୍ଥ ଦୃଷ୍ଟିରୁ ସେମାନେ ରାଜନୀତିରେ ଜନସାଧାରଣଂକ ସଂପୃକ୍ତିକୁ ସ୍ୱାଗତ କରି ପାରିବେ ନାହିଁ। ଇଂରେଜ ସରକାରର ବିରୋଧୀ ହେବା ଭୟରେ ସେମାନେ ସର୍ବଭାରତୀୟ ଚେତନାରୁ ଦୂରରେ ରହିବେ। ତେଣୁ, ଦେଶ ମିଶ୍ରଣ ପ୍ରଶ୍ନକୁ ପ୍ରାଥମିକତା ଦେବା ଆଳରେ ଜାତୀୟତାର ସ୍ରୋତକୁ ସଂକୀର୍ଣ୍ଣ ଆଂଚଳିକତାର ବଶବର୍ତ୍ତୀ କରିବା ସେମାନଂକର ଲକ୍ଷ୍ୟ। ସରକାରର ଅନୁଗତ ସାଜିବା ସେମାନଂକ ଧର୍ମ। ଅନ୍ୟଥା ସେମାନଂକର ପ୍ରବଳ ପ୍ରଜା ଉତ୍ପୀଡ଼ନ କାର୍ଯ୍ୟ ସରକାରୀ ସୁରକ୍ଷା ପାଇବ ନାହିଁ। ଏଥିପାଇଁ ଗୋପବଂଧୁ ଅନେକ ଥର ରାଜା-ଜମିଦାର ମାନଂକୁ ହିଂସ୍ର 'ବାଜପକ୍ଷୀ' ଏବଂ ପ୍ରଜାମାନଂକୁ ନିରୀହ 'ପ୍ରଜା' ବୋଲି କହୁଥିଲେ। ପ୍ରଜା ଉତ୍ପୀଡ଼ନ ଆଗ ବଂଦ କରିବାକୁ ହେବ ବୋଲି ସେ ଚେତାବନୀ ଦେଇଥିଲେ। ଜାତୀୟତା ମାନେ ଏକ ଥୋକ ଲୋକ ସମୂହ ଏବଂ ସେମାନଂକର ସାମୂହିକ ସ୍ୱାର୍ଥ ଏବଂ ସେହି ସ୍ୱାର୍ଥର ବିରୋଧକୁ ଜାତୀୟତାର ବିରୋଧ ବୋଲି ସେ କହୁଥିଲେ। ରାଜା-ଜମିଦାରଂକ ପ୍ରଜା ବିରୋଧୀ ଆଚରଣ ଏବଂ ଇଂରେଜ ସରକାରର ସାମ୍ରାଜ୍ୟବାଦୀ ଚରିତ୍ର ମଧ୍ୟରେ ରହିଥିବା ନିବିଡ଼ ସଂବଂଧକୁ ସେ ପର୍ଦ୍ଦାଫାଶ କରିଛନ୍ତି ଏବଂ ଉଭୟ ସରକାର ଓ ଦେଶୀୟ ରାଜା-ଜମିଦାର ଗୋଷ୍ଠୀ ବିରୁଦ୍ଧରେ ସମାନ ପ୍ରାଥମିକତା ଦେଇ ଏକଜୁଟ ହେବାକୁ, ଅର୍ଥାତ୍ ମହାତ୍ମା ଗାଂଧିଂକ ନେତୃତ୍ୱରେ ଅସହଯୋଗ କରିବାକୁ, ଲୋକଂକୁ ଆହ୍ୱାନ କରିଛନ୍ତି। ଏହି ପରିପ୍ରେକ୍ଷୀରେ ସେ ଲେଖିଥିଲେ :

ଇଂରେଜ ସରକାରଠାରୁ ଯେ ଢଂଗ ଶିଖୁଛନ୍ତି, ଜମିଦାରମାନେ ସେହିପରି କରୁଛନ୍ତି। ଧୋଇ ମରୁଡ଼ିରେ ପ୍ରଜା ଉଚ୍ଛନ୍ନ ହେଲେ ସୁଦ୍ଧା ସରକାରଂକର ଖଜଣା

ଛାଡ଼ ନାହିଁ। ଜମିଦାରମାନେ ଛାଡ଼ିବେ କିପରି ? ଇଂରେଜ ସରକାର ବାଟଘାଟରେ ଟିକସ ବସାଇ ଯେପରି ଆଦାୟ କରୁଛନ୍ତି, ଜମିଦାରମାନେ ମଧ୍ୟ ସେହିପରି ଫନ୍ଦିରେ ପ୍ରଜାଙ୍କୁ ଶୋଷୁଛନ୍ତି। ରାଜା ବା ଜମିଦାର ଦିଲ୍ଲୀ ଦରବାରକୁ ଯିବେ, ଯୁଦ୍ଧରେ ସରକାରଙ୍କୁ ଟଙ୍କା ସାହାଯ୍ୟ କରିବେ, ସେ ସବୁ-ଗରିବ ପ୍ରଜାଙ୍କଠାରୁ ଆଦାୟ ହେବ। କାହାଘରେ ସୋରିଷ ଫୁଟିଲେ ସରକାରଙ୍କୁ ତାହା ଜଣା ଯାଉଛି, ଜମିଦାରଙ୍କ ଏ କାଣ୍ଡ କାରଖାନା କି ତାଙ୍କୁ ଗୋଚର ହେଉ ନାହିଁ ? ଏ ସବୁ କ୍ଷେତ୍ରରେ ଚେଇଁ ଶୋଇବାକୁ ହୁଏ। ଏ ରାଜତ୍ୱରେ ଅଧିକାଂଶ ଜମିଦାରଙ୍କ ବ୍ୟବହାର ଯେପରି ହୋଇଛି, ସେଥିରେ ପ୍ରଜାମାନଙ୍କର ସେମାନଙ୍କଠାରୁ ସ୍ନେହ ଆଦର ଆଦୌ ନାହିଁ। ପ୍ରଜାମାନେ ମୂର୍ଖ, ଦରିଦ୍ର; କେବଳ ଜୋର କୁଲମକୁ ଡରି କରି ଥାଆନ୍ତି। ଅତ୍ୟାଚାର ଭୋଗିଲେ ସୁଦ୍ଧା ପ୍ରତିକାର ପାଇବାର ଉପାୟ ନାହିଁ। ଇଂରେଜ ବିଚାର ଅଦାଲତରେ ନ୍ୟାୟ ବିକା ହୁଏ। ଯାହାର ଟଙ୍କା ଅଛି ଏବଂ କ୍ଷମତା ଅଛି ନ୍ୟାୟ, ଧର୍ମ, ସତ୍ୟ, ସବୁ ତାହାରି ପକ୍ଷରେ। ଫଳରେ ଗରିବ ପ୍ରଜା କାନମୁଣ୍ଡା ଆଉଁସି ଘରେ ରହେ। ଜମିଦାର ବା ମହାଜନ-ସର୍ବସ୍ୱ ନେଇଗଲେ ବି ତାହାର କହିବାକୁ ଜୋର ନାହିଁ। ଏହି ପ୍ରକାର ଦୁଃଖ ଦୁର୍ଗତି ଏ ରାଜତ୍ୱରେ ବହୁଦିନ ଭୋଗି ଭୋଗି ଭାରତୀୟ ପ୍ରଜାଙ୍କର ଇଂରେଜ ସରକାରଙ୍କଠାରେ ବିଶ୍ୱାସ ନାହିଁ କି ଆପଣା ରାଜା ବା ଜମିଦାର ଉପରେ ବିଶ୍ୱାସ ନାହିଁ। (ସମାଜ, ୧୨ ମାର୍ଚ୍ଚ ୧୯୨୧)

ପ୍ରଜା ଉତ୍ପୀଡ଼କ ରାଜା-ଜମିଦାରଙ୍କ ପ୍ରତି ବିରୋଧ ଗୋପବନ୍ଧୁଙ୍କୁ କନିକା ପ୍ରଜା ଆନ୍ଦୋଳନରେ ସଂପୃକ୍ତ କରିଛି। ସେଥିପାଇଁ ୧୯୨୨ରେ ସେ ଦୁଇବର୍ଷ ଜେଲଦଣ୍ଡ ଭୋଗିଛନ୍ତି। କେବଳ କନିକା କାହିଁକି, ୧୯୨୭-୨୮ର ନୀଳଗିରି ପ୍ରଜା ଆନ୍ଦୋଳନ ହେଉ ବା ନିଜ ଜୀବଦଶାରେ ସଂଘଟିତ ଅନ୍ୟ ଦେଶୀୟ ପ୍ରଜା ଆନ୍ଦୋଳନ ହେଉ, ସବୁଠାରେ ସେ ମୁହଁ ଖୋଲି ରାଜା-ଜମିଦାରଙ୍କୁ ବିରୋଧ କରିଛନ୍ତି, ନିରୀହ ପ୍ରଜାର ପକ୍ଷ ନେଇଛନ୍ତି। ଗଡ଼ଜାତି ଅତ୍ୟାଚାର ପଛରେ ଇଂରେଜ ସରକାରର ହାତ ଥିବା କଥାକୁ ସେ ଆହୁରି ସୁସ୍ପଷ୍ଟ କରି ଲେଖିଥିଲେ : କାହାରି ମୁହଁରୁ (ଗଡ଼ଜାତ ଅତ୍ୟାଚାର କଥା) ବାହାରିଲେ ଦେଶୀୟ ରାଜ୍ୟର ପ୍ରସଂଗ ବୋଲି ତାହା ବନ୍ଦ ହୋଇଯିବ। ଓଡ଼ିଶାର କୌଣସି ଖବରକାଗଜରେ ବାହାରିଲେ ହୁଏତ ସେ କାଗଜ ଗଡ଼ଜାତକୁ ଯିବା ବନ୍ଦ ହୋଇଯିବ। ଫଳରେ

ଓଡ଼ିଶାର ଗଡ଼ଜାତ ରାଜ୍ୟମାନ ଦୁନିଆର ବାହାରେ। ସେଠାର କାଣ୍ଡ କାରଖାନା ଶୁଣିଲେ ଲୋକ କାନରେ ହାତ ଦେବ। ରକ୍ତ ମାଂସ ଦେହ ଧରି ଅନେକ ସମୟରେ ମନୁଷ୍ୟ ତାହା ସହିବା ଅସଂଭବ। ଅନେକ ଗଡ଼ଜାତରେ ଲୋକ ମନୁଷ୍ୟ ହୋଇ ନାହାନ୍ତି। ଅନ୍ୟାୟ ଅତ୍ୟାଚାର ସହି ସହି ସେମାନେ ପଶୁଠାରୁ ହୀନ ହୋଇଗଲେଣି। ବେଳେ ବେଳେ ଗଡ଼ଜାତର ଯେ ମେଳି ହୁଏ କର୍ତ୍ତାମାନେ ତହିଁର କାରଣ ଯାହା ବୋଲି କହନ୍ତୁ, ନାନା ପ୍ରକାର ଅନ୍ୟାୟ ଉତ୍ପୀଡ଼ନ ଯେ ମୂଳରେ ଥାଏ, ତାହା କିଏ ନ ଜାଣେ ? (ସମାଜ, ୨୨ ଜାନୁଆରି ୧୯୨୧)

ଏ ସବୁ ସତ୍ତ୍ୱେ ଗୋପବଂଧୁ ଭଲଭାବେ ବୁଝିଥିଲେ ଯେ ସ୍ୱାଧୀନତା ସଂଗ୍ରାମ ହେଲା ଏକ ସବୁ ବର୍ଗର ସଂଗ୍ରାମ। ତହିଁରୁ କୌଣସି ଏକ ନିର୍ଦ୍ଦିଷ୍ଟ ବର୍ଗକୁ ଇଂରେଜ ଉପନିବେଶବାଦର ଗୋଡ଼ାଣିଆ ବୋଲି ଚିରଦିନ ପାଇଁ ଶତ୍ରୁ ପକ୍ଷ ଆଡ଼କୁ ଠେଲି ଦେଲେ ଶତ୍ରୁପକ୍ଷର ବଳ ବଢ଼ିଯିବ। ରାଜା-ଜମିଦାର ବର୍ଗର ସରକାର ପ୍ରତି ସମର୍ଥନକୁ ଅନ୍ତିମ ସତ୍ୟ ଭାବରେ ସ୍ୱୀକାର ନ କରି ବରଂ ସେହି ବର୍ଗକୁ ଜାତୀୟତା ଆଂଦୋଳନ ପକ୍ଷ ଆଡ଼କୁ ଆକୃଷ୍ଟ କରିବା ପାଇଁ ପ୍ରୟାସ କରାଯିବା କଥା। ଏହି ଆଧାରରେ ଗୋପବଂଧୁ ତାଂକର ଏକାଧିକ ଲେଖାରେ ରାଜନ୍ୟବର୍ଗକୁ କଂଗ୍ରେସର ଯେଉଁ ଦିଗଟି ସର୍ବମାନ୍ୟ, ଯଥା ସ୍ୱଦେଶୀ, ଖଦି, ଶିକ୍ଷା ବିକାଶ, ଆଦି, ଅନ୍ତତଃ ତା'ର ପ୍ରସାର କରିବାକୁ ଅନୁରୋଧ କରିଛନ୍ତି। ଜାତୀୟ ଚେତନା ଆଗରେ ଅଯଥା ବାଧକ ନ ସାଜିବାକୁ ପରାମର୍ଶ ଦେଇଛନ୍ତି।

ଅସହଯୋଗ ଆଂଦୋଳନରେ ଯଥାଶକ୍ତି ସହଯୋଗ କରିବାକୁ ଆହ୍ୱାନ କରି 'ରାଜା, ଜମିଦାର, ବୃଥା ଭୟ ଛାଡ଼' ଶୀର୍ଷକ ଏକ ଲେଖାରେ ଗୋପବଂଧୁ ଲେଖିଥିଲେ, ଅସହଯୋଗ ଭିତରେ ଏପରି କେତେ କାର୍ଯ୍ୟ ଅଛି, ଯହିଁରେ କାହାରି କୌଣସି ପ୍ରକାର ଆପତ୍ତି ହେବାର କାରଣ ନାହିଁ। ବରଂ ସକଳ ଶ୍ରେଣୀ ଏବଂ ସକଳ ଦଳ ଲୋକଂକର ସହାୟତା ହେବା ଉଚିତ। କଂଗ୍ରେସର ମେଂବର ହେବା ବା ତିଳକ ସ୍ୱରାଜ୍ୟ ଫଣ୍ଡକୁ ଚାଂଦା ଦେବା ତ ବ୍ୟକ୍ତି ବିଶେଷର ଇଚ୍ଛାଧୀନ। କେହି ପ୍ରଜା ମେଂବର ହେଲେ ବା ତିଳକ ସ୍ୱରାଜ୍ୟ ପାଣ୍ଠିକି କିଛି ଦାନ କଲେ ସେଥିରେ ରାଜା ବା ଜମିଦାରଂକ କିଛି ଯାଏ ଆସେ ନାହିଁ। କୌଣସି ବୁଝିବା ଶୁଝିବା ଜମିଦାର ଏ ସଂପର୍କରେ କଥା କହିବା ଉଚିତ ନୁହେଁ। ଏହା ଛଡ଼ା ନିଶା ନିବାରଣ, ସ୍ୱଦେଶୀ ପ୍ରଚାର ଏବଂ ଗ୍ରାମ ପଂଚାୟତ ସ୍ଥାପନରେ ରାଜା

ଜମିଦାରମାନେ ପ୍ରଜାମାନଂକୁ ବୁଝାଇ ସମଝାଇ ପ୍ରବର୍ତ୍ତାଇବା ଉଚିତ୍। ଏ ସବୁ କାର୍ଯ୍ୟରେ ଅସହଯୋଗୀ ସହଯୋଗୀର ଭେଦାଭେଦ ରହିବା ଉଚିତ୍ ନୁହେଁ। (ସମାଜ, ୨୦ ଅଗଷ୍ଟ ୧୯୨୧)

୧୯୨୮ ମସିହାରେ ନୀଳଗିରିରେ ଗଡ଼ଜାତ ଅତ୍ୟାଚାରର ପରିମାଣ ଏତେ ବୃଦ୍ଧି ପାଇଲା ଯେ ସହସ୍ରାଧିକ ପ୍ରଜା ବ୍ରିଟିଶ ଭାରତ ଅର୍ଥାତ୍ ବାଲେଶ୍ୱରରେ, କଂଗ୍ରେସ ଅଫିସ୍‌ରେ ଆସି ଆଶ୍ରୟ ନେଲେ। ଗୋପବଂଧୁ ପ୍ରଜାମାନଂକ ସମର୍ଥନରେ ପକ୍ଷ ନେଲେ, ଏବଂ ଇଂରେଜ ସରକାରଠାରୁ ସୁରକ୍ଷା ପାଇ ରାଜା-ଜମିଦାର ମାନେ ରାଜାଂକ ଉପରେ ଏପରି ଅସହ୍ୟ ଅତ୍ୟାଚାର କରୁଛନ୍ତି ବୋଲି ଅଭିଯୋଗ କଲେ। ସାଂଗରେ ଦେଶର ଏହି ଘଡ଼ିସଂଧି ମୂହୁର୍ତ୍ତରେ ଯେତେବେଳେ ଜାତୀୟତା ସଂଗ୍ରାମ ଶୀର୍ଷରେ, ସେତେବେଳେ ରାଜନ୍ୟ ବର୍ଗ ସରକାର ବଦଳରେ ଲୋକଂକ ପକ୍ଷ ନିଅନ୍ତୁ ବୋଲି ପରାମର୍ଶ ଦେଲେ। ଅନ୍ୟଥା ସେମାନଂକ (ରାଜନ୍ୟ ବର୍ଗଂକ) ସ୍ୱାର୍ଥ ଆହତ ହେବ ବୋଲି ସେ ସତର୍କବାଣୀ ଶୁଣାଇଲେ। 'ଦେଶୀୟ ରାଜା ମହାରାଜାମାନେ ପ୍ରଜାମାନଂକ ପ୍ରତି ଏପରି ଦୁର୍ବ୍ୟବହାର କରିବା ଦ୍ୱାରା ଆପଣା ସ୍ୱାର୍ଥ ଆପଣ ହାତରେ ନଷ୍ଟ କରୁଛନ୍ତି ଏହା ବୁଝିପାରୁନାହାନ୍ତି। ଆଜିକାଲି ସମୟର ଗତି ବଦଳି ଗଲାଣି। ରାଜଶକ୍ତିର ସେ ପୂର୍ବ ଅପ୍ରତିହତ କ୍ଷମତା ନାହିଁ। କେତେ ପ୍ରବଳ ପରାକ୍ରମୀ ରାଜଶକ୍ତି ପୃଥିବୀରେ ଲୋପ ପାଇଲେଣି। ପ୍ରଜାମାନେ ଅତ୍ୟାଚାର ସହି ସହି କ୍ରମେ ଉଠୁଛନ୍ତି। ଅତି ଅନ୍ୟାୟ ଦେବତାକୁ ପାର ନାହିଁ ବୋଲି ଗୋଟିଏ କଥା ଅଛି। ପୃଥିବୀରେ ରାଜଶକ୍ତିର ଏବେ କ୍ରମେ ସେହି ଦଶା ହେଉଅଛି।' (ସମାଜ, ୨୨ ଫେବୃଆରି ୧୯୨୮)

ଆଧୁନିକ ଓଡ଼ିଶାର ସାମାଜିକ ପରଂପରାରେ ବନ୍ୟା, ଦୁର୍ଭିକ୍ଷ ଓ ମରୁଡ଼ି ବେଳେ ରିଲିଫ ବଣ୍ଟନକୁ ଗୋପବଂଧୁ ଦାସ ଯେଉଁ ରାଜନୈତିକ ସ୍ୱରୂପ ଦେଇଛନ୍ତି, ତାକୁ ନିଶ୍ଚିତ ରୂପେ ଅନନ୍ୟ ବୋଲି କୁହାଯାଇପାରେ। ତାଂକ ପୂର୍ବରୁ ପ୍ରାକୃତିକ ବିପର୍ଯ୍ୟୟ ବେଳେ ଯେଉଁ କିଂଚିତ ସାହାଯ୍ୟ ବେସରକାରୀ ସ୍ତରରେ ଦିଆଯାଉଥିଲା, ତାହା ଦୟା ଓ କରୁଣାଭାବ ଜର୍ଜରିତ ରହୁଥିଲା। ବିପର୍ଯ୍ୟୟ ଗ୍ରସ୍ତ ବ୍ୟକ୍ତିର ସ୍ୱାଭିମାନ ପ୍ରତି ସାହାଯ୍ୟକାରୀ ଯଥେଷ୍ଟ ସଂବେଦନଶୀଳ ରହୁ ନ ଥିଲେ। ଅନ୍ୟ ପକ୍ଷରେ ଉପନିବେଶବାଦୀ ଇଂରେଜ ସରକାର ଏହି ଜନମଂଗଳ

କାର୍ଯ୍ୟକୁ ନିଜର କର୍ତ୍ତବ୍ୟ ପରିସରଭୁକ୍ତ କରୁ ନ ଥିଲେ। ଏହାର ପରିଣାମ ସ୍ୱରୂପ ୧୮୬୫-୬୬ ମସିହାରେ ନଅଂକ ଦୁର୍ଭିକ୍ଷରେ ଲକ୍ଷ ଲକ୍ଷ ଲୋକଂକର ପ୍ରାଣହାନି ଘଟିଥିଲା। ଏହି ଉଭୟ ସ୍ଥିତିର ଏକ ବିକଳ୍ପ ରୂପେ ଗୋପବଂଧୁ ଦାସଂକର ରିଲିଫ ବଣ୍ଟନକୁ ଦେଖାଯାଇପାରେ। ଉନବିଂଶ ଶତାବ୍ଦୀର ଶେଷ ଦଶକରେ ପୁରୀ ଜିଲ୍ଲା ସ୍କୁଲ୍ ଛାତ୍ର ଗୋପବଂଧୁ ନିଜର କେତେଜଣ ବଂଧୁଂକ ସାଂଗରେ ମିଶି 'ପୁରୀ ସେବା ସମିତି' ନାମରେ ଏକ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଗଢ଼ିଥିଲେ ଏବଂ ଅସହାୟ ବ୍ୟକ୍ତିକୁ ସେବା ପ୍ରଦାନ କରୁଥିଲେ। ପରବର୍ତ୍ତୀ ସମୟରେ ସେହି ମାନବବାଦୀ ଭାବ ହିଁ ତାଂକ ରିଲିଫ କାମରେ ପ୍ରତିଫଳିତ ହେଉଥିଲା। ଜୀବନସାରା ସେ ବନ୍ୟା, ଦୁର୍ଭିକ୍ଷ ବେଳେ ରିଲିଫ ବାଣ୍ଟିବା କାମକୁ ପ୍ରାଧାନ୍ୟ ଦେଇଛନ୍ତି, କାରଣ ଏହା ତାଂକୁ ମାନବତାକୁ ଚିହ୍ନିବାକୁ ଅବସର ଦେଇଛି। କୌଣସି ଦୟାଭାବ କିଂବା ବିଜ୍ଞାପନ ଭାବ ନେଇ ନୁହେଁ, ବରଂ ଶୁଦ୍ଧ ଜନସେବା ଓ ସହମର୍ମିତା ତା' ପଛରେ ପ୍ରମୁଖ ଉଦ୍ଦେଶ୍ୟ ହୋଇଛି। ରିଲିଫ୍ ବଣ୍ଟନର ଏ ଯେଉଁ ସାମାଜିକ ପରଂପରା ଗୋପବଂଧୁଂକ ସମୟରେ ଆରଂଭ ହୋଇଛି, ତାହାର ମହତ୍ତ୍ୱ ପରବର୍ତ୍ତୀ ସମୟରେ ମଧ୍ୟ ଉଣା ପଡ଼ି ନାହିଁ। ରାଜନୈତିକ ଲାଭ-କ୍ଷତିର ନିକିତିରେ ସେହି ସମଭାବନ୍ନତାକୁ ମାପିବା ଠିକ୍ ହେବ ନାହିଁ।

୧୯୧୯ ଅକ୍ଟୋବର ମାସରେ 'ସମାଜ' ପ୍ରକାଶନ ଆରଂଭ କରିବା ପଛରେ ଏକ ବଡ଼ ଉଦ୍ଦେଶ୍ୟ ଥିଲା ବନ୍ୟା ରିଲିଫ କାମକୁ ସୁନିୟୋଜିତ ଢଂଗରେ ତ୍ୱରାନ୍ୱିତ କରିବା। ପତ୍ରିକା ମାଧ୍ୟମରେ କେଉଁଠି ରିଲିଫର ଆବଶ୍ୟକତା ରହିଛି ଜଣା ପଡ଼ିବ; ପତ୍ରିକା ମାଧ୍ୟମରେ ରିଲିଫ ସଂଗ୍ରହ ହେବ; ଏବଂ ପୁଣି ପତ୍ରିକା ମାଧ୍ୟମରେ ରିଲିଫ ବାଣ୍ଟିବା ପାଇଁ ସ୍ୱେଚ୍ଛାସେବୀଂକ ମଧ୍ୟରେ ଯୋଗାଯୋଗ ରକ୍ଷା ହେବ ! ଠିକ୍ ସେହି ଏକା ଧରଣର ଦାୟିତ୍ୱ ନିର୍ବାହ କଲା ସତ୍ୟବାଦୀ ବନ ବିଦ୍ୟାଳୟର ପରିସର। ତାହା ରିଲିଫ କେନ୍ଦ୍ର ପାଲଟିଲା; ତା'ର ଛାତ୍ର ଓ ଶିକ୍ଷକମାନେ ବନ୍ୟା-ଦୁର୍ଭିକ୍ଷ ବେଳେ ସ୍ୱେଚ୍ଛାସେବୀର କାମ କଲେ। ଗୋପବଂଧୁ ଏବଂ ତାଂକ ସହକର୍ମୀ ମାନେ ସିଦ୍ଧ କରି ଦେଲେ ଯେ ଯେଉଁ କାମ ପ୍ରଭୂତ ଅର୍ଥ ଓ କ୍ଷମତାର ଅଧିକାରୀ ହୋଇ ସୁଦ୍ଧା ସରକାର କରିପାରୁନାହାନ୍ତି, ସେହି କାମ ଲୋକଂକର ଅନ୍ତଃଶକ୍ତି, ପରସ୍ପର ସହଯୋଗ ବଳରେ ସଂଭବ ହୋଇପାରିବ। ଏହା ଜନମଂଗଳ ଦୃଷ୍ଟିକୋଣରୁ ସରକାରର ନିରର୍ଥକତା ଏବଂ

ଜାତୀୟବାଦୀଂକର ଉପଯୋଗିତାକୁ ସିଦ୍ଧ କଲା। ରିଲିଫ କାମ ଓ ଜାତୀୟତାବାଦୀ କାମ ମଧ୍ୟରେ ଏକ ଘନିଷ୍ଠ ସଂବଂଧ ରହିଛି। ଏହା ଗୋପବଂଧୁ ପ୍ରମାଣ କରି ଦେଲେ। ଅନ୍ୟ ପକ୍ଷରେ ଚୁଡ଼ା, ଚାଉଳ ମୁଠାଏ ଲେଖା ବାଣ୍ଟିବା ଅବସରରେ ଗୋପବଂଧୁ କେତେ ଯେ ଲୋକଂକ ସାଂଗରେ ସଂପର୍କ ସାଧିଲେ, କେତେ ଯେ ଅଂଚଳକୁ ବ୍ୟକ୍ତିଗତ ଭାବରେ ଗସ୍ତ କଲେ, ତା'ର ହିସାବ କରିବା କଷ୍ଟ। ତାଂକୁ ଜଣା, ମୁଠିଏ ଚୁଡ଼ା, ଚାଉଳ ବିପନ୍ନ ଲୋକର ଅଭାବ ମେଣ୍ଟାଇ ପାରିବ ନାହିଁ। ମାତ୍ର ସେମାନଂକ ଦୁଃଖ ସମୟରେ ସମଭାବ ଜଣାଇବା ସକାଶେ ତା'ର ଆବଶ୍ୟକତା କିଛି ଊଣା ନୁହେଁ। ପୁଣି, ରିଲିଫ ବ୍ୟତୀତ ଅନ୍ୟ କେଉଁ ମାଧ୍ୟମରେ ସେ ଏତେ ସଂଖ୍ୟାରେ ଲୋକଂକ ସଂଗେ ଘନିଷ୍ଠ ହୋଇପାରିଥାନ୍ତେ, ଏତେ ସଂଖ୍ୟାରେ ଲୋକଂକର ସମସ୍ୟାକୁ ଅନ୍ତଃମନରେ ବୁଝିଥାନ୍ତେ, ତାହା ଆଜି ଅନୁମାନ କରିବା କଷ୍ଟ। ବିଂଶ ଶତାବ୍ଦୀର ଓଡ଼ିଶାରେ ମଧୁବାବୁଂକ ପରେ ଏକ ମୁକୁଟ ବିହୀନ ସମ୍ରାଟ ଭାବରେ ଜନସ୍ୱୀକୃତି ପାଇବାରେ ଗୋପବଂଧୁଂକୁ ଯେତେମାତ୍ରାରେ ସାହାଯ୍ୟ କରିଛି ଅସହଯୋଗ ଆଂଦୋଳନ ଓ ଜାତୀୟତାବାଦୀ ରାଜନୀତି, ତତୋଽଧିକ ମାତ୍ରାରେ ସହଯୋଗ କରିଛି ରିଲିଫ କାର୍ଯ୍ୟ ! ଅନ୍ୟଥା ଏମିତିରେ ଦେଖିଲେ ଦଶ-ଏଗାର ବର୍ଷରୁ (୧୯୧୭ ରୁ ୧୯୨୮) ଅଧିକ ନୁହେଁ ଗୋପବଂଧୁଂକର ପ୍ରାଦେଶିକ ସ୍ତରୀୟ ରାଜନୀତି। ମାତ୍ର ସେହି ସ୍ୱଳ୍ପ ସମୟ ଭିତରେ ଯେଉଁ ଛାପ ସେ ଛାଡ଼ି ଯାଇଛନ୍ତି, ତାହା ଆଜି ତାଂକ ମୃତ୍ୟୁର ପ୍ରାୟ ୮୦ ବର୍ଷ ପରେ ସୁଦ୍ଧା ଲିଭି ଯାଇନାହିଁ।

ଗୋପବଂଧୁ ଚାହୁଁଥିଲେ ବନ୍ୟାର ସ୍ଥାୟୀ ପ୍ରତିକାର, କାରଣ ରିଲିଫ କେବେ ବିକଳ୍ପ ନୁହେଁ। ଏହା ବନ୍ୟାପ୍ରପୀଡ଼ିତର ସ୍ୱାଭିମାନକୁ ଆଘାତ ଦିଏ। ପୁଣି ମୁଠିଏ ଚୁଡ଼ା, ଚାଉଳରେ ପ୍ରପୀଡ଼ିତର ବା କେଉଁ ଦୁଃଖ ଲାଘବ ହେବ ? ବିପର୍ଯ୍ୟୟଗ୍ରସ୍ତ ବ୍ୟକ୍ତି ଦୁଃଖ ସମୟରେ ଏକାକୀ ପଡ଼ି ନ ଯିବ ବୋଲି ରିଲିଫ; ମାନବତାରୁ ତା'ର ବିଶ୍ୱାସ ହଟି ନ ଯିବ ବୋଲି ରିଲିଫ; ଅନ୍ୟମାନେ ସାହାଯ୍ୟ ଦେଇ ନିଜ ଭିତରର ମାନବତାକୁ ବଂଚେଇ ରଖିବେ ବୋଲି ରିଲିଫ ! ଅନ୍ୟଥା ରିଲିଫ କେବେ ବନ୍ୟାର ବିକଳ୍ପ ହୋଇ ନ ପାରେ। ତେଣୁ ଗୋପବଂଧୁ ଦାବି କରୁଥିଲେ ବନ୍ୟାର ସ୍ଥାୟୀ ପ୍ରତିକାର। ତା' ପାଇଁ ଜନ ଆଂଦୋଳନ ହେଉ ଏବଂ ମହାତ୍ମା ଗାଂଧି ତା'ର ନେତୃତ୍ୱ ନିଅନ୍ତୁ ବୋଲି ସେ ଆଶା ପୋଷଣ କରୁଥିଲେ। ରିଲିଫ ସଂଗ୍ରହ ବେଳେ ପ୍ରଥମେ ସେ ଓଡ଼ିଶା ଭିତରେ ହିଁ ସାହାଯ୍ୟ ପାଇଁ

ଆବେଦନ କରାଯାଉ ବୋଲି କହୁଥିଲେ। ପରିସ୍ଥିତି ଅସଂଭାଳ ହେଲେ ଯାଇ ଓଡ଼ିଶା ବାହାରେ ସାହାଯ୍ୟ ପାଇଁ ଆବେଦନ କରାଯିବ ! ଅନ୍ୟର ଦୟା ଓ ସାହାଯ୍ୟ ଓଡ଼ିଶାର ସ୍ୱାଭିମାନକୁ କାଳେ ନଷ୍ଟ କରିଦେବ ବୋଲି ସେ ଆଶଂକା ପ୍ରକାଶ କରୁଥିଲେ। ଦ୍ୱିତୀୟତଃ, ଅନ୍ତଃଶକ୍ତିର ଉପଯୋଗ କଲାପରେ ଯାଇ ବାହାରର ସାହାଯ୍ୟ ନିଆଯିବା କଥା ! ରିଲିଫ ପ୍ରଶ୍ନକୁ ନେଇ ଗୋପବଂଧୁଙ୍କର ଦୃଷ୍ଟିକୋଣ କେତେ ସ୍ପଷ୍ଟ ଓ ସ୍ୱଚ୍ଛ ଥିଲା, ତାହା ତାଂକର ବର୍ଦ୍ଦୋଳି ସତ୍ୟାଗ୍ରହ ନିମନ୍ତେ ସାହାଯ୍ୟ ପାଇଁ କରିଥିବା ଆବେଦନକୁ ଦେଖିଲେ ଜାଣିହୁଏ।

୧୯୨୮ ମସିହା ଆରଂଭରେ ଗୁଜରାଟର ବର୍ଦ୍ଦୋଳିଠାରେ ଜମିଜମା (କର) ବୃଦ୍ଧିକୁ ନେଇ କୃଷକମାନେ ସତ୍ୟାଗ୍ରହ କଲେ। ୧୯୩୦ରେ ଯେଉଁ ଆଇନ ଅମାନ୍ୟ ପ୍ରସଂଗକୁ ନେଇ ଜନ ଆଂଦୋଳନ ସାରା ଦେଶରେ ଆରଂଭ ହେଲା, ତା'ର ଅଗ୍ରମାରଂଭ ରୂପେ ବର୍ଦ୍ଦୋଳି ସତ୍ୟାଗ୍ରହକୁ ଦେଖାଯାଇ ପାରେ। ୧୯୨୨ ମସିହାରେ ଚୌରୀଚୌରା ଘଟଣା ପରେ ଅସହଯୋଗ ଆଂଦୋଳନରେ ଯେଉଁ ଭଟ୍ଟା ପଡ଼ିଥିଲା, ଦେଶରେ କଂଗ୍ରେସ ଆଂଦୋଳନ ଶିଥିଳ ପଡ଼ିଥିଲା, ତା'ର ଏକ ଜୁଆର ରୂପ ଭାବରେ ମଧ୍ୟ ବର୍ଦ୍ଦୋଳି ସତ୍ୟାଗ୍ରହର ଆରଂଭ ହୋଇଥିଲା। ଏଥିପାଇଁ ଓଡ଼ିଶାର ଜନସାଧାରଣଙ୍କ ପାଖରୁ ସାହାଯ୍ୟ ଭିକ୍ଷା କରି ଗୋପବଂଧୁ ମୃତ୍ୟୁର କିଛିଦିନ ପୂର୍ବରୁ ଏକ ନିବେଦନ ପତ୍ରରେ ଲେଖିଥିଲେ :

"ସମଗ୍ର ଭାରତର ବର୍ଦ୍ଦୋଳି କାର୍ଯ୍ୟରେ ପୂରା ସାହାଯ୍ୟ ସହାନୁଭୂତି ରହିବା ଆବଶ୍ୟକ। ବର୍ଦ୍ଦୋଳି ଲୋକ ନିଜ ବଳରେ ବଳୀୟାନ ଅଛନ୍ତି। ସେମାନଂକୁ ଗୁଜରାତି ଭାଇମାନେ ଯଥାସଂଭବ ସହାୟତା କରୁଛନ୍ତି। ମାତ୍ର ସେମାନଂକୁ ଇଂରେଜ ସରକାର ସାଂଗେ ମୁଣ୍ଡ ପକାଇବାକୁ ହୋଇଛି। ସେଥିଲାଗି ଯେ କେତେ ସଂବଳ, କେତେ ଆୟୋଜନ ଆବଶ୍ୟକ, ତାହା ଅଧିକ କାହାକୁ ବୁଝାଇବାକୁ ହେବ ନାହିଁ। ବର୍ଦ୍ଦୋଳି ପ୍ରଜାମାନଂକ ଉଦ୍ୟମ ପଛ ଆଡ଼େ ସମଗ୍ର ଭାରତର ସହାୟତା ଅଛି, ଏହା ସେମାନେ ଜାଣିଲେ ଅଧିକ ଉତ୍ସାହିତ ହେବେ ଏବଂ ଇଂରେଜ ସରକାର ଜାଣିଲେ ଅଧିକ ଅଗ୍ରସର ହେବା ପୂର୍ବରୁ ଆଉ ଟିକିଏ ଭାବି ବିଚାରି କାର୍ଯ୍ୟ କରିବେ। ବର୍ଦ୍ଦୋଳି ଲୋକେ ଲୋଡ଼ନ୍ତୁ ବା ନ ଲୋଡ଼ନ୍ତୁ ପ୍ରତ୍ୟେକ ଭାରତବାସୀର ସହାୟତା ଓ ସହାନୁଭୂତି କୌଣସି ନା କୌଣସି ପ୍ରକାରେ ଦେଖା ହେବା ଉଚିତ। ମହାତ୍ମା ଗାଂଧି ବର୍ଦ୍ଦୋଳି ନିମନ୍ତେ ଅର୍ଥ ସାହାଯ୍ୟ

ଲାଗି ଭାରତବାସୀଂକ ନିକଟରେ ପ୍ରାର୍ଥନା କରିଛନ୍ତି। ମୁଁ ମହାତ୍ମାଂକର ଏ ନିବେଦନ ଓଡ଼ିଶା ବାସୀଂକୁ ଜଣାଇ ବର୍ଦ୍ଧୋଲି ନିମନ୍ତେ ଅର୍ଥ ସାହାଯ୍ୟ ଦେବା କାରଣ ସବିନୟ ପ୍ରାର୍ଥନା କରୁଅଛି। ଓଡ଼ିଶାର ବିପଦ ଆପଦରେ ବାହାର ଲୋକେ ତାକୁ ସବୁବେଳେ ସାହାଯ୍ୟ କରୁଛନ୍ତି। ଆବଶ୍ୟକ ବେଳେ ଓଡ଼ିଶା ଅନ୍ୟ ପ୍ରଦେଶ ପ୍ରତି ସ୍ନେହ ସୋଦରତା ଦେଖାଇ ନିଜ ସାଧ୍ୟ ମତେ ଯତକିଂଚିତ ସାହାଯ୍ୟ ନ କଲେ ଖାଲି ଅସୁଂଦର ହେବ ନାହିଁ, କୃତଘ୍ନତା ହେବ।" (ସମାଜ ୨୩ ମେ ୧୯୨୮)

୧୯୨୭ ମସିହା ଡିସେଂବର ମାସରେ 'ଇଷ୍ଟକୋଷ୍ଟ' ପତ୍ରିକାରେ ଏକ ବେନାମୀ ପତ୍ର ପ୍ରକାଶିତ ହେଲା। ତହିଁରେ ଅଭିଯୋଗ ଥିଲା ଯେ ଗୋପବଂଧୁ ଦାସଂକ ସଂଯୋଜନାରେ ଗଠିତ ବନ୍ୟା ସାହାଯ୍ୟ କମିଟୀ ତା'ର ହିସାବ ପତ୍ର ଲୋକ ସାଧାରଣଂକୁ ଜଣାଉ ନାହିଁ। ଅଭିଯୋଗ ପଛରେ ସଂଦେହ ପ୍ରକାଶ କରାଯାଇ ଥିଲା ଯେ ଗୋପବଂଧୁ କାଳେ ବନ୍ୟା ସାହାଯ୍ୟ ପାଣ୍ଠିର ଦୁରପଯୋଗ କରୁଛନ୍ତି। ଗୋପବଂଧୁ ଏଭଳି ଏକ ବେନାମୀ ପତ୍ରକୁ ଉପେକ୍ଷା କଲେନାହିଁ। ବରଂ 'ସମାଜ'ରେ ଅଭିଯୋଗକୁ ଆଧାରପୂର୍ଣ୍ଣ ବୋଲି ଯୁକ୍ତି କଲେ, 'କାରଣ ବନ୍ୟା ସାହାଯ୍ୟ କମିଟି ଏକ ସାଧାରଣ ଅନୁଷ୍ଠାନ; ବନ୍ୟା ବିପନ୍ନ ଲୋକଂକ ସାହାଯ୍ୟ ଲାଗି ଦେଶର ସଦାଶୟ ବ୍ୟକ୍ତିମାନେ ଏ କମିଟିକି ଟଂକା ଦେଉଛନ୍ତି। ଟଂକା ଦିଅନ୍ତୁ ବା ନ ଦିଅନ୍ତୁ ଯେ କୌଣସି ବ୍ୟକ୍ତିର ହିସାବ ବୁଝିବାର ଅଧିକାର ଅଛି। କାହାରି ସଂଦେହ ବା କୌତୁହଳ ହେଲେ ସେ ସମୟ, ସୁବିଧା ଦେଖି କମିଟି ଅଫିସରେ ଆସି ତତ୍ତ୍ୱ ନେଇ ପାରନ୍ତି।' (ସମାଜ ୨୪ ଡିସେଂବର ୧୯୨୭) ଏହି ଘଟଣାର ପରେ ପରେ 'ସମାଜ'ରେ ବନ୍ୟା ସାହାଯ୍ୟ କମିଟିର ଏକ ବିଶଦ ଆୟ-ବ୍ୟୟର ହିସାବ ବାହାର କରି ଗୋପବଂଧୁ କେବଳ ଏକ ସାଧାରଣ ବେନାମୀ ଚିଠିରେ ମହତ୍ତ୍ୱ ଦର୍ଶାଇ ନାହାନ୍ତି, ସାଂଗରେ ନିଜର ସ୍ୱଚ୍ଛତା ଓ ସମାଜ କାମ ପାଇଁ ମିଳିଥିବା ପ୍ରତି ମୁଦ୍ରାର କେମିତି ପ୍ରକୃତ ବିନିଯୋଗ କରିବାକୁ ଚେଷ୍ଟା କରିଛନ୍ତି, ତାହା ଦର୍ଶାଇଛନ୍ତି। (ସମାଜ, ୭ ଜାନୁଆରି ୧୯୨୮)

୧୯୨୨ ଫେବୃଆରି ମାସରେ ସଂଘଟିତ ହୋଇଥିବା ଚୌରୀଚୌରା ଘଟଣା ପରେ ଅସହଯୋଗ ଆଂଦୋଳନରେ ଭଟ୍ଟା ପଡ଼ିଲା। ଜନ ଆଂଦୋଳନ ଯୋଗୁଁ ଦେଶରେ 'ସ୍ୱରାଜ୍ୟ' ଆସିବ ବୋଲି ଯେଉଁ ଆଶା ଥିଲା, ତାହା

ନିରାଶାରେ ପରିଣତ ହେଲା। ଜାତୀୟତାବାଦୀ ରାଜନୀତିରେ ଏହି ନିରାଶାର ଅନେକ ନକାରାତ୍ମକ ପରିଣାମ ଦେଖିବାକୁ ମିଳିଲା- ୧୯୨୨ର ଗୟା କଂଗ୍ରେସ ପରେ ଜାତୀୟ କଂଗ୍ରେସ ଦୁଇ ଭାଗରେ ପରିଣତ ହେଲା। ଗାଂଧି ସେତେବେଳେ ଜେଲରେ। ତାଂକ ସମର୍ଥନରେ ଦଳେ କଂଗ୍ରେସ ନେତା କହିଲେ ଜନ ଆଂଦୋଳନ ଯେତେବେଳେ ସଂଭବ ହେଉ ନାହିଁ, ଗାଂଧି ପ୍ରଦର୍ଶିତ ରଚନାତ୍ମକ କାର୍ଯ୍ୟକ୍ରମରେ, ଯଥା ଖଦି ପ୍ରସାର, ନିଶା ନିବାରଣ, ପଲ୍ଲୀ ସଂଗଠନ ଇତ୍ୟାଦି, ମନୋନିବେଶ କରାଯାଉ। ଏହା ଭବିଷ୍ୟତରେ ଜନ ଆଂଦୋଳନର ବାଟକୁ ସୁଗମ କରିବ। ଚିତ୍ତରଂଜନ ଦାସ ଓ ମୋତିଲାଲ ନେହେରୁଂକ ଭଳି ଅନ୍ୟ ଦଳେ କଂଗ୍ରେସ ନେତା ଯୁକ୍ତି କଲେ ଏସେମ୍ଲି ଓ କାଉନସିଲ ପାଇଁ ନିର୍ବାଚନ ଲଢ଼ି କଂଗ୍ରେସ ତା' ମାଧ୍ୟମରେ ଇଂରେଜର ଲୋକ ଦେଖାଣିଆ ସାଂବିଧାନିକ ବ୍ୟବସ୍ଥାର ପର୍ଦ୍ଦାଫାଶ କରୁ। ଲୋକ ସରକାରର ଅସଲି ଉପନିବେଶବାଦୀ ଚରିତ୍ରକୁ ଜାଣନ୍ତୁ। ଭବିଷ୍ୟତର ଜନ ଆଂଦୋଳନକୁ ଏହା ସାହାଯ୍ୟ କରିବ। ସେ ଯାହାହେଉ, କଂଗ୍ରେସ ଦଳର ବିଭାଜନ ସାଧାରଣ କର୍ମୀକୁ ବିଷାଦଗ୍ରସ୍ତ କଲା। ନେତା ଓ କର୍ମୀ ଜନ ଆଂଦୋଳନରୁ ନିବୃତ୍ତ ହେବା ପରେ ଦେଶରେ ସାଂପ୍ରଦାୟିକତା, ଆଂଚଳିକତା, ଆଦି ବୃଦ୍ଧି ପାଇଲା। ଅନେକ କଂଗେସ କର୍ମୀ ମଧ୍ୟ ଏଭଳି ପ୍ରତିକ୍ରିୟାବାଦୀ ରାଜନୀତିରେ ସଂପୃକ୍ତ ହେଲେ।

ଏହି ସମୟରେ ଓଡ଼ିଶା ରାଜନୀତିରେ ମଧ୍ୟ ଏଭଳି ପ୍ରତିକ୍ରିୟାବାଦୀ ତତ୍ତ୍ୱ ମୁଣ୍ଡ ଟେକିଲେ। ୧୯୨୬ ମସିହାରେ ବୋଧହୁଏ ଓଡ଼ିଶା ଇତିହାସରେ ପ୍ରଥମ ଥର ପାଇଁ ସାଂପ୍ରଦାୟିକ ଦଂଗା ଭଳି ଏକ ଅଘଟଣ ଘଟିତ ହେଲା। ଯେଉଁ ସଂକୀର୍ଣ୍ଣ ଆଂଚଳିକତାକୁ ୧୯୨୦-୨୨ ମସିହାରେ ଶେଷ କରିଦିଆଗଲା ବୋଲି ବିଶ୍ୱାସ ଜାତ ହେଉଥିଲା, ତାହା ପୁଣି ଥରେ ମୁଣ୍ଡ ଟେକିଲା। ସଂବଲପୁରର କଂଗ୍ରେସ ନେତୃବୃଂଦ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟୀରୁ ବାହାରି ଗଲେ; ସିଂହଭୂମିରେ ଏଣିକି କଂଗ୍ରେସ କାର୍ଯ୍ୟରୁ ନିବୃତ୍ତ ହୋଇ କେବଳ ଦେଶ ମିଶ୍ରଣ ପାଇଁ ଉଦ୍ୟମ କରିବେ ବୋଲି ନେତୃବୃଂଦ ନିଷ୍ପତ୍ତି ନେଲେ। ଠିକ୍ ସେହି ଭଳି ଦକ୍ଷିଣ ଓଡ଼ିଶାରେ (ଗଂଜାମରେ) ଓଡ଼ିଆ ଓ ତେଲୁଗୁ ଭାଷୀ କଂଗ୍ରେସ କର୍ମୀଂକ ମଧ୍ୟରେ ତୀବ୍ର ମତାନ୍ତର ହେଲା। ଏହି ସମୟରେ ଖଦି ପାଣ୍ଠି, ବନ୍ୟା ରିଲିଫ ପାଣ୍ଠି, ସମବାୟ ପାଣ୍ଠିର ଅର୍ଥ ତୋଷାରଫ ହେଉଛି ବୋଲି

ଅଭିଯୋଗମାନ ଆସିଲା। ଅନେକ ଅଂଚଳରେ କଂଗ୍ରେସ ନେତା ଓ କର୍ମୀମାନେ ଅର୍ଥ ତୋଷାରଫ କରୁଛନ୍ତି ବୋଲି କେବଳ ଅଭିଯୋଗ ହେଲା ନାହିଁ, ଅଭିଯୋଗର ପ୍ରମାଣ ମାନ ମଧ୍ୟ ମିଳିଲା। ଏ ସବୁକୁ ବାଦ ଦେଲେ, ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟୀ ମଧ୍ୟରେ ତୀବ୍ର ଗୋଷ୍ଠୀ ବିବାଦ ଦେଖାଗଲା। ଅନେକ ନେତା ଓ କର୍ମୀମାନେ ଜାତି, ଅଂଚଳ ଆଧାରରେ ଛୋଟ ଛୋଟ ଗୋଷ୍ଠୀରେ ପରିଣତ ହୋଇଗଲେ। ଏହି ଗୋଷ୍ଠୀକଂଦଳ ୧୯୨୭ର ଶେଷ ଯାକେ କମ ବଢ଼ୁତେ ଚାଲିଲା ଏବଂ ପରିଶେଷରେ ସାଇମନ କମିଶନର ବିରୋଧ ପ୍ରସଂଗ ପୁଣି ଥରେ ସମସ୍ତ ଜାତୀୟତାବାଦୀଂକୁ ଏକତାବଦ୍ଧ କଲା। ଜନ ଆଂଦୋଳନର ଅଭାବରେ ଯେଉଁ ଗୋଷ୍ଠୀ ବିବାଦ, ସାଂପ୍ରଦାୟିକତା ଓ ଆଂଚଳିକତା ଆଦି ମୁଣ୍ଡ ଟେକିଥିଲେ, ସାଇମନ କମିଶନର ବିରୋଧ, ଲବଣ ସତ୍ୟାଗ୍ରହ, ଆଇନ ଅମାନ୍ୟ ପ୍ରଶ୍ନ ଆଦିକୁ ନେଇ ଆରଂଭ ହୋଇଥିବା ଜନଆଂଦୋଳନରେ ସେଗୁଡ଼ିକ ପୂର୍ଣ୍ଣାହୁତି ପାଇଲେ।

ସେ ଯାହାହେଉ, ଏହି ଦୁଃସମୟରେ ଗୋପବଂଧୁ ଗାଂଧି ରଚନାତ୍ମକ କାମରେ ନିଜକୁ ନିୟୋଜିତ କଲେ; ଆସେମ୍ବ୍ଲି ଓ କାଉନସିଲକୁ ନିଜେ ଗଲେ ନାହିଁ; ସାଂପ୍ରଦାୟିକତାରୁ ଊର୍ଦ୍ଧ୍ୱରେ ରହି ଦେଶୋନ୍ନତିକୁ ଉଭୟ ହିଂଦୁ ଓ ମୁସଲମାନ ମାନେ ନିଜର ପ୍ରିୟ ଧର୍ମ ବୋଲି ବିଚାର କରନ୍ତୁ ବୋଲି ଆହ୍ୱାନ କଲେ; ଏବଂ ସଂକୀର୍ଣ୍ଣ ଆଂଚଳିକତାର ଊର୍ଦ୍ଧ୍ୱରେ ରହିବାକୁ ପ୍ରୟାସ କଲେ। ତାଂକ ନିଜ ନାଁରେ ବନ୍ୟା ରିଲିଫ ପାଣ୍ଠି ତୋଷରଫର ଯେଉଁ ଅଭିଯୋଗ ହେଲା ତାକୁ ମଧ୍ୟ ପ୍ରମାଣ ଦ୍ୱାରା ମିଛ ବୋଲି ସିଦ୍ଧ କଲେ ଏବଂ ସାଂଗରେ ସାଧାରଣ ପାଣ୍ଠିର ଉପଯୋଗକୁ ନେଇ ପ୍ରତ୍ୟେକ ବ୍ୟକ୍ତିର ଆଗ୍ରହ ରହିବା ଆଦୌ ଭୁଲ ନୁହେଁ ବୋଲି ଲେଖିଲେ। ମାତ୍ର ଅବସୋସର ବିଷୟ ଯେ 'ଖରାପ' ସମୟର ସେହି ପ୍ରଭାବରୁ ସେ ନିଜେ ମଧ୍ୟ ମୁକ୍ତ ହୋଇ ପାରିଲେ ନାହିଁ। ଏହା ଅନସ୍ୱୀକାର୍ଯ୍ୟ ଯେ ୧୯୨୫ରେ ଓଡ଼ିଶାରେ 'ହିଂଦୁ ମହାସଭା'ର ଗଠନ ପଛରେ ତାଂକରି ହାତ ରହିଥିଲା। ଓଡ଼ିଶାରେ ସାଂପ୍ରଦାୟିକତାର ବିସ୍ତାର ଏକ ସମସ୍ୟା ଏବଂ ତା'ପାଇଁ କେବଳ ମୁସଲମାନମାନଂକୁ ଦାୟୀ କରି ସେ ୧୯୨୬ରେ ଲେଖିଥିଲେ, 'ଯେତେଦୂର ଜଣାଯାଏ ଓଡ଼ିଶାରେ ଥିବା ବାହାରର କେହି କେହି ମୁସଲମାନ ଏଠା ମୁସଲମାନମାନଂକୁ ଏ ବିଷୟରେ (କଳହ ଆରଂଭ କରିବା ପାଇଁ)

ମତାଉଛନ୍ତି। ଆମ୍ଭେମାନେ ଓଡ଼ିଶା ମୁସଲମାନମାନଂକୁ ବୁଝି ବିଚ଼ାରି କାର୍ଯ୍ୟ କରିବା ଲାଗି ଅନୁରୋଧ କରୁ ଅଛୁଁ। (ସମାଜ, ୫ ଜୁନ ୧୯୨୬) କଳହରେ ବ୍ୟାପୃତ ଦୁଇ ଗୋଷ୍ଠୀ ମଧ୍ୟରୁ କେବଳ ଗୋଟାଏ ଗୋଷ୍ଠୀକୁ କଳହ ପାଇଁ ଦାୟୀ କରିବା ପଛରେ ତାଂକର ହିଂଦୁ ସଂପ୍ରଦାୟଭିତ୍ତିକ ବିଚ଼ାର ଯେ ଅନେକାଂଶରେ ଏକ ବଡ଼ କାରଣ- ଏହା ସହଜରେ ଅନୁମାନ କରାଯାଇପାରେ। ସେହି ଆଧାରରେ ତାଂକର ମଦନ ମୋହନ ମାଲବ୍ୟଂକ ଦ୍ୱାରା ଆରଂଭ ହୋଇଥିବା ସଂପ୍ରଦାୟବାଦୀ 'ଶୁଦ୍ଧି ଆଂଦୋଳନ' ପ୍ରତି ମଧ୍ୟ ସମର୍ଥନ ରହିଲା। ଶୁଦ୍ଧି ଆଂଦୋଳନର ଅର୍ଥ ହିଂଦୁ ଧର୍ମରୁ ଅନ୍ୟ ଧର୍ମକୁ ଧର୍ମାନ୍ତରିତ ବ୍ୟକ୍ତିକୁ ହିଂଦୁ ଧର୍ମକୁ ପ୍ରତ୍ୟାବର୍ତ୍ତନ ପାଇଁ ପ୍ରୋତ୍ସାହିତ କରାଯିବ। ଏହା ମୂଳତଃ ଏକ ସାଂପ୍ରଦାୟିକ କାର୍ଯ୍ୟକ୍ରମ। ତାକୁ ସମର୍ଥନ କରି ଗୋପବଂଧୁ ଯୁକ୍ତିକଲେ ଯେ 'ମୁସଲମାନମାନଂକର ଏଥିରେ (ଶୁଦ୍ଧି ଆଂଦୋଳନରେ) ବାଧା ଦେବା କଥା ନୁହେଁ।' ଲାଲା ଲଜପତ ରାଏଂକ ସାଂଗରେ ବଂଧୁତା ଏବଂ ଲୋକ ସେବକ ସମାଜ ସହ ଗୋପବଂଧୁଂକର ନିବିଡ଼ ସଂପୃକ୍ତି ପଛରେ ମଧ୍ୟ ସେହି ପରୋକ୍ଷ ହିଂଦୁ ସଂପ୍ରଦାୟଭିତ୍ତିକ ବିଚ଼ାରକୁ ଦେଖାଯାଇପାରେ। କେବଳ ସଂପ୍ରଦାୟବାଦ କାହିଁକି, ଏହି ସମୟରେ ଗୋପବଂଧୁ ଓଡ଼ିଶାର ସ୍ୱାର୍ଥ ରକ୍ଷା ଲାଗି କଂଗ୍ରେସ ବାହାରେ ଏକ 'ଓଡ଼ିଆ ପାର୍ଟି'ର ଆବଶ୍ୟକତା ରହିଛି ବୋଲି ଯୁକ୍ତି କଲେ ଏବଂ ବିଧବା ବିବାହର ବିରୋଧ କରି ୧୯୨୬ ମସିହାରେ ପୁରୀଠାରେ 'ଜଗନ୍ନାଥ ବିଧବାଶ୍ରମ'ର ପ୍ରତିଷ୍ଠା କଲେ। ଉଦ୍ଦେଶ୍ୟ ହେଲା ବିଧବାମାନେ ପୁନର୍ବିବାହ ନ କରି ଆଶ୍ରମର ସୁରକ୍ଷିତ ପରିସରରେ ରହିବେ। ଯେଉଁ ଗୋପବଂଧୁ ଦିନେ ସାମାଜିକ ସଂସ୍କାର ଏବଂ ବିଶ୍ୱମାନବତାକୁ ନିଜର ବୀଜମନ୍ତ କରି ରାଜନୀତିରେ ପଦାର୍ପଣ କରିଥିଲେ, ସେ ପୁଣି ସାମୟିକ ଭାବେ ହେଉ ପଛେ ଏଭଳି ସଂକୀର୍ଣ୍ଣତାକୁ ଆଶ୍ରୟ କଲେ ! ଏହାକୁ ସମୟର ପ୍ରଭାବ ରୂପରେ ହିଁ ଦେଖି ହେବ, ବୁଝି ହେବ। ସାଂଗରେ ଏକଥା ବି ସତ ଯେ ଜାତୀୟ କଂଗ୍ରେସର ପ୍ରତ୍ୟେକ ନେତା ଏକାଭଳି ଏହି ସମୟ ଦ୍ୱାରା ପ୍ରଭାବିତ ହୋଇଛନ୍ତି ବୋଲି କହି ହେବ ନାହିଁ। ଏହି ଦୁଃସମୟରେ ସୁଦ୍ଧା ଗୋପବଂଧୁ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ପ୍ରାଣକୃଷ୍ଣ ପଡ଼ିଆରୀଂକ ପରି କିଛି ନେତା ଓ କର୍ମୀ ସଂକୀର୍ଣ୍ଣତାର ଆଦୌ ପାଖ ମାଡ଼ି ନାହାନ୍ତି। ସମୟର ପ୍ରଭାବରେ ସେମାନେ ଭିନ୍ନ ଭାବେ ପ୍ରଭାବିତ। ଅର୍ଥାତ୍ ସେମାନେ ମଧ୍ୟ ନିଜ ସମୟର ପ୍ରଭାବରୁ ବିମୁକ୍ତ ନୁହନ୍ତି।

ସାମୟିକ ଭାବରେ ଗୋପବନ୍ଧୁଙ୍କର ସଂକୀର୍ଣ୍ଣତା ଆଡ଼କୁ ଢଳିବା ପଛରେ ଆଉ କେତୋଟି କାରଣକୁ ଏଠାରେ ଦୃଷ୍ଟି ଦେବା ବିଧେୟ୍ ନିଷ୍ଟୟା ସତ୍ୟବାଦୀ ଗୋଷ୍ଠୀ ନାମରେ ପରିଚିତ ଗୋପବନ୍ଧୁଙ୍କର ଅନେକ ସହକର୍ମୀ ଯଥା ନୀଳକଣ୍ଠ ଦାସ, ଗୋଦାବରୀଶ ମିଶ୍ର ଆଦି ଏସେମ୍ଲି, କାଉନସିଲକୁ ଗଲେ। 'ହିଂଦୁ ମହାସଭା'କୁ ଓଡ଼ିଶାରେ ବ୍ୟାପକ କରିବାରେ ନୀଳକଣ୍ଠ ପ୍ରମୁଖ ଭୂମିକା ନେଲେ। ଓଡ଼ିଶା ଆଂଚଳିକତା ପଛରେ ମଧ୍ୟ ସେମାନଂକର ହାତ ରହିଲା। ମୋଟ ଉପରେ କହିଲେ ସତ୍ୟବାଦୀ ବିଦ୍ୟାଳୟର ପ୍ରତିଷ୍ଠା ମୂଳରେ ରହିଥିବା ବିଚାରରୁ ସେମାନଂକର ଦୂରେଇ ଯିବା ପରେ ଗୋପବଂଧୁ ଯେମିତି ଏକା ପଡ଼ି ଗଲେ। ଅନ୍ୟ ପକ୍ଷରେ ତାଂକର ମାନସ ସନ୍ତାନ ସତ୍ୟବାଦୀ ବିଦ୍ୟାଳୟ ଏହି ସମୟରେ ଏତେ ସଂକଟର ସମ୍ମୁଖୀନ ହେଲା ଯେ ଅନ୍ତତଃ ୧୯୨୬ରେ ତାକୁ ବଂଦ କରି ଦିଆଗଲା। 'ସମାଜ', ଯାହାର ମୂଳ ଥିଲା ସତ୍ୟବାଦୀର ମାଟିରେ, ଛିନ୍ନ ମୂଳ ହୋଇ ପ୍ରଥମେ ପୁରୀର ପଥୁରିଆ ସାହିରୁ କିଛି କାଳ ପ୍ରକାଶ ପାଇଲା ଏବଂ ପରେ କଟକକୁ ସ୍ଥାନାନ୍ତରିତ ହେଲା। ଜନ ଆଂଦୋଳନର ଏହି ଭଟ୍ଟା ସମୟରେ ନୂଆଁ କର୍ମୀ ବା ତିଆରି ହେବେ କେତେକେ ? ଫଳରେ ଏକା ପଡ଼ି ଯିବାର ଭୟ, ଅସୁରକ୍ଷାର ଭାବ, ସତ୍ୟବାଦୀ ବିଦ୍ୟାଳୟ ଏବଂ 'ସମାଜ' ଅନୁଷ୍ଠାନ ବିଲୁପ୍ତ ହେବାର ଆଶଂକା ଆଦି ଗୋପବଂଧୁଂକୁ କଂଗ୍ରେସର ହିଂଦୁବାଦୀ ନେତା ଲାଲ ଲଜପତ ରାଏ, ମଦନ ମୋହନ ମାଲବ୍ୟ, ଆଦି ବାହାର ନେତୃବୃଂଦକ ସାଂଗରେ ସଂପର୍କ ଯୋଡ଼ିବାକୁ ପ୍ରେରିତ କରିଛି। ମଦନ ମୋହନ ମାଲବ୍ୟ ଯିଏ ଜନ ସାଧାରଣଂକ ଉଦ୍ୟମକୁ ଭରସା କରି ବନାରସ ହିଂଦୁ ବିଶ୍ୱବିଦ୍ୟାଳୟ ଭଳି ଏକ ଶିକ୍ଷାନୁଷ୍ଠାନ ଗଢ଼ି ପାରିଥିଲେ, ସେ ଏବଂ ତାଂକର ସହକର୍ମୀ କାଳେ ସତ୍ୟବାଦୀ ବିଦ୍ୟାଳୟକୁ ଜୀବନ ଦାନ କରି ପାରିବେ ବୋଲି ଗୋପବଂଧୁ ଆଶା କରିଛନ୍ତି। ଏହି ଅସୁରକ୍ଷାର ଭାବ ତାଂକୁ ଓଡ଼ିଶା ଭିତରେ ଥିବା ନାନା ବିରୋଧୀ ବିଚାର ସହ ମଧ୍ୟ ସମଝୋତା କରିବାକୁ ବାଧ୍ୟ କରିଛି ବୋଲି ଯୁକ୍ତି କରାଯାଇପାରେ।

ସେହି ଏକା ପଡ଼ି ଯିବାର ଭୟ ତାଂକ ବ୍ୟକ୍ତିଗତ ଜୀବନରେ ମଧ୍ୟ ଦେଖା ଯାଇପାରେ। ୧୯୨୭ ମସିହା ନଭେଂବର ମାସରେ ଗୋପବଂଧୁଂକର ବଡ଼ ଭାଇ ନାରାୟଣ ଦାସଂକର ଦେହାନ୍ତ ହେଲା। ଯାହାଂକର ସହଯୋଗ ଯୋଗୁଁ

ଗୋପବଂଧୁ ପାରିବାରିକ ଜଂଜାଳରୁ ବିମୁକ୍ତ ହୋଇ ସମାଜ କାମରେ ଆତ୍ମୋତ୍ସର୍ଗ କରିଥିଲେ, ସେହି ଭାଇଂକର ମୃତ୍ୟୁ ପରେ ନୂଆଁ କରି ପୁଣି କାଳେ ପରିବାର ଜଂଜାଳରେ ବାଂଧି ଦିଆହେବେ ବୋଲି ମନରେ ଆଶଂକା ଜାତ ହେଲା। ଏହା ତାଂକୁ ଅଧିକ ଏକା ଏକା କରି ଦେଲା। ଅସୁରକ୍ଷା ଭାବ ଯୋଗୁଁ ବିଚାର ସ୍ତରରେ ଗୋପବଂଧୁ ଏହି ସମୟରେ କିଛିଟା ବଦଳି ଗଲେ ଭଳି ମନେହୁଏ।

ଗୋପବଂଧୁ ଶୈଶବରେ ମାଂକୁ ହରାଇଥିଲେ। ସ୍କୁଲରେ ପଢ଼ିଲା ବେଳେ ପିତୃହରା ହେଲେ। କଲେଜ ପଢ଼ା ସମୟରେ ପୁଅର ମୃତ୍ୟୁ ହେଲା। ପୁରୀର ମୁକ୍ତାର ରାମଚଂଦ୍ର ଥିଲେ ତାଂକର ପ୍ରଥମ ଦୀକ୍ଷାଗୁରୁ। ପୁରୀ ବ୍ରାହ୍ମଣ ସମିତି, ସେବା ସମିତି ଆଦି ଅନୁଷ୍ଠାନ ଗଢ଼ିବାରେ ସେ ଥିଲେ ଗୋପବଂଧୁଂକ ପ୍ରେରଣାଦାତା। ଗୋପବଂଧୁ କଲେଜ ଛାତ୍ର ଥିଲାବେଳେ ରାମଚଂଦ୍ର ଦାସଂକର ଦେହାନ୍ତ ହେଲା। କଲିକତାରେ ଆଇନ ପରୀକ୍ଷାରେ ପାସ ହେବା ଖବର ଏବଂ ପତ୍ନୀଂକର ମୃତ୍ୟୁ ଖବର ସେ ଏକା ସମୟରେ ପାଇଥିଲେ। ହଜାରିବାଗ ଜେଲରେ ଥିଲାବେଳେ (୧୯୨୨-୨୪) ସେ ପ୍ରିୟ ବଂଧୁ ଦିବ୍ୟସିଂହ ମିଶ୍ରଂକ ମୃତ୍ୟୁ ଖବର ପାଇଲେ। ୧୯୨୬ରେ ସତ୍ୟବାଦୀ ବନ ବିଦ୍ୟାଳୟ ଯେତେବେଳେ ସଂକଟର ଶିଖରରେ ତାଂକର ପୁତ୍ର ପ୍ରତିମ ସହକର୍ମୀ ଏବଂ ସତ୍ୟବାଦୀର ପ୍ରଧାନ ଶିକ୍ଷକ କୃପାସିଂଧୁ ମିଶ୍ରଂକର ମାତ୍ର ୩୦ ବର୍ଷ ବୟସରେ ମୃତ୍ୟୁ ହେଲା। ପ୍ରିୟ ସହକର୍ମୀ ମାନଂକର ମୃତ୍ୟୁ ଖବର ଗୋପବଂଧୁକୁ ନିଃସହାୟ କରି ଦେଇଥିଲା। ମାତ୍ର ବଡ଼ ଭାଇଂକର ମୃତ୍ୟୁ ସବୁକୁ ବଳିଗଲା। କାରଣ ବଡ଼ ଭାଇ ଘରର ଜଂଜାଳ ସଂଭାଳି ଥିଲେ ବୋଲି ଗୋପବଂଧୁ ଦେଶକାମରେ ଲାଗି ପଡ଼ିଥିଲେ। 'ତାଂକ ବିୟୋଗରେ ମୋର ମେରୁଦଣ୍ଡ ଭାଂଗିଯାଇଛି ଏବଂ ଜୀବନର କାର୍ଯ୍ୟକ୍ରମରେ ବିଭ୍ରାଟ ଉପସ୍ଥିତ ହୋଇଛି। ସାଧାରଣ କାର୍ଯ୍ୟ କ୍ଷେତ୍ରରେ ମୁଁ ଯେ ଏଣିକି ଅବାଧରେ ସମସ୍ତ ଶକ୍ତି ସମୟ କେତେଦୂର ଲଗାଇ ପାରିବି ଏହା ଘୋର ଚିନ୍ତାର ବିଷୟ।' (ସମାଜ, ୨୬ ନଭେଂବର ୧୯୨୬) ଗୋପବଂଧୁଂକ ସାଧାରଣ କାମରେ ମନୋନିବେଶ କରିବା ପଛରେ ଗୃହସ୍ଥୀ ଭାଇର ଯେଉଁ ଅମାପ ଯୋଗଦାନ ରହିଥିଲା, ତାକୁ ସ୍ୱୀକାର କରି ଗୋପବଂଧୁ ସିଦ୍ଧ କରିଛନ୍ତି ଯେ ବ୍ୟକ୍ତିର ମହତ୍ତର କାର୍ଯ୍ୟ ପଛରେ ସମାଜର ଅନ୍ୟମାନଂକର ମଧ୍ୟ ଯଥେଷ୍ଟ ନୀରବ ସହଯୋଗ ରହିଥାଏ ଏବଂ ତା' ବିହୁନେ (ଏ କ୍ଷେତ୍ରରେ ବଡ଼ ଭାଇଂକର) ବ୍ୟକ୍ତିର କାମ ଆଗକୁ ବଢ଼ିପାରିବ ନାହିଁ। ନିଜ ବଡ଼ ଭାଇଂକର ସ୍ୱଦେଶ

ବତ୍ସଳତା ଓ ନୀରବ ସହଯୋଗକୁ ମନେ ପକାଇବା ଛଳରେ ଗୋପବଂଧୁ ସମାଜର ସମସ୍ତ ନୀରବ ସହଯୋଗୀଂକ ଯୋଗଦାନକୁ ସ୍ମରଣ କରିଛନ୍ତି।

ଗୋପବଂଧୁଂକର ବିଚାରରେ ୧୯୨୬-୨୭ ବେଳକୁ ଏ ଯେଉଁ ପରିବର୍ତ୍ତନ ଦେଖାଗଲା, ତା' ପଛରେ ରହିଥିବା ସାମାଜିକ ଆଧାରକୁ ଖୋଜିଲା ବେଳେ ଗୋପବଂଧୁଂକର ସେହି 'ବୈଚାରିକ ସ୍ଖଳନ'କୁ ଯଥାର୍ଥ ସିଦ୍ଧ କରିବା କାହାରି ଉଦ୍ଦେଶ୍ୟ ହୋଇ ନ ପାରେ। ସାଂଗରେ ଏହି ବିଶଦ ସାମାଜିକ ଆଧାରକୁ ପ୍ରେକ୍ଷାପଟରେ ନ ରଖିଲେ ଗୋପବଂଧୁ ଯେ ବସ୍ତୁତଃ ଅବୁଝା ରହିଯିବେ- ସେ ବି ଏକ ପକ୍ଷ।

୧୯୨୮ ମସିହା ଆରଂଭରେ ପୁଣି ଥରେ ସ୍ୱାଧୀନତା ସଂଗ୍ରାମରେ କୁଆର ଆରଂଭ ହେଲା। ୧୯୧୯ ମସିହାରେ ତିଆରି ହୋଇଥିବା ଶାସନ ସଂସ୍କାରର ସମୀକ୍ଷା ପାଇଁ ଯେଉଁ ସାଇମନ କମିଶନର ଗଠନ ହେଲା, ତହିଁରେ ଜଣେ ବି ଭାରତୀୟଂକୁ ସ୍ଥାନ ମିଳିଲା ନାହିଁ। ଏହାକୁ ଭାରତୀୟ ସ୍ୱାଭିମାନର ଅପମାନ କହି କଂଗ୍ରେସ ଠାରୁ ଆରଂଭ କରି ମୁସଲିମ ଲିଗ୍ ଯାଏଁ ସମସ୍ତେ ସରକାର ବିରୋଧରେ ଜନ ଆଂଦୋଳନ ପାଇଁ ଏକତାବଦ୍ଧ ହେଲେ। ନୂଆଁ କରି ଦେଶର ଚାରି ଆଡ଼େ ଯୁବ ଶକ୍ତିର ଅଭ୍ୟୁଦୟ ହେଲା, ଯୁବକ ସମିତି ମାନ ଗଠିତ ହେଲା। ଆଂଦୋଳନର ଏହି କୁଆରରେ ପୁଣି ଥରେ ଉତ୍କଳ କଂଗ୍ରେସ ଉଜ୍ଜୀବିତ ହେଲା। ସ୍ୱୟଂ ଗୋପବଂଧୁ ମଧ୍ୟ ନିଜ ବିଚାରକୁ ଆଗକୁ ନେବା ପାଇଁ ନୂଆଁ କରି ବଳ ପାଇଲେ। ଅସୁରକ୍ଷା ଭାବର ପ୍ରଭାବରେ ଯେଉଁ 'ବୈଚାରିକ ସ୍ଖଳନ' ତାଂକ ଭିତରେ ସାମୟିକ ଭାବେ ଦେଖା ଦେଇଥିଲା ବୋଲି ଆଗରୁ କୁହାଯାଇଛି, ତା'ର ପତ୍ତା ରହିଲାନି। ସାଇମନ କମିଶନ ପ୍ରତି ତୀବ୍ର ବିରୋଧକୁ ସ୍ୱାଗତ କରି ଗୋପବଂଧୁ ଲେଖିଲେ, 'ସେମାନଂକୁ (କମିଶନଂକୁ) ଏଠାରେ ଯେ (କିସମର) ଅଭ୍ୟର୍ଥନା ମିଳିଲା, ସ୍ଥାନେ ସ୍ଥାନେ ସେମାନେ ଯେପରି ଅପଦସ୍ତ ହେଲେ ଏବଂ କମିଶନ ବିରୁଦ୍ଧରେ ଯେ ଲୋକ ଦୃଢ଼ମନ ସେ ଅବଶ୍ୟ ଜାଣି ଯାଇଥିବେ। ଦାଣ୍ଡରେ ନ କହିଲେ ହେଲେ ଅବଶ୍ୟ ନିଜ ଗାଁରେ ଏକଥା କହିବେ। କିନ୍ତୁ କ'ଣ ହେବ ? ଗାଲୁଆଂକର ବାରବାଟୀ ଚାଷ। ଦେହ ବଳ ନ ଦେଖିବା ଯାଏଁ କ'ଣ ସେମାନେ ମାନିବେ ?' (ସମାଜ ୨୮ ମାର୍ଚ୍ଚ ୧୯୨୮)

ବ୍ରିଟିଶ୍ ଶାସନକୁ ପରାଜିତ କରି ତା' ସ୍ଥାନରେ ନୂଆଁ ସମାଜ ଗଠନ ପାଇଁ

ଜନ ଆଂଦୋଳନ ଓ ଜାତୀୟ ଜାଗରଣ ଏକମାତ୍ର ବିକଳ୍ପ ବୋଲି ଗୋପବଂଧୁ ବୁଝିଥିଲେ ଏବଂ ତା' ପାଇଁ ଜୀବନର ଶେଷ ଅବସ୍ଥାରେ ସୁଦ୍ଧା ଶହ ଶହ ସଂଖ୍ୟାରେ କର୍ମୀ ତିଆରିବାକୁ ବ୍ୟାପକ ପ୍ରସ୍ତୁତି କରିଥିଲେ। ଏହି ସମାଜ-କର୍ମୀର ସଂଭାବନା ସେ ଦେଖିଥିଲେ ଶ୍ରମିକଠାରେ ଏବଂ ତା' ପାଇଁ ଭିଷଣ ଶାରୀରିକ ଅସୁସ୍ଥତା ସତ୍ତ୍ୱେ କଲିକତା ଯାଇ ମୃତ୍ୟୁର ମାତ୍ର ପଂଦର ଦିନ ପୂର୍ବରୁ ଜୁନ ୨ ତାରିଖରେ ସେଠାରେ ଆୟୋଜିତ ଓଡ଼ିଆ ଶ୍ରମିକ ସମ୍ମିଳନୀରେ ଯୋଗ ଦେଇଥିଲେ। ସଂସ୍କାରବାଦିତାକୁ ନାପସଂଦ କରି ଅର୍ଥାତ୍ ବିଧବା ବିବାହକୁ ବିରୋଧ କରି ୧୯୨୬ରେ ସେ ଯେଉଁ 'ଜଗନ୍ନାଥ ବିଧବା ଶ୍ରମ' ପ୍ରତିଷ୍ଠା କରିଥିଲେ ତାକୁ ଏବେ ନାରୀ କର୍ମୀ ତିଆରି ପାଇଁ ମାଧ୍ୟମ କଲେ। ପୁରୀରୁ ସତ୍ୟବାଦୀକୁ ବିଧବାଶ୍ରମ ଆସିଲା ଏବଂ ଗୋପବଂଧୁ ତା'ର ପ୍ରତ୍ୟକ୍ଷ ଦାୟିତ୍ୱରେ ରହିଲେ। 'ସେବା  ଓ ସୂତାକଟା ଏମାନଂକର ପ୍ରଥମ କାର୍ଯ୍ୟ ହେବ ବୋଲି ଯୋଜନା କଲେ। ଗୋପଂବଂଧୁଂକର ଦୃଢ଼ ବିଶ୍ୱାସ ଥିଲା ଯେ 'ଘରେ ମୁରବୀମାନେ ଏ କାର୍ଯ୍ୟର ଉଦ୍ଦେଶ୍ୟ ଓ ମହତ୍ତ୍ୱ ବୁଝି ଏଠାରେ (ସତ୍ୟବାଦୀରେ) ଆପଣାର ବିଧବା ଝିଅ ବୋହୂଂକୁ ଛାଡ଼ିବାକୁ କୁଣ୍ଠିତ ହେବେ ନାହିଁ...। ଏଠାରେ ଛାଡ଼ିଲେ ଯଥାର୍ଥରେ ମାନହାନି ହେବ ନାହିଁ, ଧର୍ମନଷ୍ଟ ହେବ ନାହିଁ, କିଂବା କୁଳନିଂଦା ହେବ ନାହିଁ। ବିଧବାମାନେ ଘରେ ରହି ଯେପରି ରୀତିରେ ଜୀବନ ନିର୍ବାହ କରୁଛନ୍ତି ସେଥିରେ ହିଁ ଧର୍ମହାନି ଏବଂ କୁଳନିଂଦା ହେଉଛି। ଏଠାରେ ସେମାନେ ଶିକ୍ଷା ଓ ସେବାରେ ଉପଯୁକ୍ତ ହୋଇ ନିଜ ଜୀବନ ସାର୍ଥକ କରିବେ, ପତି ପିତୃ ଉଭୟକୁଳର, ଗୌରବବିଧାନ କରିବେ ଏବଂ ଦେଶର ହିତସାଧନ କରିବେ।' (ସମାଜ, ୯ ମେ ୧୯୨୮)

ଜାତୀୟ କାଗରଣ ଲକ୍ଷ୍ୟରେ ଯୁବ ପିଢ଼ି ଉପରେ ମଧ୍ୟ ଗୋପବଂଧୁଂକର କମ ଭରସା ନ ଥିଲା। ୧୯୦୭ ମସିହାରେ ସେ 'ୟଂଗ ଉତ୍କଳ ଏସୋସିଏସନ' ଗଢ଼ି ସେତେବେଳେ ଉତ୍କଳ ସମ୍ମିଳନୀରେ ରହିଥିବା ରାଜନ୍ୟ ବର୍ଗର କର୍ତ୍ତୃତ୍ୱର ଏକ ବିକଳ୍ପ ଦେବାକୁ ଚେଷ୍ଟା କରିଥିଲେ। ସତ୍ୟବାଦୀର ଗଠନ ପଛରେ ମଧ୍ୟ ଉଦ୍ଦେଶ୍ୟ ଥିଲା ସମାଜ କାମରେ ଅଧିକରୁ ଅଧିକ ସଂଖ୍ୟାରେ ଯୁବ କର୍ମୀ ପ୍ରସ୍ତୁତ କରିବା। ତେଣୁ, ସେ ରାଜନୀତିରେ ଯୋଗ ଦେଲା ପରେ ପ୍ରଥମ ପିଢ଼ିର ନେତୃବୃଂଦଂକ ଆଡ଼କୁ ନ ଡକି ନୀଳକଣ୍ଠ, ଗୋଦାବରୀଶ, ଆଚାର୍ଯ୍ୟ ହରିହର

ଏବଂ କୃପାସିନ୍ଧୁଙ୍କ ଭଳି ଯୁବକ ମାନଙ୍କୁ ପ୍ରସ୍ତୁତ କରିଥିଲେ। ୧୯୨୬-୨୭ ବେଳକୁ ତାଙ୍କ ହାତଗଢ଼ା 'ଅତୀତର ଯୁବକର୍ମୀ'ମାନେ ବୈଚାରିକ ସ୍ତରରେ ଯେତେବେଳେ ତାଂକଠାରୁ ହାତଛଡ଼ା ହେଲେ, ଓଡ଼ିଶାରେ ଜାତୀୟ ଜାଗରଣ ନିମନ୍ତେ ସମସ୍ତ ପ୍ରୟାସ ଏକ ବିଡ଼ମ୍ବନା ଭଳି ମନରେ ନିରାଶା ଜାତ ହେଲା, ସେ ପୁଣିଥରେ ସେହି ଯୁବପିଢ଼ି ଉପରେ ଆଶ୍ରା କଲେ ଏବଂ ନିରାଶାରୁ ନିବୃତ୍ତି ଲୋଡ଼ିଲେ। ଯୁବପିଢ଼ିକୁ ଆହ୍ୱାନ ଦେଇ କହିଲେ, - 'ଓଡ଼ିଶାରେ ଜାତୀୟ ଜାଗରଣ ଚେଷ୍ଟା ବିଡ଼ମ୍ବନା ବୋଲି କେହି କେହି ମନେ କରି ପାରନ୍ତି। ମାତ୍ର ଏପରି ହତାଶାର କାରଣ ନାହିଁ। ଉତ୍କଳର ଯୁବକ ପ୍ରାଣ ଏକାବେଳକେ ନିସ୍ତେଜ, ନିରସ ବା ଦେଶାନୁରାଗ ବିହୀନ ନୁହେଁ। ନାନା ଅଭାବ ଅସୁବିଧା ଦୁଃଖ ଦୈନ୍ୟ ଫଳରେ ଯୁବଭାବ ସେମାନଂକର ମ୍ଳାନ ହୋଇଥିଲେ ହେଁ ମରିନାହିଁ। ଉପଯୁକ୍ତ ଆହ୍ୱାନ ଶୁଣିଲେ ଉତ୍କଳ ଯୁବକ ହୃଦୟରେ ଦେଶାନୁରାଗ ବହ୍ନି ପ୍ରଜ୍ୱଳିତ ହୋଇ ଉଠିବ। ମାତ୍ର ଉତ୍କଳ ଯୁବକ, ତୁମକୁ ଡାକିବାକୁ କେହିନାହିଁ। ସମଗ୍ର ଦେଶ ଡାକୁଛି। ନିଜେ ନିଜେ ତାହା କାନ ଡେରି ଶୁଣ; କାର୍ଯ୍ୟଦ୍ୱାରା ତାହାର ଉତ୍ତର ଦିଅ।' (ସମାଜ ୩୦ ମେ ୧୯୨୮)

ଜାତୀୟ ଜାଗରଣକୁ ନେଇ ଗୋପବଂଧୁ ଦାସଂକ ମନରେ ନିରାଶା ଜାଗିଛି। ମାତ୍ର ସେହି ନିରାଶା ସାମୟିକ। ତାକୁ ଭ୍ରମାତ୍ମକ ବୋଲି ସେ ନିଜେ ପର ମୂହୁର୍ତ୍ତରେ ଦୃଢ଼ ସ୍ୱରରେ କହିଛନ୍ତି। ଆଶାବାଦରୁ ସେ ଓହରି ନାହାନ୍ତି। ଜାତୀୟ ଜାଗରଣ ହେବ, ଜାତି ଉଠିବ, ସମାଜ ନିଶ୍ଚୟ ଦିନେ ସତ୍ୟ, ଧର୍ମ ପଥରେ ଚାଲିବ- ଏହି ଦୃଢ଼ ବିଶ୍ୱାସ ଜୀବନର ଶେଷ ଯାଏ ତାଂକଠାରୁ ଅଲଗା ହୋଇ ନାହିଁ। ଜୀବନର ବୋଧହୁଏ ଶେଷ ଲେଖାରେ ସେ ବର୍ଦ୍ଦୋଲିରେ ସତ୍ୟାଗ୍ରହ କରୁଥିବା କୃଷକ ପାଇଁ ସାହାଯ୍ୟ ପ୍ରାର୍ଥନା କରିଥିଲେ। ସାହାଯ୍ୟର ପରିମାଣ ଉପରେ ତାଂକର ଯୋର ନ ଥିଲା। ଉଦ୍ଦେଶ୍ୟ ଥିଲା, ଏହି ସହାୟତା ଦେଇ ଓଡ଼ିଶାବାସୀ ମହାଭାରତୀୟତାରେ ଓତଃପ୍ରୋତଃ ହେବାର ଅବସର ପାଇବ, କୂପମଣ୍ଡୁକତାରୁ ନିବୃତ୍ତି ପାଇବ; ଅନ୍ୟର ଦରକାର ବେଳେ ସାଧ୍ୟମତେ ଓଡ଼ିଶାବାସୀ ଅଣ୍ଟଭିଡ଼ି ବାହାରି ପଡ଼ନ୍ତି ବୋଲି ବିଶ୍ୱାସ ସୃଷ୍ଟି କରିବ। ଗୋପବଂଧୁଂକର ଉଦ୍ଦେଶ୍ୟ ଥିଲା, 'ବର୍ଦ୍ଦୋଲିର ମହାଜାତୀୟ ଯଜ୍ଞରେ ଓଡ଼ିଶା ନାମରେ ଆହୁତି ପଡୁ।' ସେ ଲେଖିଥିଲେ, ବର୍ଦ୍ଦୋଲି ଆଂଦୋଳନରେ ଯତକିଂଚିତ

ସାହାଯ୍ୟ କରିବା ଦ୍ୱାରା ଭାରତୀୟ ମୁକ୍ତି ସେତୁରେ ଗୁଣ୍ଡୁଚି ମୂଷା ଧୂଳି ଝାଡ଼ିବା ହୋଇପାରେ। ମାତ୍ର ଗୁଣ୍ଡୁଚିର ସେତୁବଂଧ ନିର୍ମାଣରେ ଯେ ଭାଗ ଅଛି, ଏକଥା ଆଜି ଯୁଗ ଯୁଗାନ୍ତର ପରେ ସୁଦ୍ଧା ତ ରହିଛି। ବାହାରର କୌଣସି ଜାତୀୟ ଆଂଦୋଳନରେ ସାହାଯ୍ୟ କରିବା ଦ୍ୱାରା ଓଡ଼ିଆମାନଂକର କୂପମଣ୍ଡୁକତା ଓ ସଂକୀର୍ଣ୍ଣତା ଦୂର ହେବ ଏବଂ ପ୍ରାଣରେ ଉଦାର ଜାତୀୟଭାବ ପ୍ରକାଶିବ।' (ସମାଜ, ୧୩ ଜୁନ ୧୯୨୮)

ଗୋପବଂଧୁଂକର 'ଉଦାର ଜାତୀୟ ଭାବ' ନା କୌଣସି ଜାତି ବିରୁଦ୍ଧରେ ଉଦ୍ଦିଷ୍ଟ ଥିଲା, ନା ସ୍ୱ-ଜାତିର ସ୍ୱାତନ୍ତ୍ର୍ୟକୁ ଉପେକ୍ଷା କରୁଥିଲା। ସାଂଗରେ ସବଳର ଅତ୍ୟାଚାର ଓ ଅନାଚାରକୁ ନେଇ ଏହା ଆଦୌ ମୌନ ନ ଥିଲା। ବିଷମତା ବିରୁଦ୍ଧରେ ତାହା ଏକ ଶାନ୍ତ ସରଳ ବାଣୀ ସଦୃଶ ଥିଲା। ବିଶ୍ୱ ମାନବତାକୁ ତାହା ଲକ୍ଷ୍ୟ ଓ ଆଦର୍ଶ ବୋଲି ବୁଝିଥିଲା। ସେ ଯେତେ ମାତ୍ରାରେ ବ୍ୟଥିତ ଥିଲେ, ଅନ୍ନ ସଂସ୍ଥାନ ପାଇଁ କଲିକତାର ପରିତ୍ୟକ୍ତ ପରିବେଶରେ ରହୁଥିବା ପ୍ରବାସୀ ଓଡ଼ିଆ ଯୁବକ ପାଇଁ, ତତୋଽଧିକ ମାତ୍ରାରେ ଚିନ୍ତା କରୁଥିଲେ ବର୍ଦ୍ଦୋଲିର କୃଷକ ପାଇଁ, ଆଫ୍ରିକାର ନିଗ୍ରୋମାନଂକ ପାଇଁ ଏବଂ ରୁଷରେ ଜାର ଅତ୍ୟାଚାରରେ ଅତ୍ୟାଚାରିତ ସାଧାରଣ ଲୋକଂକ ପାଇଁ। ଦୁନିଆଁର ସବୁ ଅତ୍ୟାଚାରିତଂକ ମୁକ୍ତି ସଂଗ୍ରାମରେ ଅନ୍ତତଃ କିଛି ନ ହେଲେ ଗୁଣ୍ଡୁଚି ମୂଷା ଭଳି ଧୂଳି ଝାଡ଼ିବା ସକାଶେ ନିଜ ଦେହକୁ ମାଟିରେ ମିଶାଇ ଦେବାର ଅଭିଳାଷ ରଖିଥିଲେ। ତାଂକ ଦୃଷ୍ଟିରେ ଏହି ଆତ୍ମବଳିଦାନ କୌଣସି ତ୍ୟାଗ ନୁହେଁ, କେବଳ ଏକ ସାମାଜିକ କର୍ତ୍ତବ୍ୟ ମାତ୍ର ! ସମସ୍ତ ପ୍ରତିକୂଳ ପରିସ୍ଥିତି ସତ୍ତ୍ୱେ ସେ ଉକ୍ତ ସାମାଜିକ କର୍ତ୍ତବ୍ୟରୁ କଦାଚିତ ଓହରି ନାହାନ୍ତି। ବରଂ ଏହାକୁ ବ୍ୟକ୍ତିଗତ ସ୍ତରରେ ସୀମିତ ନ ରଖି ଏକ ସାମାଜିକ ପରଂପରାରେ ପରିଣତ କରିବାକୁ ପ୍ରୟାସ କରିଛନ୍ତି।

ଆଜି ଏକବିଂଶ ଶତାବ୍ଦୀରେ ଶୁଦ୍ଧ ମାନବତା ଏକ ବୃଥା ପ୍ରୟାସ, ମୋହାବିଷ୍ଟ ପ୍ରଳାପର ଆଖ୍ୟା ପାଏ। ତାକୁ 'ୟୁଟୋପିଆ' (Utopia) କହି ଆମେ ହସି ଉଡ଼େଇ ଦିଅନ୍ତି। ଜାହିଁ କେଉଁଠି ତାକୁ ଆଦରିଥିବା, ଜିଇଁବାର ବାଟ ମଣିଥିବା ଲୋକଟି ଏକଲା ପଡ଼ିଯାଏ। ଯୁକ୍ତି ତା' ଦେଇ ହେବନି; ତର୍କ କରି ସେ ଅନ୍ୟକୁ ସେହି ସାମାଜିକ କର୍ତ୍ତବ୍ୟ ଆଡ଼କୁ ଟାଣି ପାରିବନି; ବିଶ୍ୱାସ ହିଁ ତା'ର

ବଳ! ଅନ୍ୟ ପକ୍ଷରେ ମଧ୍ୟବର୍ଗୀୟ ସମାଜ ଏକ ବଡ଼ ସାମାଜିକ ବିପ୍ଳବକୁ ଅପେକ୍ଷା କରିବା ବାହାନାରେ ବସ୍ତୁତଃ ଚୁପ୍ ରହେ; ସବୁ ସମସ୍ୟାକୁ ଏକ ବୃହତ ବିଶ୍ୱ ସମସ୍ୟାର ଭାଗ ରୂପରେ ଦେଖି ତହିଁରେ ତା'ର ବ୍ୟକ୍ତିଗତ ଉଦ୍ୟମ ନିରର୍ଥକ ହେବ ବୋଲି ଯୁକ୍ତି କରେ ଏବଂ ସେହି ଆଳରେ ନିଜେ ବି ସମାଧାନ ହେବା ବଦଳରେ ସମସ୍ୟା ହୁଏ; ଲୁଣ୍ଠିତ ଧନରୁ ଯତ୍‌କିଂଚିତ୍ ହଡ଼ପ କରିବାରୁ ମଧ୍ୟ ବିରତ ହୁଏ ନାହିଁ। ଫଳରେ 'ବୃହତ ବିଶ୍ୱ ସମସ୍ୟା' ପ୍ରକାରାନ୍ତରେ 'ବୃହତ୍ତର' ହୁଏ। ଏ ଯେଉଁ ସାମାଜିକ ସଂକଟର ବେଳ, ସେତେବେଳେ 'ଅତୀତ' ହେବା ସତ୍ତ୍ୱେ ଗୋପବଂଧୁ ଏବଂ ତାଂକ ଭଳି ଆଉମାନେ କେତେ ଯେ ପ୍ରାସଂଗିକ, ତା'ର କଳନା ନାହିଁ।

ଗୋପବଂଧୁଂକର ପାରିବାରିକ ଦୁଃଖ ଅସୀମ, ତା' ସତ୍ତ୍ୱେ ସାମାଜିକ କାମକୁ ଜୀବନର ବ୍ରତ ଭାବରେ ଗ୍ରହଣ କରି ଘରଛଡ଼ା ସନ୍ୟାସୀ ଭଳି ରହିଛନ୍ତି। ସାମାଜିକ ପରିସ୍ଥିତି ସେତେବେଳେ ପ୍ରତିକୂଳ, ତା' ସତ୍ତ୍ୱେ ଅନ୍ୟମାନଂକୁ ସାଂଗରେ ମହାଭାରତୀୟ ଜାତୀୟତାର ଗଂଗାକୁ ଓଡ଼ିଶାରେ ପ୍ରବାହିତ କରାଇଛନ୍ତି, ଓଡ଼ିଶାର ରାଜନୈତିକ ଜୀବନକୁ କୂପମଣ୍ଡୁକତାରେ ବୁଡ଼ି ନ ଯିବାକୁ ସଚ୍ଚେତ କରିଛନ୍ତି। ସେ ଥିଲା ସର୍ବଭାରତୀୟ ଚେତନାର ଯୁଗ, ଗାଂଧି ଆଂଦୋଳନରେ ବୁଡ଼ି ଯିବାର ଯୁଗ। ଗୋପବଂଧୁ ତହିଁରେ ବୁଡ଼ିଛନ୍ତି, ଓଡ଼ିଶାକୁ ବି ସମାହିତ କରିଛନ୍ତି। ହେଲେ ସାଂଗରେ ଓଡ଼ିଶାର ସ୍ୱାତନ୍ତ୍ୟ ପ୍ରଶ୍ନକୁ ବି ଉପେକ୍ଷା କରି ନାହାନ୍ତି। ବରଂ ଜାତୀୟ କଂଗ୍ରେସର କଣ୍ଠରେ ଭାଷା ଭିତ୍ତିରେ 'ଉତ୍କଳ' ଏକ 'ପ୍ରଦେଶ' ବୋଲି ଘୋଷଣା କରେଇଛନ୍ତି, 'ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟୀ'ର ଗଠନ କରିଛନ୍ତି। ପରବର୍ତ୍ତୀ ସମୟରେ ଆଂଚଳିକ ଭାଷା ଭିତ୍ତିରେ ଯାହି ଯେଉଁଠି ନୂଆଁ ପ୍ରଦେଶର ଗଠନ ହୋଇଛି, ତାକୁ 'ଉତ୍କଳ ପ୍ରଦେଶ' ଆଧାର ଦେଇଛି। ଆଜିର ମଧ୍ୟବର୍ଗ ପାଇଁ ଯାହା ସବୁ ପ୍ରତିକୂଳ, ଗୋପବଂଧୁଂକର ସମୟରେ ସେହି ପ୍ରତିକୂଳତାର ମାତ୍ରା କେବେ ଉଣାଥିବ ବୋଲି କୁହାଯାଇ ନ ପାରେ। ତା' ସତ୍ତ୍ୱେ ସେ ନିଜର ବ୍ୟକ୍ତିକ ଉଦ୍ୟମକୁ ସାମୂହିକ ଉଦ୍ୟମରେ ପରିଣତ କରିଛନ୍ତି। ସ୍ୱଚ୍ଛ ମନରେ ସାଧାରଣ ଲୋକଂକ ସାଂଗରେ ମିଶିଛନ୍ତି ବୋଲି ପ୍ରତ୍ୟେକ ସଂକଟରୁ ତାଂକୁ ଆଗକୁ ବଢ଼ିବା ସକାଶେ ରାସ୍ତା ଦେଖା ପଡ଼ିଛି। ଏହି ସାଧାରଣସର୍ବସ୍ୱତା ତାଂକର ସଂପତ୍ତି। ଗୋପବଂଧୁ ନିଜ ଜୀବନରେ ବହୁତ କିଛି ରୋଜଗାର କରି ନ ଥିଲେ; କୋଠାବାଡ଼ି କରି ନାହାନ୍ତି ; କେବେ

କ୍ଷମତାଧାରୀ ହୋଇ ନାହାନ୍ତି; ପରିବାରଜନଂକୁ ରାଜନୈତିକ ଉତ୍ତରାଧିକାରୀ ଘୋଷଣା କରି ନାହାନ୍ତି; ଏପରିକି ତାଂକ ମୋଟ ଜୀବନ କାଳ ମାତ୍ର ପଚାଶ ବର୍ଷରୁ ଉର୍ଦ୍ଧ୍ୱ ନୁହେଁ। ତା' ସତ୍ତ୍ୱେ ସେହି ସାଧାରଣସର୍ବସ୍ୱତା ରୂପକ ସଂପତ୍ତି ତାଂକୁ ଏତେ ଦିନ ଯାଏଁ ଅମର କରି ରଖିଛି ଏବଂ ଆଗକୁ ମଧ୍ୟ ଅମର କରି ରଖିବ- ଏଥିରେ ଦ୍ୱିରୁକ୍ତି ନାହିଁ।

## (ଗ)

ଗୋପବଂଧୁ ଦାସ ଆତ୍ମ-ଜୀବନୀ ଲେଖି ନାହାନ୍ତି। ମାତ୍ର ତାଂକ ସଂବଂଧରେ ଅନେକ ଜୀବନୀ ଲେଖା ଯାଇଛି। ଶ୍ରୀରାମଚଂଦ୍ର ଦାଶଂକ ଇଂରାଜୀରେ ଲିଖିତ 'ପଣ୍ଡିତ ଗୋପବଂଧୁ ଦାସ', ଚଂଦ୍ର ଶେଖର ମହାପାତ୍ରଂକର 'ସ୍ୱାଧୀନତା ସଂଗ୍ରାମ ଓ ପଣ୍ଡିତ ଗୋପବଂଧୁ', ସୂର୍ଯ୍ୟ ନାରାୟଣ ଦାସଂକର 'ଯୁଗପୁରୁଷ ଗୋପବଂଧୁ' ନିତ୍ୟାନଂଦ ଶତପଥୀଂକର 'ହେ ସାଥି ! ହେ ସାରଥି', ଚିନ୍ତାମଣି ଦାଶଂକର 'କବି ଗୋପବଂଧୁ', ଗୋପବଂଧୁ ଶତବର୍ଷିକୀ ଦ୍ୱାରା ପ୍ରକାଶିତ 'ଗୋପବଂଧୁ ମୂଲ୍ୟାୟନ', ପୂଜ୍ୟପୂଜା ସଂସଦ ଦ୍ୱାରା ପ୍ରକାଶିତ 'ଗୋପବଂଧୁ ପରିକ୍ରମା', ଅର୍ଚ୍ଚନା ନାୟକଂକର 'ପଣ୍ଡିତ ଗୋପବଂଧୁ ଦାସ', ଶ୍ରୀରାମଚଂଦ୍ର ଦାଶଂକର ଓଡ଼ିଆରେ ଲିଖିତ 'ଗୋପବଂଧୁ ଦାସ' ଏବଂ ଗୋପୀନାଥ ମହାନ୍ତି ଦ୍ୱାରା ପ୍ରଣୀତ ଗୋପବଂଧୁଂକର ସେବକ ରାମା ବାରିକ ମୁହଁରୁ ଶୁଣା 'ଦାସ ଆପଣେ'। ଗୋପବଂଧୁଂକୁ ଜାଣିବା-ବୁଝିବାରେ ଏହି ପ୍ରତ୍ୟେକଟି ଲେଖା ସହାୟକ ନିଶ୍ଚୟ- ଏଥିରେ କିଛି କହିବାର ନାହିଁ। ତା' ସତ୍ତ୍ୱେ ଗୋପବଂଧୁଂକୁ ନେଇ ଅଧିକ ଆଲୋଚନା କଦାପି ଅଲୋଡ଼ା ନୁହେଁ। ଗୋପବଂଧୁ ଏକ, ତାଂକ ବିଚାର ଏକ। ମାତ୍ର ତାଂକୁ ଦେଖିବାକୁ ପ୍ରୟାସ କରୁଥିବା ପ୍ରତ୍ୟେକ ଲେଖକ ଅଲଗା, ସେମାନଂକର ଦୃଷ୍ଟିକୋଣ ଭିନ୍ନ ଭିନ୍ନ। ଗୋପବଂଧୁକୁ ଦେଖିବା ବୁଝିବା ମାଧ୍ୟମରେ ପ୍ରତ୍ୟେକ ନିଜ ନିକକୁ ଅଭିବ୍ୟକ୍ତ କରନ୍ତି, ନିଜର ଦୃଷ୍ଟିକୋଣକୁ ପାଠକ ଆଗରେ ରଖିବାକୁ ପ୍ରୟାସ କରନ୍ତି। ତେଣୁ, ଗୋପବଂଧୁ ହୁଅନ୍ତୁ ବା ଅନ୍ୟ କେହି, ତାଂକ ସଂବଂଧରେ ନୂଆଁ ଆଲୋଚନା ନିରର୍ଥକ ନୁହେଁ।

ଗୋପବଂଧୁ ଅନେକ ଲେଖିଛନ୍ତି। ନିଜ ସଂପାଦିତ 'ସତ୍ୟବାଦୀ' ଓ 'ସମାଜ'ରେ ନିୟମିତ ଭାବରେ ସଂପାଦକୀୟ ଲେଖିଛନ୍ତି; 'ମୁକୁର' ଓ 'ଆଶା'ରେ, ଲେଖିଛନ୍ତି; ତା' ବାହାରେ ପାଟନାରୁ ପ୍ରକାଶିତ 'ସର୍ଚ୍ଚଲାଇଟ'

ପତ୍ରିକାରୁ ଆରଂଭ କରି କଟକରୁ ପ୍ରକାଶିତ 'ଉତ୍କଳ ଦୀପିକା' ଯାଏଁ ଅନେକ ପତ୍ର ପତ୍ରିକାରେ ସଂପାଦକଙ୍କୁ ପତ୍ର ସ୍ତମ୍ଭରେ ଲେଖିଛନ୍ତି। ପ୍ରସଂଗ କଥା ଯଦି ବିଚାରକୁ ନିଆଯାଏ ଆଫ୍ରିକା ଠାରୁ ଅଷ୍ଟ୍ରେଲିଆ ଯାକେ, ନୀଳଗିରି ପ୍ରଜା ଆଂଦୋଳନ ଠାରୁ ଆରଂଭ କରି ରୁଷର ଜାର ଶାସନ ଯାକେ, ଏବଂ ଖଦିଠାରୁ ଆରଂଭ କରି ଲୁଣ ଟିକସ ଯାକେ, ପୁଣି ଶ୍ରମିକ ଆଂଦୋଳନ ଠାରୁ ବ୍ରହ୍ମଚର୍ଯ୍ୟ ଯାକେ। ସେ ସମୟର ଇତିହାସ ଓ ଓଡ଼ିଶାର ବୌଦ୍ଧିକ ଚିନ୍ତନକୁ ବୁଝିବା ପାଇଁ ଗୋପବଂଧୁ ହେବେ ଏକ ପ୍ରମୁଖ ସ୍ରୋତ ସାମଗ୍ରୀ। ତାଂକ ଲେଖାର ବିଶେଷତ୍ୱ ହେଲା ସ୍ୱଚ୍ଛ ଚିନ୍ତନ ଓ ସରଳ ଭାଷା। ସବୁ କଥାକୁ ସେ ସିଧା ସିଧା କହୁଥିଲେ। ତାଂକ ସାଂଗରେ କେହି ଅମତ ହୋଇ ପାରନ୍ତି, ମାତ୍ର ତାଂକ ରଚନାରୁ ସେ କ'ଣ କହୁଛନ୍ତି ଜାଣି ହେଲାନି ବୋଲି କେହି ପାଠକ ଅଭିଯୋଗ କରିପାରିବେନି। ଗୋପବଂଧୁଂକ ଶକ୍ତି ହେଲା ତାଂକର ପ୍ରାଣଖୋଲା ଭାଷା। କୌଣସି ପ୍ରସଂଗ ଉପରେ ଟିପ୍ପଣୀ ଦେଲାବେଳେ, ମନେହୁଏ ସେ ନିଜେ ଚେଷ୍ଟା କରୁଥାନ୍ତି ପ୍ରସଂଗଟିକୁ ଜାଣିବା ପାଇଁ, ବୁଝିବା ପାଇଁ। ତାଂକ ଅଭିବ୍ୟକ୍ତିରେ ସବୁ କିଛି ଜାଣିଥିବାର ଆତ୍ମଗର୍ବ ନ ଥାଏ। ତାଂକ ଶୈଳୀରେ ଜ୍ଞାନ ବିତରକ ହେବାର ବୃଥା ଗର୍ବ ନ ଥାଏ। ପାଠକକୁ ଲାଗେ, ଯେମିତି ସେ ବି କହି ପାରିଥାନ୍ତା କଥାଟିକୁ; ସାମାଜିକ ଓ ରାଜନୈତିକ ବିଚାର ବିମର୍ଶ ବେଳେ ତା'ର ବି ଭାଗନେବାର ପୂରା ତାକତ ରହିଛି। ଅନ୍ୟ ଅର୍ଥରେ କହିଲେ, ଗୋପବଂଧୁ ସାଧାରଣ ପାଠକଠାରେ ନିରନ୍ତର ଆତ୍ମଶକ୍ତିର ଉଦ୍ରେକ କରିବାକୁ ପ୍ରୟାସ କରିଛନ୍ତି, ନିଜ ଅନ୍ତଃଶକ୍ତିକୁ ଚିହ୍ନିବାକୁ ପ୍ରବର୍ତ୍ତାଇଛନ୍ତି। ପାଠକ ଗୋପବଂଧୁଂକ ଲେଖାରେ ନିଜକୁ ଖୋଜି ପାଇଛି ବୋଲି, 'ସମାଜ' ଲୌକିକ ସ୍ତରରେ କେବଳ ଏକ ନିର୍ଦ୍ଦିଷ୍ଟ ଖବର କାଗଜର ନାମ ହୋଇ ରହିଲା ନାହିଁ, ବରଂ ଓଡ଼ିଆ ଖବରକାଗଜର ଏକ ସମାନାର୍ଥକ ଶବ୍ଦ ହୋଇଗଲା। ଏହା ଓଡ଼ିଆ ସାଂବାଦିକତା କ୍ଷେତ୍ରରେ ଏକ ବଡ଼ ବିପ୍ଳବ ନିଶ୍ଚୟ। ସାଂଗରେ ଓଡ଼ିଆ ଗଦ୍ୟ ସାହିତ୍ୟ ନିମନ୍ତେ ମଧ୍ୟ ଏହା ଏକ ବଡ଼ ଉପଲବ୍ଧି- ଏଥିରେ ସଂଦେହ ନାହିଁ।

ଜଣେ ପୋଖତ ପ୍ରାବଂଧିକ ଯେଉଁ ପ୍ରକାରେ ପ୍ରସ୍ତୁତି କରି ନିବଂଧଟିଏ ଲେଖେ, ସେହି ପେସାଦାର ପ୍ରସ୍ତୁତି ଗୋପବଂଧୁଂଜ ଲେଖାରେ ଦେଖାଯାଏ ନାହିଁ। ତାଂକ ବ୍ୟସ୍ତ ଦିନଚର୍ଯ୍ୟାକୁ ନିରୀକ୍ଷଣ କଲେ ମନେ ହେବ, ତାହା ତାଂକ ପକ୍ଷରେ

ସଂଭବ ନ ଥିଲା। ସେହି ଦୃଷ୍ଟିରୁ ତାଂକୁ ପେଷାଦାର ପ୍ରାବଂଧିକ ଗୋଷ୍ଠୀରେ ରଖି ହେବ ନାହିଁ। ପ୍ରସଂଗଗୁଡ଼ିକୁ ନେଇ ସ୍ୱତଃସ୍ଫୂର୍ତ୍ତ ଭାବେ ଟୀକାଟିପ୍ପଣୀଟିଏ ସେ ଦିଅନ୍ତି। ତାହା ପ୍ରକାଶିତ ହୁଏ। ତହିଁରେ ବିଷୟଟିକୁ ନେଇ ଆବଶ୍ୟକୀୟ ସୂଚନା ସାଂଗରେ ଗୋପବଂଧୁଂକର ସ୍ୱକୀୟ ମତଟିଏ ରହିଥାଏ। ସେ ଯଦି ଲେଖାଟିଏ ଶେଷ କରିବା ପୂର୍ବରୁ ଆହୁରି କିଛି ସମୟ ପାଇଥାନ୍ତେ, ହୁଏତ ପ୍ରତ୍ୟେକ ଲେଖା ତାଂକର ଆହୁରି ଶାଣିତ ହୋଇଥାନ୍ତା। ମାତ୍ର ସେହି ବିଶେଷ ପ୍ରସ୍ତୁତି ପ୍ରକ୍ରିୟାରେ କେତେ ଯେ ବିଷୟରେ ସେ ଟିପ୍ପଣୀ ଦେଇ ପାରିନଥାନ୍ତେ, ତା' ବି ଦେଖିବାର କଥା। ଆଜି ତାଂକର ମୃତ୍ୟୁର ଅଶୀ ବର୍ଷ ପରେ ଲାଗୁଛି ସେ ଯଦି ଆହୁରି ଅଧିକ ଲେଖି ଦେଇ ଯାଇଥାନ୍ତେ, ଥାଆନ୍ତା ପଛେ ତହିଁରେ କେତୋଟି ବ୍ୟାକରଣଗତ ଅଶୁଦ୍ଧି ବା ସଂପାଦନାଗତ ଭୁଲ, ତାଂକ ବିଚାର ଓ ତଦକାଳୀନ ସମାଜକୁ ବୁଝିବା କେତେ ଅଧିକ ଆନଂଦଦାୟୀ ନ ହୋଇଥାନ୍ତା ! ତାଂକର ପ୍ରତ୍ୟେକ ରଚନା ଇତିହାସ ଲିଖନ ନିମନ୍ତେ ପ୍ରମୁଖ ସ୍ରୋତସାମଗ୍ରୀ। ତେଣୁ, ସାମଗ୍ରୀ ସୀମିତ ନ ହୋଇ ଅଧିକ ହେଲେ ଇତିହାସ ପଠନ-ପାଠନ ଅଧିକ ଆନଂଦଦାୟୀ ହେବ ନିଶ୍ଚୟ !

ଦ୍ୱିତୀୟତଃ ଗୋପବଂଧୁ ହୋଇ ନ ଥାନ୍ତୁ ପଛକେ ଜଣେ 'ପୋଖତ' ପ୍ରାବଂଧିକ, ମାତ୍ର ତଦକାଳୀନ ସମାଜର ସେ ଥିଲେ ଜଣେ ପୋଖତ ବୁଦ୍ଧିଜୀବୀ, ଓଡିଶା ଜାତୀୟତା ସଂଗ୍ରାମର ବଡ଼ ମଂଗୁଆଳ; ଗୋପବଂଧୁ ବୋଧହୁଏ ହେବେ ଆଧୁନିକ ଓଡ଼ିଶାର ପ୍ରଥମ ସଦାବେଳିଆ ରାଜନୀତିକ କର୍ମୀ। ଏପରିକି ଓକିଲାତି ବି ସେ ବହୁ ପୂର୍ବରୁ ଛାଡ଼ି ସାରିଥିଲେ। ତାଂକ ପୂର୍ବରୁ କେହି ବୁଦ୍ଧିଜୀବୀ ରାଜନୀତିକୁ ସଦାବେଳିଆ କାମ ଭାବରେ ଗ୍ରହଣ କରିଥିଲେ ବୋଲି ମନେ ହୁଏନା। କେବଳ ବୁଦ୍ଧିଜୀବୀ ମହଲରେ ନୁହେଁ, ସାଧାରଣ ଲୋକଂକ ମଧ୍ୟରେ ଗୋପବଂଧୁଂକର ଯେଉଁ ଲୋକପ୍ରିୟତା ରହିଥିଲା ତା'ର ଉଦାହରଣ ମିଳେ ୧୯୨୧ ମସିହା ଅକ୍ଟୋବର-ନଭେଂବର ମାସରେ ତାଂକ ବିରୁଦ୍ଧରେ ଖୋର୍ଦ୍ଧାଠାରେ ଚାଲିଥିବା ବିଚାର ସମୟର ଜନଗହଳିରୁ। ସମାଜରେ ପ୍ରକାଶିତ ଏକ ଖବର 'ସତ୍ୟ ହେଲେ ସାଂଘାତିକ'କୁ ନେଇ ପୋଲିସ ତାଂକୁ ଗିରଫ କଲା ଏବଂ ଜାମିନରେ ଗୋପବଂଧୁ ଯିବାକୁ ମନା କରିବାରୁ ଖୋର୍ଦ୍ଧାରେ ତାଂକର ବିଚାରର ଶୁଣାଣି ଚାଲିଲା। ପ୍ରତ୍ୟେକ ଦିନ ଶୁଣାଣୀ ବେଳେ ପ୍ରାୟ ୩୦ ହଜାର ଲୋକ ଗାଁ ଗହଳିରୁ ତାଂକ ପ୍ରିୟ ନେତାଂକୁ ଦେଖିବାକୁ ଆସୁଥିଲେ ବୋଲି ବିଚାର

ଦାୟିତ୍ୱରେ ଥିବା ମାଜିଷ୍ଟ୍ରେଟ୍ ସୁରେଶ ଚନ୍ଦ୍ର ବୋଷ ଉଲ୍ଲେଖ କରିଛନ୍ତି। ଲୋକ ଗହଳି ଏତେ ବଢ଼ିଲା ଯେ ଶେଷରେ ଶୁଣାଣୀ ବାହାର ହତାରେ ହେଲା ଏବଂ ଉପସ୍ଥିତ ଜନତାଂକୁ ଶାନ୍ତ ରଖିବା ପାଇଁ ବଂନ୍ଦୀ ଗୋପବଂଧୁଂକୁ ହସ୍ତକ୍ଷେପ କରିବାକୁ ପଡ଼ିଥିଲା। କେବଳ ସେତିକି ନୁହେଁ, ସରକାର ଯେତେବେଳେ ଗୋପବଂଧୁଂକୁ ନିହାତି ଦଣ୍ଡ ଦିଆଯିବା କଥା ବୋଲି ମାଜିଷ୍ଟ୍ରେଟଂକ ଉପରେ ଚାପ ଦେଲେ, ଅଯଥା ଜନ ଅସନ୍ତୋଷର ଶିକାର ନ ହେବାକୁ ସୁରେଶ ଚଂଦ୍ର ବୋଷଂକ ପୂର୍ବରୁ ଦୁଇଜଣ ମାଜିଷ୍ଟ୍ରେଟ ଲଂବା ଛୁଟୀରେ ଚାଲିଗଲେ। ଏଭଳି ଜଣେ ଲୋକ ନେତା ପୁଣି ଯେ ତାଂକର ସବୁ କାମର ଭିଡ଼ ଭିତରେ ଅସଂଖ୍ୟ ଲେଖା ଛାଡ଼ି ଯାଇଛନ୍ତି, ତାହା ଆଧୁନିକ ଓଡ଼ିଶା ଇତିହାସ ପାଇଁ କମ ଉପଲବ୍ଧି ନୁହେଁ। ଅନ୍ୟ ଶବ୍ଦରେ କହିଲେ, ମହାତ୍ମା ଗାଂଧି ଯେମିତି ମିଳିଥିବା ଲଫାପାର ଖୋଳରେ, ଆସିଥିବା ଚିଠିର ପଛ ପଟେ ଶୀଘ୍ରାତିଶୀଘ୍ର ନିଜର ବିଚାରକୁ କାଗଜ କଲମରେ ସାଇତି ରଖୁଥିଲେ, ଗୋପବଂଧୁ ମଧ୍ୟ ସେମିତି ଟ୍ରେନରେ ବସି, ଜେଲ୍‌ରେ ରହି, ପ୍ରବାସକୁ ଯାଇ ସୁଦ୍ଧା କଦାପି ଲେଖାରୁ ନିବୃତ୍ତ ରହୁ ନ ଥିଲେ। କିଛି ଜାଣିବା ଏବଂ ଜଣେଇବା ପାଇଁ ଯେତେବେଳେ ତାଂକର ଆଗ୍ରହ ଜନ୍ମିଛି ସେ ନିଜର ବିଚାରକୁ ସ୍ୱତଃସ୍ଫୁର୍ତ୍ତ ଭାବରେ ବାଢ଼ି ଥୋଇଛନ୍ତି। ନିଜର ବିଚାରକୁ ଘଷିବା ମାଜିବା ସକାଶେ, ନିଜ ଚିନ୍ତନକୁ ଶାଣିତ କରିବା ସକାଶେ ସେ ଅଟକି ନାହାନ୍ତି, ସମୟର ଅପବ୍ୟୟ କରି ନାହାନ୍ତି। ତାଂକର ବୌଦ୍ଧିକତା ଆଗକୁ ମାଡ଼ିଯିବାରେ ରହିଛି, ଅଟକିବାରେ ନାହିଁ। ଲେଖାଗୁଡ଼ିକୁ 'ପୂରା ଠିକ' କରିବାକୁ ଅପେକ୍ଷା କରିଥିଲେ ତାଂକ ଭଳି ଲୋକ ନେତାଂକ ପକ୍ଷରେ ବୌଦ୍ଧିକତା ବଦଳରେ ବୋଧହୁଏ ତାହା ବିଳାସିତା ହୋଇଥାନ୍ତା ! ମାତ୍ର ୫୦ ବର୍ଷର ସ୍ୱଳ୍ପ ଜୀବନ କାଳ ମଧ୍ୟରେ ଗୋପବଂଧୁ ଯେତେ ଅଧିକ ସଂଖ୍ୟାରେ ଗାଁ ଗାଁ ବୁଲିଛନ୍ତି, ଯେତେ ଅଧିକ ସଂଖ୍ୟାରେ ଲୋକଂକୁ ଭେଟିଛନ୍ତି, ସେତେ ଅଧିକ ସଂଖ୍ୟାରେ ପ୍ରତିଟି ସମସାମୟିକ ପ୍ରସଂଗକୁ ନେଇ ଟୀକାଟିପ୍ପଣୀ କରିଛନ୍ତି। ତାଂକର ପ୍ରତ୍ୟେକ ଟୀକାଟିପ୍ପଣୀ ତାଂକ ଜୀବନ ଓ ରାଜନୀତିକୁ ଚର୍ଚ୍ଚା କରିବା ପାଇଁ ଭିତ୍ତି ଦିଅନ୍ତି। ସମକାଳୀନ ଓଡ଼ିଶାର ନବଜାଗରଣକୁ ଅଧ୍ୟୟନ କରିବା ପାଇଁ ଅବସର ପ୍ରଦାନ କରନ୍ତି।



(୨୦୦୯)

# ରମାଦେବୀଙ୍କ ଦୃଷ୍ଟି ଓ ଜାତୀୟତା ଆଂଦୋଳନର ପରିଧି

ବିଂଶ ଶତାବ୍ଦୀର ଓଡ଼ିଶା ରାଜନୀତିରେ ପ୍ରମୁଖତା ପାଇଥିବା କେତେଜଣ ପୁରୁଷଂକ ମଧ୍ୟରେ ଯଦି ନାଁ ପଡ଼ିବ ମଧୁସୂଦନ ଦାସ, ଗୋପବଂଧୁ ଦାସ ଓ ଶହୀଦ ଲକ୍ଷ୍ମଣ ନାୟକଂକର, ତେବେ ମହିଳା ସୂଚୀର ସବା ଆଗରେ ରହିବେ ରମାଦେବୀ। ଓଡ଼ିଶାରୁ ସ୍ୱାଧୀନତା ଆଂଦୋଳନରେ ଭାଗ ନେଇଥିବା ସେ ହେଲେ ପ୍ରଥମ ମହିଳା। ଏଥିପାଇଁ ୧୯୩୦, ୧୯୩୨ ଏବଂ ୧୯୪୨ରେ ସେ ତିନି ଥର କାରାବରଣ କରିଥିଲେ। ୧୯୩୪ ମସିହା ମେ ମାସରେ ଦୁଇ ସପ୍ତାହ ଧରି ଯେତେବେଳେ ମହାତ୍ମା ଗାଂଧି ଓଡ଼ିଶାରେ ହରିଜନ ପଦଯାତ୍ରା କଲେ, ତହିଁରେ ରମାଦେବୀ ପ୍ରମୁଖ ଭୂମିକା ନେଇଥିଲେ। ସ୍ୱାଧୀନତା ପରେ ବି ଭୂଦାନ, ସର୍ବୋଦୟ ଆଦି କାମରେ ପ୍ରମୁଖ  ଭୂମିକା ନେଇଥିଲେ। ସାଧାରଣତଃ ଧାରଣା ଯେ ନାରୀ ମାନେ ଘରକାମ; ତା' ଯୋଗୁଁ ସେମାନେ ବାହାର କାମରେ ସଂଶ୍ଳିଷ୍ଟ ହୋଇ ପାରନ୍ତି ନାହିଁ। ଆଗ୍ରହ ସତ୍ତ୍ୱେ ବାହାର କାମରେ ମନୋନିବେଶ କରି ପାରନ୍ତି ନାହିଁ। ଅର୍ଥାତ ଘର କାମ ଓ ବାହାର କାମ ମଧ୍ୟରେ ଏକ ବିରାଟ ଖାଇ ,ଯାହାକୁ ନାରୀ ଅତିକ୍ରମ କରି ପାରେନି ବୋଲି ଘର କାମରେ ଆବଦ୍ଧ ହୋଇ ରହେ। ଯେଉଁଠି ଓ ଯେତେବେଳେ ସେ ବାହାର କାମରେ ସକ୍ରିୟ ରହେ, ସେଇଠି ଓ ସେତେବେଳେ ଘର କାମ ତାର ଅପଚରା ହୁଏ। ବାହାର କାମର ଯଦି ଏଠି ବିଶଦ ବ୍ୟାଖ୍ୟା ହୁଏ, ତାହା କେବଳ ରାଜନୀତି, ସମାଜକାମ ଓ ସାଧାରଣ କାମରେ ସୀମିତ ରହେ ନାହିଁ, ଏସବୁ ସାଂଗକୁ ଚାକିରି, ପଢ଼ାଲେଖା ଆଦି ବୌଦ୍ଧିକ କାମ, ସ୍ୱଚ୍ଛଂଦ ଜୀବନ ଶୈଳୀ, ଆଦି ମଧ୍ୟ ସାମିଲ ହୁଏ। ରମାଦେବୀଂକର ଚର୍ଚ୍ଚା ଏହି ପରିପ୍ରେକ୍ଷୀରେ ଉଲ୍ଲେଖ ଯୋଗ୍ୟ, କାରଣ ସେ ଘର ଓ ପରିବାର କାମକୁ ଆଦୌ ଗୌଣ ନ କରି ବାହାର କାମରେ ନିଜକୁ ନିୟୋଜିତ କରିଥିଲେ। ଏହି ଦୃଷ୍ଟିରୁ ଦେଖିଲେ, ଘର କାମ ସର୍ବଦା ବାହାର କାମର ପରିପନ୍ଥୀ ବୋଲି ଥିବା ଧାରଣାକୁ ସେ ଭ୍ରମାତ୍ମକ ପ୍ରମାଣ କରିଥିଲେ।

ଆମ ଓଡ଼ିଶାରେ ଜାତୀୟତା ଆଂଦୋଳନର ଉନ୍ମେଷ ହେଲା ୧୮୬୦ ଦଶକରେ, ଯେତେବେଳେ ୧୮୬୫ରେ କଟକରୁ ଉତ୍କଳ 'ଦୀପିକା ପତ୍ରିକା'

ପ୍ରକାଶିତ ହେଲା। ଜାତୀୟ ଜୀବନକୁ ମୂର୍ତ୍ତ ରୂପ ଦେବା ପାଇଁ ୧୮୮୨ରେ ସ୍ଥାପିତ ହେଲା 'ଉତ୍କଳ ସଭା' ଏବଂ ୧୯୦୩ରେ ଆୟୋଜିତ ହେଲା 'ଉତ୍କଳ ସମ୍ମିଳନୀ'। ୧୯୨୦ରେ ଯେତେବେଳେ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟୀ ଗଠିତ ହେଲା ଓ 'ଉତ୍କଳ ସମ୍ମିଳନୀ'ର ତହିଁରେ ମିଶ୍ରଣ ହେଲା, ଜାତୀୟତା ଆଂଦୋଳନ ଏଠାରେ ଅଧିକ ଅସ୍ଥିଚର୍ମ ପାଇଲା, ବଳଶାଳୀ ହେଲା। ମାତ୍ର ବିଡ଼ମ୍ବନା ହେଲା ଯେ ଏହି ସବୁ ରାଜନୀତିକ ଗତିବିଧିରେ ଜଣେ ବି ମହିଳାଂକର ପ୍ରତ୍ୟକ୍ଷ ସଂପୃକ୍ତି ଦେଖିବାକୁ ମିଳିନଥିଲା। ସଭା-ସମିତି ମାନଂକରେ ଏମିତିରେ ପୂରା ସମାଜର ସ୍ୱାଧୀନତା, ଉନ୍ନତି ଓ ପ୍ରଗତି କଥା ଚର୍ଚ୍ଚା ହେଉଥିଲା। ହେଲେ ତହିଁରେ ସମାଜର ଅଧାଭାଗ ସଂଶ୍ଲିଷ୍ଟ ନ ଥିଲେ। କେବଳ ପୁରୁଷ ମାନେ ମୋଟ ସମାଜର ଅଧିବକ୍ତା ସାଜିଥିଲେ। ଏହା କି ଜାତୀୟ ରାଜନୀତିର ଦୁର୍ବଳତାକୁ ଇଂଗିତ କରୁନାହିଁ ?

ପୁରୁଷ ବହୁଳ ଓ ପୁରୁଷ କର୍ତ୍ତୃତ୍ୱାଧୀନ ରାଜନୀତିରେ ରମାଦେବୀଂକର ଉପସ୍ଥାନ ଏକ ବ୍ୟତିକ୍ରମ ସୃଷ୍ଟି କଲା। ୧୯୨୧ରେ ଯେତେବେଳେ ମହାତ୍ମା ଗାଂଧି ଅସହଯୋଗ ଆଂଦୋଳନର ପ୍ରଚାର ଓ ପ୍ରସାର ପାଇଁ ଓଡ଼ିଶା ଆସିଲେ, କଟକଠାରେ ଜନସଭା କଲେ, ସେତେବେଳେ ଗାଂଧିଙ୍କ ଆକର୍ଷଣରେ ରମାଦେବୀ ବାହାର କାମ ଆଡ଼େ ଢଳିଲେ, ଯଦିଓ ଏହାର ଅନ୍ତତଃ ସାତ ବର୍ଷ ଆଗରୁ ୧୯୧୪ରେ ବାହାଘର ପରେ ପରେ କେବଳ ଘର କାମରେ, ପରିବାର ସଂଭାଳିବାରେ ଆବଦ୍ଧ ହେବେ ନାହିଁ ବୋଲି ପତି ଗୋପବଂଧୁ ଚୌଧୁରୀଂକୁ ନିଜ ମନକଥା କହିଥିଲେ। ୧୯୨୧ରେ ରମାଦେବୀଂକୁ ୨୨ ବର୍ଷ ବୟସ। ଜନ୍ମ ତାଂକର ୧୮୯୯ରେ; ମୃତ୍ୟୁ ୧୯୮୫ରେ। ଏମିତିରେ ଆଦର୍ଶମୂଳକ ରାଜନୀତି ପ୍ରତି ଆକୃଷ୍ଟ ହେବା ନିମିତ୍ତ ୨୦-୨୨ ବର୍ଷର ବୟସ ହେଉଛି ପ୍ରକୃଷ୍ଟ ସମୟ। ମାତ୍ର ରମାଦେବୀଂକ ଜୀବନ-ସାରଣୀକୁ ଦେଖିଲେ, ଏହା ଥିଲା ପ୍ରତିକୂଳ ସମୟ। ୧୯୧୪ରେ ମାତ୍ର ୧୫ ବର୍ଷ ବୟସରେ ତାଂକର ବାହାଘର ସରିଥିଲା। ବାପା ଗୋପାଳ ବଲ୍ଲଭ ଓ ବଡ଼ବାପା ଉତ୍କଳ ଗୌରବ ମଧୁସୂଦନ ଦାସ ଉଚ୍ଚ ଶିକ୍ଷିତ ହେବା ସତ୍ତ୍ୱେ ପରିବାରରେ କନ୍ୟାମାନଂକର, ଯେମିତି ରମାଦେବୀଂଜର କୌଣସି ଔପଚାରିକ ଶିକ୍ଷା ନ ଥିଲା। ୧୯୧୫ରେ ପ୍ରଥମ ସନ୍ତାନ, ୧୯୧୭ରେ ଦ୍ୱିତୀୟ ସନ୍ତାନ ଓ ୧୯୨୦ରେ ତୃତୀୟ ସନ୍ତାନ; ଏହିଭଳି ୧୯୨୧ ପୂର୍ବରୁ ରମାଦେବୀ ତିନୋଟି ଛୁଆର ମା' ହୋଇ ସାରିଥିଲେ। ୧୯୧୫ରେ ପରିବାରର ଏକମାତ୍ର

ରୋଜଗାରିଆ ଶ୍ୱଶୁର ଗୋକୁଳାନଂଦ ଚୌଧୁରୀଂକ ମୃତ୍ୟୁ ଯୋଗୁଁ ପରିବାର ଆର୍ଥିକ ସଂକଟ ଦେଇ ଗତି କରୁଥିଲା। ପୁଣି, ସ୍ୱାମୀ ଗୋପବଂଧୁ ଚୌଧୁରୀ ଚାକିରି ପାଇଲେ, ମାତ୍ର ପଦସ୍ଥ ସରକାରୀ ଚାକିରିରୁ ଇସ୍ତଫା ଦେଇ ଜାତୀୟତା ଆଂଦୋଳନରେ ମିଶିବା ଲାଗି ନିଷ୍ପତ୍ତି ନେଇଥିଲେ; ଦିଅର ନବକୃଷ୍ଣ ଚୌଧୁରୀ ମଧ୍ୟ କଲେଜ ପାଠ ଛାଡ଼ି ବଡ଼ଭାଇଂକ ପଥରେ। ରମାଦେବୀଂକ ପାଇଁ ସବୁଠୁ ଅବସୋସର କଥା ଯେ ବିଧବା ଶାଶୁ ପଦ୍ମାବତୀ ଘୋର ରକ୍ଷଣଶୀଳ ସ୍ୱଭାବର। ଛୁଆଁ-ଅଛୁଆଁ ଭେଦଭାବ ଓ ପର୍ଦ୍ଦା ପ୍ରଥା ଆଦି ବିରୁଦ୍ଧରେ ପ୍ରକାଶ ପାଉଥିବା ମତକୁ ସେ ଆଦୌ ପସଂଦ କରନ୍ତି ନାହିଁ। ଦୁଇ ପୁଅଂକର ରୋଜଗାର ପନ୍ଥା ଛାଡ଼ି ସମାଜ କାମରେ ମାତିବାଟା ପସଂଦ କରନ୍ତି ନାହିଁ। ବରଂ ସେ ବୋହୂ ରମାଦେବୀଂକୁ ଏଥିପାଇଁ ଦାୟୀ କରନ୍ତି, କାରଣ ରମାଦେବୀ ବାରଣ କରିଥିଲେ ଦୁଇ ଭାଇ ରୋଜଗାର ପନ୍ଥା ଛାଡି 'ଘରବୁଡ଼ା' ଜାତୀୟ କାମରୁ ନିବୃତ୍ତ ହୋଇଥାନ୍ତେ। ଏଭଳି ପାରିବାରିକ ପ୍ରତିକୂଳତାର ସମ୍ମୁଖୀନ ହେଲେ ବ୍ୟକ୍ତି, ବିଶେଷ କରି ଗୃହିଣୀ ଜଣେ ମନ ଊଣା କରେ, ମନ ମାରି ଭାଗ୍ୟବାଦୀ ହୋଇଯାଏ। ନିଜ ସାମର୍ଥ୍ୟକୁ ଚିହ୍ନିବା ଛାଡ଼ି ଦିଏ। ଆଉ କେତେକ କ୍ଷେତ୍ରରେ, ସ୍ୱାମୀ, ପରିବାର, ଗହଣା-ଗାଣ୍ଠିର ମିଥ୍ୟା ଆବରଣକୁ ସେ ଉପଶମ ମନେ କରେ ଓ ନିଜର ସ୍ୱତନ୍ତ୍ର ସତ୍ତାକୁ ଅଭିବ୍ୟକ୍ତ ହେବାକୁ ଦିଏ ନାହିଁ। ସେ ଯାହାହେଉ ରମାଦେବୀଂକ କ୍ଷେତ୍ରରେ ଦେଖାଯାଏ ଯେ, ସେ ପାରିବାରିକ ପ୍ରତିକୂଳତାକୁ ଭ୍ରୂକ୍ଷେପ କଲେ ନାହିଁ, ଘର-ପରିବାର କାମକୁ ଠିକ୍ ରୂପେ ସଂଭାଳିଲେ; ତହିଁରୁ ନିବୃତ୍ତି ମାଗିଲେ ନାହିଁ। ବରଂ ତା' ସାଂଗରେ ଜାତୀୟ ଜୀବନ ଓ ରାଜନୀତି, ବା ସଂକ୍ଷେପରେ କହିଲେ ବାହାର କାମରେ ବି ପାଦ ଥୋଇଲେ। କେବଳ ସେତିକି ନୁହେଁ, ପରିବାରର ବାକିମାନଂକୁ ମଧ୍ୟ ବାହାର କାମରେ ଓତଃପ୍ରୋତଃ କଲେ। ପତି ଗୋପବଂଧୁ ଚୌଧୁରୀ, ଦିଅର ନବକୃଷ୍ଣ ଚୌଧୁରୀ, ପୁଅ ମନମୋହନ, ଝିଅ ଅନ୍ନପୂର୍ଣ୍ଣା, ସାନ ଦେରାଣୀ ମାଳତୀ ଚୌଧୁରୀ ଓ ଝିଆରୀ ଉତ୍ତରା, ସମସ୍ତେ ଯଦି ସ୍ୱାଧୀନତା ଆଂଦୋଳନରେ ସକ୍ରିୟ ହେଲେ, ତା' ପଛରେ ପ୍ରତ୍ୟେକଂକର ନିଜସ୍ୱ ଆଗ୍ରହ ତ ଥିଲା ନିଶ୍ଚୟ, ମାତ୍ର ତା' ସାଂଗରେ ରମାଦେବୀଂକ ପ୍ରୋତ୍ସାହନ ମଧ୍ୟ ରହିଥିଲା- ଏକଥା ଅବିସଂବାଦିତ। ଶେଷରେ ତାଂକରି ଧୈର୍ଯ୍ୟ ଯୋଗୁଁ ରକ୍ଷଣଶୀଳ ଶାଶୁ ମଧ୍ୟ ୧୯୨୨ରେ ଗୟା କଂଗ୍ରେସ ଅଧିବେଶନକୁ ଗଲେ। ୧୯୨୮ରୁ ବରି ଆଶ୍ରମରେ ଯାଇ ରହିଲେ

ଏବଂ ଖଦି ପିଂଧିଲେ।

୧୯୪୭ରେ ଦେଶ ସ୍ୱାଧୀନ ହେଲା। ତେଣିକି ସ୍ୱାଧୀନତା ପାଇଁ ଲଢ଼ିଥିବା ଅନେକ ଲୋକ ଦେଶର ପ୍ରଶାସନିକ ଦାୟିତ୍ୱମାନ ନେଲେ। ଅନେକ ସ୍ୱାଧୀନତା ସଂଗ୍ରାମୀ ଆଂଦୋଳନର ଦ୍ୱାହି ଦେଇ କ୍ଷମତା ପାଇଁ ଦୌଡ଼ିଲେ। ସମୟ କ୍ରମେ ପ୍ରଶାସନିକ ଦାୟିତ୍ୱକୁ ପ୍ରମୁଖତା ଦେଉଥିବା ସ୍ୱାଧୀନତା ସଂଗ୍ରାମୀ ମଧ୍ୟ କ୍ଷମତାରେ ରହି ବିଳାସିତାକୁ ଆଦରି ନେଲେ। ଫଳରେ ସ୍ୱାଧୀନତାର ଦଶ-କୋଡ଼ିଏ ବର୍ଷ ଉତ୍ତାରୁ ରାଜନୀତି, ସମାଜ କାମ ଓ ବାହାର କାମର ଅର୍ଥ ବଦଳିଗଲା। ଆଜି ଲୋକ ମାନ୍ୟତା ହେଲା ଯେ ରାଜନୀତି କ୍ଷମତା ଦୌଡ଼। ରମାଦେବୀ ରାଜନୀତିର ଏହି କ୍ରମ ଅବମୂଲ୍ୟାୟନକୁ ଭବିଷ୍ୟ ଦ୍ରଷ୍ଟା ଭଳି ବୁଝି ପାରିଥିଲେ ଏବଂ କ୍ଷମତା ରାଜନୀତି ଆଡ଼କୁ ଆଦୌ ଢଳି ନ ଥିଲେ। ଅନ୍ୟ ପକ୍ଷରେ, ରାଜନୀତିରୁ ମଧ୍ୟ ସେ ଦୂରେଇ ଯାଇ ନ ଥିଲେ। ୧୯୫୫ରେ ସେ ବିନୋବା ଭାବେଂକ ଓଡ଼ିଶା ଭୂଦାନ ଯାତ୍ରାରେ ପ୍ରମୁଖ ଭୂମିକା ନିର୍ବାହ କରିଥିଲେ। ୧୯୫୮ରେ ତାଂକ ସ୍ୱାମୀଂକ ମୃତ୍ୟୁ ହେଲା। ସ୍ୱାମୀ ଥିଲେ ରାଜନୀତିରେ ରମାଦେବୀଂକର ଏକାନ୍ତ ସହଯୋଗୀ ଓ ପ୍ରେରଣାଦାତା। ମାତ୍ର ସ୍ୱାମୀଂକର ମୃତ୍ୟୁ ମଧ୍ୟ ତାଂକୁ ସମାଜକାମରୁ ତିରୋହିତ କରି ପାରିଲା ନାହିଁ। ବରଂ ସାମୂହିକ କାମର ନିଶା ଓ ଦାୟିତ୍ୱ ଯୋଗୁଁ ବ୍ୟକ୍ତିଗତ ଦୁଃଖଶୋକକୁ ଭୁଲିବା ଲାଗି ବାଟ ପାଇଲେ। ଏହି କାରଣରୁ ସେ ୧୯୬୨ର ଚୀନ ଆକ୍ରମଣ ବେଳେ ଉତ୍ତର ପୂର୍ବାଂଚଳରେ ସେ ଭାରତ ସପକ୍ଷରେ ଜନମତ ସୃଷ୍ଟି କରିବା ଲାଗି ଗାଁ ଗାଁ ବୁଲିଲେ; ୧୯୬୪ରେ ଯେତେବେଳେ ରାଉରକେଲାରେ ସାଂପ୍ରଦାୟିକ ଦଂଗା ଉପୁଜିଲା ଓ ପ୍ରାୟ ଅଢ଼େଇ ହଜାର ଲୋକଂକର ହତ୍ୟା ହେଲା, ରମାଦେବୀ ଯାଇ ଶାନ୍ତି ଓ ଧର୍ମନିରପେକ୍ଷତାର ବାଣୀ ଶୁଣାଇଲେ। ସେହି ୧୯୬୪ରେ ରାଜ୍ୟ ବ୍ୟାପୀ ଛାତ୍ର ଆଂଦୋଳନ ହେଲା। ପିଲା ଓ ପ୍ରଶାସନ ପରସ୍ପରର ପ୍ରତିପକ୍ଷ ସାଜିଲେ। ସେତେବେଳେ ରମାଦେବୀ ସମାଧାନ ଲାଗି ଆପ୍ରାଣ ଉଦ୍ୟମ କଲେ। ଉଭୟପକ୍ଷ ତାଂକ ମଧ୍ୟସ୍ଥତାରେ ଆସ୍ଥା ରଖିଥିଲେ, ଯାହା ରମାଦେବୀଂକ ପରିପକ୍ୱ ଓ ନିରପେକ୍ଷ ରାଜନୀତିକ ଦୃଷ୍ଟିକୁ ଚିହ୍ନିତ କରେ। ୧୯୭୫ରେ ଜରୁରୀ ପରିସ୍ଥିତିକୁ ଆଳ କରି ଗଢ଼ି ଉଠୁଥିବା ଏକଛତ୍ରବାଦିତାର ବିରୋଧ କଲା ବେଳେ ସେ ନିଜର ଗୁରୁ ବିନୋବା ଭାବେଂକର ଏବଂ କନ୍ୟାପ୍ରତିମ ଇଂଦିରା ଗାଂଧି ଓ ନଂଦିନୀ ଶତପଥିଂକର ବିରୁଦ୍ଧାଚରଣ କରିବା ଲାଗି ପଛେଇ ନ ଥିଲେ। ଏଥିରୁ

ଗୋଟାଏ କଥା ସିଦ୍ଧ ହୁଏ ଯେ ରମାଦେବୀଙ୍କ ପାଇଁ ରାଜନୀତି ଥିଲା ଏକ ଦର୍ପଣ ସଦୃଶ, ଯେଉଁଥିରେ ବ୍ୟକ୍ତିସତ୍ତାକୁ ଚିହ୍ନି ହେବ, ସମୂହ ସ୍ୱାର୍ଥ ପାଇଁ ବ୍ୟକ୍ତି ସ୍ୱାର୍ଥକୁ ଭୁଲି ହେବ, ସମାଜକୁ ପରିବାରର ଏକ ବିସ୍ତୃତ ସ୍ୱରୂପ ଓ ପରିବାରକୁ ସମାଜର ଏକ କ୍ଷୁଦ୍ରାକୃତି ରୂପେ ଦେଖି ହେବ। ରାଜନୀତିର ଲକ୍ଷ୍ୟ କଦାପି କ୍ଷମତାପ୍ରାପ୍ତି ଓ ବିଳାସିତା ନୁହେଁ।

ପ୍ରଶ୍ନ ଉଠେ, ରମାଦେବୀଙ୍କର ରାଜନୀତିକୁ ନେଇ ଏ ଯେଉଁ ବିଚାରବୋଧ ତା'ର ସୃଷ୍ଟି ମୂଳରେ କ'ଣ ସବୁ କାରଣ ହୋଇ ପାରେ ? ଗୋଟାଏ କାରଣ ତ ହେବ ପାରିବାରିକ ପୃଷ୍ଠଭୂମି। ବାପା ଡେପୁଟି ମାଜିଷ୍ଟ୍ରେଟ ଚାକିରିରେ ଥିଲେ ବୋଲି ବାଳିକା ରମାଦେବୀଙ୍କୁ ବିହାରର ଗୟା, ମୁଜାଫରପୁର ଆଦି ସହର ଓ ବିବିଧ ସଂସ୍କୃତି ସହ ପରିଚିତ ହେବାର ଅବସର ମିଳିଥିଲା। ଔପଚାରିକ ଶିକ୍ଷା ନ ମିଳିବା ସତ୍ତ୍ୱେ ସେ ହିଂଦି ଓ ବଂଗଳା ଭାଷା-ସଂସ୍କୃତି ଜାଣିଥିଲେ। ୧୯୦୮ରେ କିଶୋର ସ୍ୱାଧୀନତା ସଂଗ୍ରାମୀ ଖୁଦିରାମ ବୋଷଂକୁ ଯେତେବେଳେ ମୁଜାଫରପୁରରେ ଫାଶୀ ଦିଆଗଲା, ସେତେବେଳେ ଗୋପାଳ ବଲ୍ଲଭ ସେଠି ଡେପୁଟି ମାଜିଷ୍ଟ୍ରେଟ। ଶିଶୁ ବୟସ ହେଲେ ବି ଘଟଣାଟି ରମାଦେବୀଙ୍କୁ ସ୍ୱାଧୀନତା ସଂଗ୍ରାମ ସହିତ ନିବିଡ଼ କରିଥିଲା। ବଡ଼ ବାପା ମଧୁବାବୁଂକ କଟକସ୍ଥିତ କୋଠାଘରେ ସାମୟିକ ଅବସ୍ଥାନ କରିବା ପ୍ରକ୍ରିୟାରେ ଅସ୍ପୃଶ୍ୟତା ଓ ପର୍ଦ୍ଦାପ୍ରଥା ଆଦି ରକ୍ଷଣଶୀଳତାକୁ ନିବୃତ୍ତି ପାଇଲେ। ମଧୁବାବୁ ଖ୍ରୀଷ୍ଟିଆନ। ତାଂକ ଘରେ ରହିଲା ବେଳେ ରମାଦେବୀଂକ ମା' ବସନ୍ତକୁମାରୀ ଦେଢ଼ଶୁରଂକ ସାଂଗରେ ସ୍ୱଚ୍ଛଂଦରେ କଥାବାର୍ତ୍ତା କରନ୍ତି; ଜାତି ଯିବାର ଡର ନ ଥାଏ। ଓଡ଼ିଆ ଘରର ରକ୍ଷଣଶୀଳ ଚଳଣି ଓ ସଂସ୍କାରବାଦିତା ମଧ୍ୟରେ ସେତେବେଳେ ଦ୍ୱିତୀୟଟି ମହତ୍ତ୍ୱ ପାଏ। ଏହି ପୃଷ୍ଠଭୂମି ରମାଦେବୀଂକୁ ରକ୍ଷଣଶୀଳତା ଓ ସଂକୀର୍ଣ୍ଣତାରୁ ଊର୍ଦ୍ଧ୍ୱକୁ ଉଠିବାରେ ସାହାଯ୍ୟ କରିଥିଲା।

ବାପ ଘରଠାରୁ ସଂପୂର୍ଣ୍ଣ ବିପରୀତ ପରିବେଶ ତାଂକ ଶାଶୁ ଘରେ। ଆଧୁନିକ ଶିକ୍ଷିତ ଶ୍ୱଶୁର ଗୋକୁଳାନଂଦଂକ ମୃତ୍ୟୁ ପରେ (୧୯୧୫ରେ) ରକ୍ଷଣଶୀଳ ଶାଶୁ ସେଠି ଗୃହକର୍ତ୍ତ୍ରୀ, ଯିଏ ଡାକ୍ତରୀ ଚିକିତ୍ସାକୁ ପସଂଦ କରନ୍ତି ନାହିଁ; ମହିଳାମାନଂକର ସ୍ୱଚ୍ଛଂଦତାକୁ ବିରୋଧ କରନ୍ତି; ଅସ୍ପୃଶ୍ୟତା ଓ ପର୍ଦ୍ଦା ପ୍ରଥାର ସପକ୍ଷବାଦୀ। ରମାଦେବୀଂକ ସଂପର୍କୀୟ ଭଉଣୀ ସରଳା ଦେବୀ ଶିକ୍ଷିତ,

ଆଧୁନିକ ବିଚାରର, ସଂସ୍କାରବାଦୀ। ହେଲେ ତାଂକ (ସରଳା ଦେବୀଂକ) ବିଚାରକୁ ଶାଶୁ ଆଦୌ ପସଂଦ କରନ୍ତି ନାହିଁ। ଶାଶୁ ଘରେ ରମାଦେବୀ ଜଣେ ଧାଇକୁ ଦେଖିଥିଲେ, ଯିଏ ତାଂକ ଜେଜେ ଶ୍ୱଶୁରଂକ ରକ୍ଷିତା ଥିଲେ। ଧାଇ କାମ କରୁଥିବାରୁ ସ୍ତ୍ରୀଲୋକଟି ପ୍ରତି ପରିବାରରେ ଜେଜେ ଶାଶୁ ସମେତ ଆଉ କାହାରି ଈର୍ଷା ବା ଅସହିଷ୍ଣୁ ଭାବ ବି ନ ଥିଲା। ଏଣେ ବିଦେଶୀ କବଳରୁ ବିମୁକ୍ତି ପାଇଁ ସ୍ୱାଧୀନତାର ଲଢ଼େଇ। ସେପଟେ ଆମ ନିଜ ସାମାଜିକ ପରଂପରା ଯୋଗୁଁ ବିଭିନ୍ନ ସ୍ତରରେ ଦାସତ୍ୱର ବେଡ଼ି। ଖାସ୍ କରି ନାରୀର ଏହି ଦାସତ୍ୱ ଓ ଦେଶର ପରାଧୀନତାକୁ ଯୋଡ଼ି ଦେଖିଲେ, ଜାତୀୟତା ଆଂଦୋଳନର ପରିଧି ଯେ ବ୍ୟାପକ ହେବ, ଏହା ନିଶ୍ଚିତ କଥା। ରମାଦେବୀ ସ୍ୱ-ଅନୁଭବ ଆଧାରରେ ଆଂଦୋଳନର ଏହି ବ୍ୟାପକତାକୁ ଦେଖି ପାରିଥିଲେ। ତାଂକ ଦୃଷ୍ଟିରେ, ଜାତୀୟତା ଆଂଦୋଳନ କେବଳ ରାଜନୀତିକ ସ୍ୱାଧୀନତା ଲକ୍ଷ୍ୟରେ ସୀମିତ ନ ଥିଲା। ବରଂ ତାହା ଏକ ବ୍ୟାପକ ସାମାଜିକ ଓ ଗଠନମୂଳକ କାର୍ଯ୍ୟକ୍ରମ ଥିଲା। ତହିଁରେ ସ୍ତ୍ରୀ ବିମୁକ୍ତିଠାରୁ ଆରଂଭ କରି ଆର୍ଥିକ ସ୍ୱଚ୍ଛଳତା ଯାଏଁ, ସବୁ ପ୍ରକାର ପ୍ରୟାସ ନିହିତ ଥିଲା। ହରିଜନ ପଦଯାତ୍ରା, ଭୂଦାନ ଓ ସର୍ବୋଦୟ କାମରେ ରମାଦେବୀ ଏହି କାରଣରୁ ଶେଷ ଯାଏଁ ନିମଜ୍ଜିତ ରହୁଥିଲେ। ତାଂକ ନଜରରେ, ୧୯୪୭ରେ ସ୍ୱାଧୀନତା ସଂଗ୍ରାମ ସରି ନ ଥିଲା। ତେଣୁ ଆଂଦୋଳନକୁ ସେ ଅବ୍ୟାହତ ରଖିଥିଲେ। ଏହା ବ୍ୟକ୍ତିଗତ ଭାବେ କ୍ଷମତା ଦୌଡ଼ରୁ ତାଂକୁ ପୂର୍ଣ୍ଣତଃ ଦୂରେଇ ରଖିଲା ଏବଂ ଗଠନ ମୂଳକ କାମରେ ସକ୍ରିୟ କଲା।

ରମାଦେବୀଂକର ବିଶେଷ ଔପଚାରିକ ଶିକ୍ଷା ନ ଥିଲା। ସେ ଅନେକ ତତ୍ତ୍ୱଜ୍ଞାନକୁ କଣ୍ଠସ୍ଥ କରିବାର ଅବସର ପାଇ ନ ଥିଲେ। ବୋଧହୁଏ ଲେଖାପଢ଼ାର ସଂସାର ସହ ସେ ବିଶେଷ ପରିଚିତ ନ ଥିଲେ। ସ୍ୱାଧ୍ୟାୟ ବଳରେ ସାମାନ୍ୟ ପଢ଼ିଲେଖି ପାରୁଥିଲେ। ତାଂକର ସଂପର୍କୀୟା ଭଉଣୀ ଓ ସେ ସମୟର ଅନ୍ୟ ଜଣେ ପ୍ରଖର ନେତ୍ରୀ ସରଳା ଦେବୀଂକ ଅନୁରୋଧରେ "ଜୀବନ ପଥେ" ଶୀର୍ଷକରେ ନିଜ ଆତ୍ମଜୀବନୀ ଲେଖିଛନ୍ତି; ତହିଁରେ କାହିଁ କେଉଁଠି ବି ଗାଂଧି-ବିନୋବା ଆଦିଂକର ତତ୍ତ୍ୱ ବିଚାର କଥା ଆଲୋଚନା କରି ନାହାନ୍ତି। ଜଣେ ସାଧାରଣ କର୍ମୀ ଭାବରେ ସାଧାରଣ ବୁଦ୍ଧି ପ୍ରୟୋଗ କରି ସେ ଯେମିତି ଘରକାମ କରିଛନ୍ତି, ସେମିତି ତା' ସାଂଗରେ ବାହାର କାମ ବି କରିଛନ୍ତି; ଏହି ଅନୁଭବର ପୁସ୍ତକଟିରେ ବିଶେଷ ଏବଂ ଖୋଲା ବ୍ୟୋରା ରହିଛି। ରମାଦେବୀଂକ ଜୀବନର

ଏହି ସାଧାରଣ ଭାବ ଓ ସରଳତା ହିଁ ତାଂକର ସଂପତ୍ତି, ଶକ୍ତି। ସେହି ସରଳତା ଯୋଗୁଁ, ଦାବି କରି ନୁହେଁ, ବରଂ ସ୍ୱତଃ ସେ ଯେମିତି ନିଜ ପରିବାରର ନାଭିକେଂଦ୍ର, ସେମିତି ୧୯୩୦ ଓ ୧୯୪୦ ଦଶକରେ ଓଡ଼ିଶାର ଜାତୀୟତା ଆଂଦୋଳନର ବି ପ୍ରମୁଖ କର୍ମୀ। ଗାଂଧିଂକଠାରୁ ଆରଂଭ କରି ଆଂଦୋଳନକାରୀ ଛାତ୍ରଂକ ଯାଏଁ, ସମସ୍ତଙ୍କର ତାଂକଠାରେ ପୂର୍ଣ୍ଣ ବିଶ୍ୱାସ ଓ ଆସ୍ଥା ରହିଥିଲା।

୨୦୧୪ରେ ରମାଦେବୀଂକ ଜନ୍ମକୁ ୧୧୫ ବର୍ଷ ଟପିଲା; ମୃତ୍ୟୁକୁ ହେଲା ୩୦ ବର୍ଷ। ରମାଦେବୀଂକ ନାଁରେ ସ୍ଥାପିତ କନ୍ୟା ମହାବିଦ୍ୟାଳୟ ବି ଏବେ ତା'ର ସ୍ୱର୍ଣ୍ଣ ଜୟନ୍ତୀ ପାଳିଲାଣି। ଯେଉଁ ଦାସତା ଓ ବିଶେଷ କରି ନାରୀ ଦାସତା ବିରୁଦ୍ଧରେ ସେ ଲଢ଼ିବା ଆରଂଭ କରିଥିଲେ ଏବଂ ତାକୁ ଦେଶର ସ୍ୱାଧୀନତା ଆଂଦୋଳନର ବ୍ୟାପକ ପରିପ୍ରେକ୍ଷୀରେ ସଂସର୍ଗିତ କରି ରଖିଥିଲେ, ତା'ର ଉଦ୍ଦେଶ୍ୟ ନାରୀ ସଶକ୍ତିକରଣ ଥିଲା ନିଶ୍ଚୟ, ମାତ୍ର ତାକୁ ଆମ ସମୟର ନାରୀବାଦ ଆଖ୍ୟା ଦେଲେ, ତହିଁରେ ହୁଏତ ଅନେକ ନାରୀବାଦୀ ବି ସହମତ ହେବେ ନାହିଁ। କାରଣ ରମାଦେବୀ କେବେ ତଥାକଥିତ ନାରୀବାଦୀଂକ ଭଳି ପୁରୁଷକୁ, ପରିବାରର ବଂଧନକୁ, ମା', ବୋହୂ ଓ ପତ୍ନୀ ହେବାର ନାରୀ ବାସ୍ତବିକତାକୁ ଏବଂ ସର୍ବୋପରି ପୂର୍ବପିଢ଼ିର ରକ୍ଷଣଶୀଳତାକୁ ପ୍ରତିପକ୍ଷ ମଣୁ ନ ଥିଲେ। ସମସ୍ତଙ୍କୁ ସାଂଗରେ ନେଇ ସଂସ୍କାରର ଖିଅ ଖୋଜୁଥିଲେ। ଯେଉଁ ପରିପୂରକତା ସେ ଘରକାମ ଓ ବାହାର କାମ ମଧ୍ୟରେ ପାଉଥିଲେ, ତାକୁ ପୂର୍ବପିଢ଼ି ଓ ଆଜିର ପିଢ଼ି, ପୁରୁଷ ଓ ନାରୀ ଏବଂ କ୍ଷୁଦ୍ର ପରିବାର ଓ ବିଶାଳ ସମାଜ ମଧ୍ୟରେ ବି ଥାବ କରିଥିଲେ। ଏମିତିରେ ଦେଖିଲେ ରମାଦେବୀ ଉଚ୍ଚଶିକ୍ଷିତ ନ ଥିଲେ, ବହୁତ ତତ୍ତ୍ୱ-ଆଦର୍ଶ କଣ୍ଠସ୍ଥ କରି ନ ଥିଲେ; ପଦପଦବୀଧାରୀ ନ ଥିଲେ। ମନ୍ତ୍ରୀ-ଏମ.ଏଲ୍.ଏ. ତ ଦୂର କଥା, କେବେ କାଉନସିଲର ବି ସେ ହୋଇନାହାନ୍ତି। ଜୀବନର ଶେଷ ଅବସ୍ଥାରେ ଯେତେବେଳେ ତାଂକୁ ସମାଜ ସେବା ପାଇଁ 'ଯମୁନାଲାଲ ବଜାଜ' ପୁରସ୍କାର ଦେବା କଥା ଘୋଷଣା ହେଲା, ତାକୁ ନେବା ପାଇଁ ସେ ମନା କଲେ। ଏଭଳି ଜଣେ ମହିଳା ଓ ତାଂକ ଜୀବନାଦର୍ଶକୁ ଆମ ପିଢ଼ି ସ୍ମୃତିରେ ରଖିବ ନା ବିସ୍ମୃତିର ଗର୍ଭକୁ ଠେଲି ଦେବ ? ଆମ ପାଇଁ ଏହି ନିଷ୍ପତ୍ତି କ'ଣ ଆଉ କେଉଁ ପିଢ଼ି ଓ ଆଉ କେଉଁ ସମାଜ ନେଇ ପାରିବ ?



(ନଭେଂବର ୨୦୧୪)

# କବି ଖଗେଶ୍ୱର ଶେଠଙ୍କ 'ପଏର୍ଛା ସତି': ଏକ ଚର୍ଚ୍ଚା

'ପଏର୍ଛା ସତି' ହେଲା ଏକ ସଂବଲପୁରୀ କ୍ଷୁଦ୍ର କାବ୍ୟ। ଏହାର ରଚନା କାଳ ୧୯୪୨-୪୩ ଏବଂ ପ୍ରଥମ ପ୍ରକାଶନ ୧୯୪୮ ମସିହା। କବି ଖଗେଶ୍ୱର ଶେଠ (୧୯୦୬-୧୯୮୬) ହେଲେ ଏହାର ରଚୟିତା। ସଂବଲପୁରୀ ଭାଷାରେ 'ପଏର୍ଛା ସତି' ଏକ ଦ୍ୱି-ଅର୍ଥ ବୋଧକ ଶବ୍ଦ। ତା'ର ଆକ୍ଷରିକ ଅର୍ଥ ହେଲା ସ୍ୱଚ୍ଛ ସତି, ଯାହାର ଚରିତ୍ରକୁ ପ୍ରଶ୍ନ କରାଯାଇ ନ ପାରେ। ହେଲେ ତା'ର ଅନ୍ୟ ଅର୍ଥ ହେଲା ଠିକ୍ ବିପରୀତ। ଜଣେ ନଷ୍ଟ ଚରିତ୍ରା ନାରୀର ଉତ୍କୃଷ୍ଟ ଉଦାହରଣ। ଜଣେ ନାରୀ ଚରିତ୍ରକୁ ବିଦ୍ରୂପ କରିବା ଉଦ୍ଦେଶ୍ୟରେ କୁହାଯାଏ 'ପଏର୍ଛା ସତି'। ଖଗେଶ୍ୱର ଶେଠ ବିରଚିତ ପ୍ରସିଦ୍ଧ 'ପଏର୍ଛା ସତି' ଉକ୍ତ ଶବ୍ଦର ବିଦ୍ରୂପଭରା ଲୌକିକ ଅର୍ଥକୁ ପ୍ରଶ୍ନ କରେ ଏବଂ ତଥାକଥିତ ଏକ ନଷ୍ଟ ଚରିତ୍ର ନାରୀକୁ ଆଧାର କରି ସମାଜର ପୁରୁଷତାନ୍ତ୍ରିକତାକୁ ଖଣ୍ଡାଧାରରେ ରଖେ। କାବ୍ୟର ବୈଶିଷ୍ଟ୍ୟ ହେଲା ଯେ ଏହା ନାୟିକାକୈନ୍ଦ୍ରିକ ଏବଂ ଏହି ନାୟିକା ଜଣକ ହେଲେ ଜଣେ ଅ-ନାୟିକା। ସେ ପ୍ରେମ କରିଛି; ବିବାହ ପୂର୍ବରୁ ଅନ୍ତସତ୍ତ୍ୱା ହୋଇଛି; ପ୍ରେମିକ ଦ୍ୱାରା ପ୍ରତାରିତ ହୋଇଛି; ସେ ପ୍ରଶ୍ନ କରିଛି, କାହିଁକି ତା' ସହ ଶରୀର ସବଂଧ ରଖିଥିବା ପୁରୁଷ ତାକୁ ନିଜ ଘରେ ସ୍ୱୀକୃତି ଦେଲା ନାହିଁ ? ଯଦି ସେ ଅସ୍ୱୀକାର କଲା, କେଉଁ ସମ୍ମାନରେ ବା ସେ ଏହିଭଳି ଜଣେ ପୁରୁଷ ଘରକୁ ଯାଆନ୍ତା ଯେ ? ସେ ପ୍ରଶ୍ନ କରିଛି ତା'ର ବାପା ମା'କୁ, ଯେଉଁମାନଂକ ଚାପରେ ସେ ତା'ର ନବଜାତ ଶିଶୁର ପ୍ରାଣ ନଷ୍ଟ କଲା। ଆଜି ସେହି ଶିଶୁଟି ବଂଚିଥିଲେ କ'ଣ ମା' ହେବାର ଗର୍ବରେ ତା'ର ପ୍ରାଣ ପୁଲକିତ ହେଉ ନ ଥାନ୍ତା ? ଏହି ଗ୍ରାମ୍ୟ ଯୁବତୀଟି ପୋଖରୀରେ ଅଧିକାରବୋଧ ସହିତ ପୁରୁଷଘାଟରେ ଯାଇ ଗାଧାଏ, ସଂଜବେଳେ ସ୍ୱତନ୍ତ୍ର ହୋଇ ଏକା ଏକା ବିଲକୁ ପୋଖରୀ ପାଣି ପାଇଁ ଯାଏ, ଗାଁକୁ ସାଧୁ ସନ୍ୟାସୀ ଆସିଲେ, ତାଂକ ପ୍ରବଚନ ଶୁଣିବାକୁ ରାତିସାରା ତାଂକ ପାଖରେ ବସିଯାଏ, ହେଲେ ଅନ୍ୟ ଉଦ୍ଦେଶ୍ୟ ରଖି ସନ୍ୟାସୀ ତାକୁ ସାଂଗରେ ଯିବାକୁ ପ୍ରରୋଚିତ କରନ୍ତି। ଯୁବତୀଟି ଗାଁ ନାଟକର କଳାକାରର ସୁଂଦର ଅଭିନୟ ଦେଖି ତା' ସାଂଗରେ ଚାଲିଯିବାକୁ ଇଚ୍ଛା କରେ; ନିଜ ଇଚ୍ଛାରେ, ଅନ୍ୟମାନଂକର ବିଦ୍ରୂପକୁ ଭୃକ୍ଷେପ ନ କରି ଗାଁ ଦାଣ୍ଡରେ ଡାଲଖାଇ ନାଚିବାକୁ ବାହାରି ପଡ଼େ।

ତା'ର ପାଠ ପଢ଼ିବାକୁ ଇଚ୍ଛା; ଯାତ୍ରା ପାର୍ଟିରେ ଅଭିନୟ କରିବାକୁ ଇଚ୍ଛା; ଦୂର ଗାଁକୁ ଏକା ଏକା ମେଳା ହରିହାଟ ଦେଖି ଯିବାକୁ ଇଚ୍ଛା। ସେ ଜାତିର ଅଂକୁଶକୁ ମାନେନା, ଲିଂଗ ଆଧାରରେ ତାକୁ ପକ୍ଷପାତ କଲେ ସେ ବିଦ୍ରୋହ କରେ, ସେ ତା' ନିଜ ମର୍ଜିର ମାଲିକ। ସେ ନିଜ ନାଆର ନାବିକ। ଅନ୍ୟର ମଂଗଧରି ସେ ପଛୁଆଳ ହେବାକୁ ଚାହେଁନା।

କବି ଖଗେଶ୍ୱରଂକ 'ପଏର୍ଛା ସତି'ର ପ୍ରତିଟି ପଦ ନାରୀ ମୁହଁରେ ଗୋଟାଏ ଗୋଟାଏ ବିପ୍ଲବର ବାଣୀ ଶୁଣାଏ। ନାରୀ କାହାରି ଆଦେଶ ମାନିବାକୁ ବାଧ୍ୟ ନୁହେଁ ବୋଲି ଆପ୍ତବାଣୀ ଶୁଣାଏ। ପୁରୁଷତନ୍ତ୍ରର ଶୃଂଖଳକୁ ପଦାଘାତ କରିବାର ସାମର୍ଥ୍ୟ ରଖେ ବୋଲି ଘୋଷଣା କରେ। ନିମ୍ନରେ 'ପଏଛା ସତି'ର କେତୋଟି ପଦରୁ ଏହା ସୁସ୍ପଷ୍ଟ ହେବ।

ଶୁନ ଗୋ ମା' ବହନେ, ମୋର ନାଆଁଟା ପଏର୍ଛା ସତି,
ମତେ ବଲସନ ବାଂଝେନ ଛାର୍ଗୀ, ଘଏତା ଖାଇ ନଚୀ ବିଛାତୀ
ନାଇଁ ଖର୍ଚି ମୁଇଁ କାଏ କହେବ, ଯେନ ପୋ ଦେଇଥିଲା ଦଏବ
ସେ ପୋ ଆଏଜ ଜିଇଁ ଥିଲେ କାଏଁ, କଲକାଫଟା କଥା ଶୁନର୍ତି ?
ମା' ବାପ ଯଦି କଲେ ରିସ, ମତେ ଦେଇଥିତେ ମହରା ବିଷ,
ଛୁଆର ଟଁ ଟି ମାଡ଼ି ନେଲେ ମୋର, ନାଇଁଶୁନଲେ ଜୁହାର ବିନତି
କାଏଁ ଦୋଷ କଲିଂ ଯେ ନାଏଁ କହେତା ?
ନାଇଁ ନେଲା ମତେ ବିହେଇ ଘଏତା,
ପଏସା ମୁଡ଼ି ପଶଲା ବାଗିର, ବରକସି କାଏଁ ଡୁକି ଯାଏତି ?
ବାପ ଅଁଟକୁରା ଟଁକା ଦେଖଲା, ଦରମରାଟାକେ ଝଁପେଇ ନେଲା,
ବଂଦନା ଲୁଗାଥିଁ କଁଦନା ଲାଗଲା ଲାଖଚୁରି କାଣା ଭାଂଗତି ହେଥିଁ ?
ବାଜୁଥିତା ଡୁବି ତବଲା ଗିନି ନାଚୁଥିର୍ତି ମୁଇଁସାଜୋ ପିଂଧି
ଦେଖୁଥିତେ ଲୋକ ଟିକଟ ଘିନି ନଚୀ ବଏଲେଁ ହଁ ବଲର୍ତି।
ସଂଜବେଲେଁ ଗଲେଁ ବାହାର୍କେଭଟା ଏକଲା ଯାଏସିଁ ଧୁବେନ କଁଟା
ପାଏନଛିଆ ବେଲେଁ ଲୋକ ଆସିଗଲେଁ, ବେଁକେ ପାନି ଯାଇ ହେସିଁ ବୁଥି।
ଆସିଥିଲେ ଏଭେଁ କଟକୀ ପାଲା, ଗାହାକ ଥିଲା ଗୁଟେ ମାହାତିପିଲା,
ସେ'ତ ମତେ ଘିନି ନେଇଛେ, ଶାଢ଼ି ଖଁଡ଼େ ବାର ପଂଦ୍ର ହାତି।

ସବୁ ଦିନ କେ ରହୁଥିଲା, ପାଲା ଶିଖାମି କହୁଥିଲା,
ବୁଢ଼ା ଅଁଟକୁରେ ଭାଂଗଲେ ନେହେଲେଁ, ଗାଁଯାକର ମନ ଥିଲା ସେଥିଁ
ଗାଁଏ ପରଗାଁଏ ଯେଏନ ହେଲେଁ, ଅଏନ ପିଲାଟେ ଦେଖି ନେଲେଁ
ମନ ବେଲସି ଭାଏ ହେଲେଁ ଗଲେ, ସାଏ ହେଲେ ମୁଇଁକଥା ହେର୍ତିଁ।
ହାର୍ଟେ ଝନେକେ ପଚ଼ରାଲିଁ ସାଏ, ବନେ ବନେ ହାଇଛ କାଏଁ ?
ସେତକି ଥିଁ ଅବଦି କରି, ଅଡ଼ଗି ନେଇଛନ ଆମର ଜାର୍ତିଁ।
ସତକଥା ଯେ କହି ନେ ପାରେ, ସତକଥା ଯେ ସହି ନେ ପାରେ
ହେନ୍ତା ନିଲଜ ପାପୀ ମାନଂକର କପିଲ ଧାରେଁ ପାପ୍ ଛଡ଼ାର୍ତିଁ।।

'ସଏର୍ଛା ସତି'ର ନାୟିକା ସ୍ୱଚ୍ଛଂଦା ସେ ସ୍ପଷ୍ଟବାଦୀ, ସତ୍ୟବାଦୀ । ସେ ପୁରୁଷ ସମାଜର ନୀତିନିୟମର ଅଂକୁଶ ମଧ୍ୟରେ ରହି ନିଜର ଜୀବନକୁ ବଳି ଦେବାକୁ ଚାହେଁନା। ସେ ପୁରୁଷର ଶଠତାକୁ ପ୍ରଶ୍ନ କରେ; ସେ ଯେଉଁ ନାରୀମାନେ ସତିର ମର୍ଯ୍ୟାଦା ପାଇବାର ଲୋଭରେ ମିଛ ଓ ଭ୍ରମାତ୍ମକତାର ଆବରଣ ପିଂଧିବାକୁ ଚାହାଁନ୍ତି, ସେମାନଂକ ଡରୁଆପଣକୁ ଧିକ୍କାର କରେ। ଅସତି ବୋଲାଇବାର ଭୟରେ ସେ ନିଜ ଇଚ୍ଛାକୁ ତିଳ ତିଳ କରି ହତ୍ୟା କରିବାକୁ ଚାହେଁନା। ସେ ନିଡ଼ରା, ନିର୍ଭୟୀ ! ତାକୁ ପୁରୁଷର କର୍ତ୍ତୃତ୍ୱ ନୁହେଁ, ବଂଧୁତ୍ୱ ଲୋଡ଼ା, ସହଧର୍ମିତା ଓ ସହମର୍ମିତା ଲୋଡ଼ା। 'ସଏର୍ଛା ସତି' ପୁରୁଷର ଦୟାର ପାତ୍ର ହେବାକୁ ଚାହେଁନା। 'ସଏର୍ଛା ସତି' ମହିଳା ସଶକ୍ତିକରଣ ଓ ନାରୀ ସ୍ୱାଧୀନତାର ଏକ ଉତ୍କୃଷ୍ଟ ନମୂନା। ସାହିତ୍ୟରେ ଏଭଳି ଜଣେ ନାରୀ ଚରିତ୍ରକୁ ଗଢ଼ିବା ଯେ ଏକ ବଡ଼ ସାହସର କଥା, ତହିଁରେ ଦ୍ୱିମତ ନାହିଁ।

କବି ଖଗେଶ୍ୱର ଶେଠ ପଶ୍ଚିମ ଓଡ଼ିଶାର ଜଣେ ଯଥେଷ୍ଟ ପରିଚିତ କାବ୍ୟକାର। ସେ ପ୍ରାୟ ୩୦ବର୍ଷ ତଳେ ମୃତ୍ୟୁ ଲାଭ କଲେଣି। ମାତ୍ର ଆଜି ପର୍ଯ୍ୟନ୍ତ ଲୋକମାନସରୁ ବିସ୍ମୃତ ନୁହଁନ୍ତି, ଯଦିଓ ପଶ୍ଚିମ ଓଡ଼ିଶା ବାହାରେ ତାଂକୁ ସାହିତ୍ୟିକ ମହଲରେ ଅଧିକ ଲୋକ ଜାଣନ୍ତି ବୋଲି କହିହେବ ନାହିଁ। ଖଗେଶ୍ୱର ଉଭୟ ସଂବଲପୁରୀ ଓ ଓଡ଼ିଆରେ ଅନେକ କାବ୍ୟ କବିତା ଲେଖିଛନ୍ତି, ଯାହା ପରବର୍ତ୍ତୀ ସମୟରେ 'ଖଗେଶ୍ୱର ଗ୍ରନ୍ଥାବଳୀ' ଶୀର୍ଷକରେ (ତିନୋଟି ଖଣ୍ଡରେ, ଖଗେଶ୍ୱର ସାହିତ୍ୟ ସମିତି, ପାଇକମାଳ ଆନୁକୂଲ୍ୟରେ ୧୯୯୯ରେ ପ୍ରକାଶିତ। ଓଡ଼ିଶା ସଂଗୀତ ନାଟକ ଏକାଡ଼େମୀ ମଧ୍ୟ୧୯୫୮ରେ

ଖଗେଶ୍ୱର ଗ୍ରନ୍ଥାବଳୀ ପ୍ରକାଶିତ କରିଛି।) 'ସୁରଂଗୀ', 'ସମାଜ', 'ଆମେ ଗରିବ କାହିଁକି ? 'ଠକ ଠାକୁର' ଆଦି ହେଉଛି ତାଂକ ଓଡ଼ିଆରେ ଲିଖିତ କେତୋଟି କାବ୍ୟ ଏବଂ 'ପଏର୍ଛା ସତି', 'ଭୋଟ ବିଚ଼ାର', 'ଦଲେଇ ପଡ଼ାର ସମଲେଇ', 'ପାପର ମା' ବାପ', 'ଠାଂଗରୁ ବାବା' ଏବଂ 'ମୁନୁଷ ଜାତିର ସଭାବ' ହେଉଛି ତାଂକ ସଂବଲପୁରୀ କାବ୍ୟ। ସବୁଗୁଡ଼ିକ ସଂସ୍କାରଧର୍ମୀ, କାରଣ କବି ନିଜେ ଆର୍ଯ୍ୟସମାଜୀ ଥିଲେ।

କବି ଖଗେଶ୍ୱରଂକ ସମସ୍ତ କାବ୍ୟ କୃତି ମଧ୍ୟରେ 'ପଏର୍ଛା ସତି' ଖୁବ୍ ଅଧିକ ପରିଚ଼ିତ। ଖଗେଶ୍ୱର ଜଣେ ଗ୍ରାମ୍ୟ କଳାକାର ଓ ନାଟ୍ୟଗୁରୁ ଥିଲେ। ଗ୍ରାମ୍ୟ ନାଟ୍ୟ ମଂଚ଼ରେ ସେ ନିଜେ ଏହାକୁ ଏକକ ଅଭିନୟ କରି ପରିବେଷଣ କରୁଥିଲେ। ଶ୍ରୋତାଙ୍କର କାବ୍ୟଟିକୁ ପସଂଦ କରିବା ମୂଳରେ 'ପଏର୍ଛା ସତି'ର ବିପ୍ଲବିନୀ ରୂପ, ପୁରୁଷତାନ୍ତ୍ରିକତା ବିରୁଦ୍ଧରେ ତା'ର ମୁଖର ଅଭିବ୍ୟକ୍ତି ? ନା ଉପଯୁକ୍ତ ଗ୍ରାମ୍ୟ ଶବ୍ଦ ଚୟନ ଯୋଗୁଁ ହାସ୍ୟ-ବ୍ୟଂଗର ଉଦ୍ରେକ ? ଏକଥା ଜାଣିବା ପାଇଁ ଆଲୋଚ଼ନା ହେବା କଥା। ମାତ୍ର ଏକଥା ସତ ଯେ ଏକ ସାହିତ୍ୟ କୃତି ଭାବରେ ଏହା ସ୍ରଷ୍ଟାଙ୍କର ବିପ୍ଲବବାଦୀ ଚିନ୍ତାଧାରୀ ଓ ନାରୀ ମନକୁ ବୁଝିବାର ପ୍ରୟାସକୁ ପ୍ରତିଫଳିତ କରେ। ସମାଜରେ ଯେଉଁ ରୀତିନୀତି, ନିୟମକାନୁନ ପ୍ରବର୍ତ୍ତିତ ଓ ପ୍ରଚ଼ଳିତ, ତାକୁ ସହଜରେ ମାନି ନ ନେଇ ଏହି ସାମାଜିକ କାବ୍ୟଟି ପ୍ରଶ୍ନ କରିବାକୁ ପ୍ରୟାସ କରେ ଏବଂ ସେହି ପ୍ରକ୍ରିୟାରେ ସାମାଜିକ ଚିନ୍ତନରେ ଏକ ପରିବର୍ତ୍ତନ ଆଣିବାକୁ ଉଦ୍ୟମ କରେ। ୧୯୪୨-୪୩ ମସିହାରେ ଜଣେ ଗ୍ରାମ୍ୟ କବି ଯେଉଁ ସାହସର ସହିତ ପୁରୁଷତାନ୍ତ୍ରିକତା ବିରୁଦ୍ଧରେ ନାରୀର ସ୍ୱରକୁ ଅଭିବ୍ୟକ୍ତ କରିବାକୁ ଉଦ୍ୟମ କରିଛନ୍ତି ଏବଂ ତା'ର ମଞ୍ଚାଭିନୟ କରିଛନ୍ତି, ତା' ପାଇଁ ସେ ନିଶ୍ଚିତ ରୂପେ ଧନ୍ୟବାର୍ଦାହ।

ବିପ୍ଲବୀ କବି ଖଗେଶ୍ୱରଂକ ଜନ୍ମ ବରଗଡ଼ ଜିଲ୍ଲାର ସରସରା ଗାଁରେ ଏକ ଦଳିତ କୈବର୍ତ୍ତ (କେଉଁଟ) ପରିବାରରେ। ବାପାଂକର ନାମ ହୃଷିକେଶ ଶେଠ ଓ ମାଂକ ନାମ ଯାଜ୍ଞସେନୀ। ପଶ୍ଚିମ ଓଡ଼ିଶାରେ କେଉଁଟ ମାନେ ହେଲେ ସ୍ପୃଷ୍ୟ ଦଳିତ। ମାତ୍ର ଜନ୍ମ ହେବା ପରେ ମା' କ୍ଷୀର ନ ହେବାରୁ ଖଗେଶ୍ୱର ଜଣେ ଅସ୍ପୃଷ୍ୟ ଦଳିତ ମହିଳାଙ୍କର ସ୍ତନ୍ୟପାନ କରି ବଡ଼ ହୋଇଥିଲେ। ଏହା ତାଂକୁ ପରବର୍ତ୍ତୀ ସମୟରେ ଜାତିଆଣ ଭାବରୁ ଊର୍ଦ୍ଧ୍ୱକୁ ନେଇଥିଲା। ହୃଷିକେଶଂକ

ପରିବାର ଦରିଦ୍ର ଥିଲେ ଏବଂ ମାଛ ମାରି, ଅନ୍ୟର କ୍ଷେତରେ ହଳ କରି, ମୁଢ଼ି ଭାଜି ଜୀବନ ନିର୍ବାହ କରୁଥିଲେ। ପଶ୍ଚିମ ଓଡ଼ିଶାର ଗ୍ରାମ୍ୟ ସଂସ୍କୃତିରେ କେଉଁଟ ମାନେ ସାଧାରଣତଃ ମାଛ ମାରିବା ସହିତ ମୁଢ଼ି ଭାଜିବା କାମ କରିଥାନ୍ତି। ନିଜେ ଖଗେଶ୍ୱର ମଧ୍ୟ ଜୀବନର ଶେଷ ଯାକେ ମୁଢ଼ି ଭାଜିବାକୁ ବୃତ୍ତି ଭାବେ ଗ୍ରହଣ କରିଥିଲେ। ଏଥିପାଇଁ ଜାଳେଣି ସଂଗ୍ରହ, ଧାନ ସିଝା, ପାଣି ଅଣା ଆଦି ସବୁ କାମ ତାଂକୁ କରିବାକୁ ପଡୁଥିଲା। ଔପଚାରିକ ବିଦ୍ୟାଳୟ ଶିକ୍ଷା ତାଂକର କିଛି ନ ଥିଲା, ଯଦିଓ ଚାଟଶାଳୀରେ ସେ ଅକ୍ଷର ଶିକ୍ଷା ଓ ପୁରାଣ ପାଠ ଆଦି ଭଲଭାବେ ଜାଣିଥିଲେ।

ପରିବାର ଦରିଦ୍ର ଓ ଚାଷ ଜମି ନାହିଁ ବରାବର। ତେଣୁ, ଜୀବିକା ଅନ୍ୱେଷଣରେ ଖଗେଶ୍ୱରଂକ ପରିବାର ସରସରାରୁ ଯାଇ ସୁରୁଂଗି, ତାଲପଦର, ପାଣିମୋରା ଓ ବୁରୋମାଲ ଗାଁରେ ଯାଇ ବାସିଂଦା ହୋଇ ରହିଛନ୍ତି। ମୁଢ଼ି ଭାଜିବା ସାଂଗକୁ ଏହି ଗାଁ ମାନଂକରେ ନାଟ୍ୟଗୁରୁ ହୋଇ ନିଜ ଲେଖା ନାଟକର ନିର୍ଦ୍ଦେଶନା ଦେଇଛନ୍ତି, ନିଜେ ଉଭୟ ପୁରୁଷ ଓ ସ୍ତ୍ରୀ ଭୂମିକାରେ ଅଭିନୟ କରିଛନ୍ତି। ଖଗେଶ୍ୱରଂକ ବ୍ୟକ୍ତିତ୍ୱର ଏକ ବୈଶିଷ୍ଟ୍ୟ ହେଲା ତାଂକ ବିଦ୍ରୋହୀ ସ୍ୱଭାବ। ଦରିଦ୍ର, ଜମିହୀନ ଓ ତଳ ଜାତିର ହେବା ସତ୍ତ୍ୱେ ସେ ନିଡ଼ର ହୋଇ ନିଜ ମତ ରଖୁଥିଲେ, ଯାହା ଅନେକ ସମୟରେ ଗାଁ ସମାଜ ଦ୍ୱାରା ସ୍ୱୀକୃତ ହେଉନଥିଲା। ଏଥିପାଇଁ ତାଂକୁ ଗାଁରେ ସାମାଜିକ ବାସଂଦର ମଧ୍ୟ ଶିକାର ହେବାକୁ ପଡୁଥିଲା ତଥା ଗାଁ ଛାଡ଼ିବାକୁ ପଡ଼ୁଥିଲା। ବୁରୋମାଲ ଗ୍ରାମରେ ସାମାଜିକ ବାସଂଦ ଭୋଗୁଥିବା ବେଳେ ଥରେ ମୁଁ ତାଂକୁ ଦେଖିଛି (୧୯୮୪ ମସିହାରେ)। ସବୁ କାମ ତାଂକୁ ନିଜେ କରିବାକୁ ପଡ଼େ, କାରଣ ସାମାଜିକ ବାସଂଦ ଭୋଗୁଥିବାରୁ ଗ୍ରାମ୍ୟ ସମାଜର କେହି ସହଯୋଗ କରିବାକୁ ନ ଥାନ୍ତି। ଏସବୁ ସତ୍ତ୍ୱେ ଭାଂଗି ନ ଯାଇ କବି ସର୍ଜନା ଜଗତରେ ନିମଜ୍ଜିତ ରହନ୍ତି। ବ୍ୟକ୍ତିଗତ ଭାବରେ ମୁଁ ତାଂକ ସହ କଥାଭାଷା କରିବାକୁ ଚାହିଁଥିଲି। ମାତ୍ର ସାମାଜିକ ବାସଂଦର ଭୟ ଯୋଗୁଁ ଭେଟିବାକୁ ସାହସ ଯୋଗାଡ଼ କରି ପାରିନଥିଲି, ଯେଉଁଥି ପାଇଁ ମୁଁ ଆଜି ବି ଅନୁତାପ କରେଁ।

୧୯୪୬-୪୭ ମସିହାରେ ଔପନ୍ୟାସିକ ଗୋପୀନାଥ ମହାନ୍ତି ଯେତେବେଳେ ବରଗଡ଼ରେ ସରକାରୀ ଅଫିସର ଭାବେ ଅବସ୍ଥାପିତ ଥିଲେ,

ସେତେବେଳେ ତାଂକର (ଗୋପୀନାଥଂକର) କବି ଖଗେଶ୍ୱରଂକ ସହ ପରିଚୟ ହୋଇଥିଲା। ଏମିତିରେ କବିଂକର ବୟସ ସେତେବେଳକୁ ମାତ୍ର ଚାଳିଶ ବର୍ଷ। ମାତ୍ର ଦାରିଦ୍ର୍ୟ ଓ କଠୋର ଶ୍ରମ ଯୋଗୁଁ ସେ ଖୁବ୍ ବୁଢ଼ା ଦିଶୁଥିଲେ ବୋଲି ଗୋପୀନାଥ ମହାନ୍ତି ତାଂକ ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି। ଆତ୍ମଜୀବନୀ 'ସ୍ରୋତସ୍ୱତୀ'ରେ ଗୋପୀନାଥ ଏକଥା ମଧ୍ୟ ଉଲ୍ଲେଖ କରିଛନ୍ତି ଯେ କବି ଖଗେଶ୍ୱରଂକ କାବ୍ୟପାଠ ଶୁଣି ସେ ଖୁବ୍ ଚକିତ ହୋଇ ଯାଇଥିଲେ, କାରଣ ପରିଧାନରୁ କବି ଜଣେ ବୌଦ୍ଧିକ ବ୍ୟକ୍ତି ଭଳି ଦେଖା ପଡୁ ନ ଥିଲେ। ଗୋପୀନାଥ କବିଂକ ଗାଁ ବୁରୋମାଲକୁ ମଧ୍ୟ ଯାଇଥିବା କଥା ଲେଖିଚନ୍ତି। ଏହି ପ୍ରକ୍ରିୟାରେ ଆର୍ଥିକ ଅ-ସାମ୍ୟ ସତ୍ତ୍ୱେ ଉଭୟ ସ୍ରଷ୍ଟାଙ୍କ ମଧ୍ୟରେ ଏକ ସମସ୍ତରୀୟ ସଂପର୍କ ସ୍ଥାପିତ ହୋଇଥିଲା।

ସେ ଯାହାହେଉ, କବି ଖଗେଶ୍ୱର ଶେଠଂକ ସଂବଲପୁରୀ କାବ୍ୟ 'ପଏର୍ଛା ସତି'ରେ ନାରୀକୁ ଏକ ସ୍ୱତନ୍ତ୍ର ବ୍ୟକ୍ତି ରୂପେ ଦର୍ଶାଯାଇଛି। ସେହି ଅନୁସାରେ ତା'ର ଚରିତ୍ର ନିର୍ମାଣ କରାଯାଇଛି। କବିଂକ କଳ୍ପନାର ନାରୀ ହେଉଛି ଏକ ଅନନ୍ୟ ବ୍ୟକ୍ତିତ୍ୱ, ଯିଏ ପୁରୁଷର ଗୋଡ଼ାଣିଆ ନୁହେଁ; ବରଂ ସେ ପୁରୁଷ ନିର୍ମିତ ନୀତି ନିୟମକୁ ସ୍ୱୀକାର ନ କରି ନିଜ ଆଦର୍ଶରେ ବାଟ ଚାଲେ। ତା'ର ନିଜର ଇଚ୍ଛା, ଆଗ୍ରହ ଓ ବ୍ୟକ୍ତିସତ୍ତା ରହିଛି। ସେ ଯଦି କେବଳ ଜଣେ ଭଗ୍ନୀ, ମା' କିଂବା ପତ୍ନୀ ଭାବରେ ବଂଚେ, ତେବେ ତା'ର ସେହି ବ୍ୟକ୍ତିସତ୍ତା ଠିକ୍ ରୂପେ ଅଭିବ୍ୟକ୍ତ ହୋଇପାରେନା। ପୁରୁଷତନ୍ତ୍ରର ଅଂକୁଶରେ ରହିବା କେବେ ତା'ର ଜୀବନର ଉଦ୍ଦେଶ୍ୟ ହୋଇ ନ ପାରେ। ଯେଉଁ ନାରୀମାନେ ପୁରୁଷତାନ୍ତ୍ରିକତାକୁ ମହନୀୟ ଭାବେ ଚିତ୍ରିତ କରି ନିଜର ନିଜତ୍ୱକୁ ଜଳାଂଜଳି ଦିଅନ୍ତି, ସେମାନଂକୁ ପୁରୁଷ ସମାଜ 'ସତି', 'ପୂଜ୍ୟା', 'ମହାନ' ବୋଲି ଆଖ୍ୟାୟିତ କରେ। ଅନ୍ୟ ଶବ୍ଦରେ କହିଲେ, ଏହି ସବୁ ଆଖ୍ୟା ପଛରେ ପୁରୁଷର ସ୍ୱାର୍ଥ ଜଡ଼ିତ। ୧୯୪୦ ଦଶକରେ ଏକ ବିପରୀତ ବିପ୍ଲବୀ ନାରୀ ଚରିତ୍ର ସୃଷ୍ଟି କରି କବି ଖଗେଶ୍ୱର ଶେଠ ଓଡ଼ିଶାର ସାହିତ୍ୟକୁ ମହାନ କରିଛନ୍ତି, ନାରୀର ଏକ ନୂଆ ସଂଜ୍ଞା ଦେଇଛନ୍ତି ।



(ମେ ୨୦୧୪)

# ସତ୍ୟବାଦୀ ଶିକ୍ଷା ବ୍ୟବସ୍ଥା

ଆଧୁନିକ ଓଡ଼ିଶା ଇତିହାସରେ ସତ୍ୟବାଦୀ ଏକ ଜାତୀୟତାବାଦୀ ଶିକ୍ଷାନୁଷ୍ଠାନ ଓ ମୌଳିକ ଶିକ୍ଷା ବ୍ୟବସ୍ଥାକୁ ବୁଝାଏ। ୧୯୦୯ ମସିହାରେ ପୁରୀ ଉପକଣ୍ଠରେ ସ୍ଥିତ ସାକ୍ଷୀଗୋପାଳଠାରେ ଏହି ଶିକ୍ଷାନୁଷ୍ଠାନର ସ୍ଥାପନା ହୋଇଥିଲା। ବକୁଳ ଓ ଛୁରିଆନା ବନରେ ଏହାର କାର୍ଯ୍ୟ ହେଉଥିବାରୁ ସ୍କୁଲଟି ବନବିଦ୍ୟାଳୟ ନାମରେ ମଧ୍ୟ ଖ୍ୟାତ। ଅନ୍ୟଥା ଅନୁପଯୋଗୀ ଗଣା ହେଉଥିବା ସାକ୍ଷୀଗୋପାଳ ମଂଦିରର ଅନାବାଦୀ ଜମିକୁ ସତ୍ୟବାଦୀର ପୀଠସ୍ଥଳୀରେ ରୂପାନ୍ତରିତ କରି ସ୍କୁଲର ସଂସ୍ଥାପକମାନେ ସ୍ପଷ୍ଟ କରିବାକୁ ଚେଷ୍ଟା କରିଥିଲେ ଯେ ଅନୁର୍ବର ବୋଲି କିଛି ନାହିଁ। ଯଥୋଚିତ ଉଦ୍ୟମ ଓ ଅବସର କାହାକୁ ବି ଉର୍ବର, ସାମର୍ଥ୍ୟବାନ କରିଦିଏ।

ସତ୍ୟବାଦୀକୁ ପ୍ରାଣଦାନ କରିଥିଲେ 'ପଂଚସଖା' ନାମରେ ଖ୍ୟାତ ପାଂଚଜଣ ଜାତୀୟବାଦୀ ସାଧକ। ସେମାନଂକ ମଧ୍ୟରେ ବୟୋଜ୍ୟେଷ୍ଠ ଓ ଆଗରେ ଥିଲେ ଗୋପବଂଧୁ ଦାସ (୧୮୭୭-୧୯୨୮), ଯିଏ ପରବର୍ତ୍ତୀ ସମୟରେ ଉତ୍କଳମଣିର ମାନ୍ୟତା ଲାଭ କରିଥିଲେ। ଅନ୍ୟ ଚାରି ସଖା ହେଲେ : ନୀଳକଣ୍ଠ ଦାସ (୧୮୮୪-୧୯୬୭)ଆଚାର୍ଯ୍ୟ ହରିହର ଦାସ (୧୮୮୧-୧୯୭୧), ଗୋଦାବରୀଶ ମିଶ୍ର (୧୮୮୬-୧୯୫୬) ଏବଂ କୃପାସିଂଧୁ ମିଶ୍ର (୧୮୮୬-୧୯୨୬)। ସତ୍ୟବାଦୀ ଓ ପଂଚସଖା ପରସ୍ପରର ପରିପୂରକ। ପରିପୂରକତା ଏତେ ଅଧିକ ଯେ ସତ୍ୟବାଦୀର ନାମ ସହ ପରିଚିତ କେହି ପଂଚସଖାର ନାଁକୁ କେବେ ଅପରିଚିତ ମନେ କରେ ନାହିଁ। ଏଥିରୁ ଗୋଟାଏ କଥା ସିଦ୍ଧ ହୁଏ : ବ୍ୟକ୍ତି ଓ ଅନୁଷ୍ଠାନ ପରସ୍ପରର ପରିପୂରକ ଏବଂ ଏକ ବିନା ଆରେକର ତିଷ୍ଠି ରହିବା କାଠିକର। ଦ୍ୱିତୀୟତଃ, ଏହି ପରିପୂରକତା ବଳରେ ଉଭୟେ ସ୍ମୃତି ଯୋଗ୍ୟ ହୁଅନ୍ତି। ସାମୂହିକ ହିତ ସାଧନ ଲକ୍ଷ୍ୟରେ ଲୋକ ପରସ୍ପର ମଧ୍ୟରେ ସଖା ଭାବ ରଖିଲେ, ତାହା ଅନୁଷ୍ଠାନର ଗଠନକୁ ସହଜ ସୁଗମ କରେ ତଥା ଉଭୟ ବ୍ୟକ୍ତି ଓ ତା'ର କୃତ୍ୟ ଅନୁଷ୍ଠାନକୁ ଚିରଜୀବୀ କରେ। ଆଜି ସତ୍ୟବାଦୀ ସ୍ଥାପନାର ଶହେ ପାଂଚ ତମ ବର୍ଷରେ ତା'ର ଶିକ୍ଷାବ୍ୟବସ୍ଥାକୁ ନେଇ ଆଲୋଚନା କଲାବେଳେ ଅନ୍ତତଃ ଏହି ସାମୂହିକ ହିତ ବୌଦ୍ଧିକ ବର୍ଗର ଧ୍ୟେୟ ହୋଇ ପାରିଲେ ବିଚାର ଆଗକୁ ବଢ଼ିଲା ବୋଲି ଦାବି କରି ହେବ।

ସତ୍ୟବାଦୀକୁ ବନ ବିଦ୍ୟାଳୟର ମାନ୍ୟତା ପ୍ରଦାନ କଲାବେଳେ ସେଠାକାର ଆଶ୍ରମ ତୁଲ୍ୟ ପରିବେଶ ଓ ସ୍କୁଲରେ ପ୍ରାଚ୍ୟ ଜ୍ଞାନ ପ୍ରଣାଳୀକୁ ମିଳିଥିବା ପ୍ରମୁଖତା କଥା କୁହାଯାଏ। ଏହା ସତ। ମାତ୍ର ସତ୍ୟବାଦୀର ଏହି ପ୍ରାଚ୍ୟବାଦୀ ଦୃଷ୍ଟିକୁ ତତ୍‌କାଳୀନ ସାମାଜିକ ସଂଦର୍ଭରେ ଦେଖିବା ଉଚିତ ହେବ। ଭାରତର ଇଂରେଜ ଉପନିବେଶବାଦୀ କର୍ତ୍ତୃତ୍ୱ ବୃଦ୍ଧି ପାଇଲା ପରେ ୧୮୩୫ରୁ ଆଧୁନିକ ଶିକ୍ଷା ନାଁରେ ଔପନିବେଶିକ ଶିକ୍ଷାକୁ ମହତ୍ତ୍ୱ ମିଳିଲା ଏବଂ ପାରଂପାରିକ ଶିକ୍ଷା ବ୍ୟବସ୍ଥାକୁ ଓ ତା'ର ଜ୍ଞାନ ଭଣ୍ଡାରକୁ ତୁଚ୍ଛ ମନେ କରାଗଲା। ଫଳରେ, ପାରଂପାରିକ ଶିକ୍ଷାର ଅଧୋପତନ ହେଲା। ମାତ୍ର ତା' ସ୍ଥାନରେ ଆବଶ୍ୟକ ମାତ୍ରାରେ ନୂତନ ଶିକ୍ଷାର ନିର୍ମାଣ ହେଲା ନାହିଁ। ଏହି ଶିକ୍ଷା-ଶୂନ୍ୟତା ପଛରେ ଗୋଟାଏ ପ୍ରଧାନ କାରଣ ହେଲା ନୂତନ ଶିକ୍ଷାର ବ୍ୟୟବହୁଳତା। ଶିକ୍ଷାନୁଷ୍ଠାନର ଭିତ୍ତିଭୂମି ନିର୍ମାଣଠାରୁ ଆରଂଭ କରି ଶିକ୍ଷା ଦାନ ସାମଗ୍ରୀ ଯାଏଁ, ସବୁଥିରେ ନୂତନ ଶିକ୍ଷା ବ୍ୟବସ୍ଥା ଖୁବ୍ ଖର୍ଚ୍ଚ ଦାବି କରୁଥିଲା, ଯାହା ଲୋକଂକୁ ସରକାର ଉପରେ ଶିକ୍ଷା ପାଇଁ ନିର୍ଭରଶୀଳ କରିଦେଲା ଏବଂ ତା' ସାଂଗକୁ ଶିକ୍ଷାନୁଷ୍ଠାନ ସହିତ କ୍ରମଶଃ ଅସଂପୃକ୍ତ କରି ଦେଲା। ଏହାର ବିପରୀତ, ପାରଂପାରିକ ଶିକ୍ଷା ଥିଲା ସ୍ୱଳ୍ପବ୍ୟୟୀ, ଯାହା ସ୍ଥାନୀୟ ଲୋକଂକ ସଂପୃକ୍ତିକୁ ସହଜ ସୁଗମ କରିଥିଲା। ଉପନିବେଶବାଦୀ ସ୍ୱାର୍ଥ ଦୃଷ୍ଟିରୁ ତଥା ପ୍ରାଚ୍ୟଜ୍ଞାନ ବ୍ୟବସ୍ଥା ସହ ଅପରିଚିତି ଯୋଗୁଁ ଇଂରେଜ ସରକାର ଭାରତରେ ପାରଂପାରିକ ଶିକ୍ଷାକୁ ହତାଦର କଲେ। ଦେଶୀୟ ଲୋକଂକ ମନରେ ହୀନମନ୍ୟତା ସୃଷ୍ଟି କରିବା ତଥା ସାମାଜିକ ଓ ସାଂସ୍କୃତିକ ସ୍ତରରେ ସ୍ୱ-କର୍ତ୍ତୃତ୍ୱ ସ୍ଥାପନ କରିବା ମଧ୍ୟ ସରକାରଂକ ଅନ୍ୟତମ ଉଦ୍ଦେଶ୍ୟ ଥିଲା।

ଉନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଦେଶରେ ଆଧୁନିକ ଶିକ୍ଷିତ ବର୍ଗଟିଏ ସୃଷ୍ଟି ହେଲା। ଏହି ବର୍ଗ ଆଧୁନିକ ଶିକ୍ଷାର ମହତ୍ତ୍ୱକୁ ବି ବୁଝିଥିଲା ଏବଂ ତା' ସହିତ ପାରଂପାରିକ ଶିକ୍ଷାର ଅବହେଳନା ପଛର ଔପନିବେଶିକ ମାନସିକାକୁ ବି ବୁଝିଥିଲା। ଏହା ବ୍ୟତୀତ ପାରଂପାରିକ ଶିକ୍ଷାର ଭାରତ ସଂଦର୍ଭରେ ଉପଯୋଗୀତାକୁ ଅନୁଭବ କରିଥିଲା। ତେଣୁ, ଉପନିବେଶବାଦୀ ଶିକ୍ଷା ବ୍ୟବସ୍ଥାର ପ୍ରତିକ୍ରିୟା ସ୍ୱରୂପ ଦେଶର ବିଭିନ୍ନ ସ୍ଥାନରେ ବିକଳ୍ପ ଶିକ୍ଷାନୁଷ୍ଠାନ ମାନ ଗଠିତ ହେବାରେ ଲାଗିଲା। ଯେମିତି ପୁନେରେ ଫର୍ଗୁସନ କଲେଜ ଏବଂ ବଂଗରେ ଶାନ୍ତିନିକେତନ। ସତ୍ୟବାଦୀର ପରିକଳ୍ପନାକୁ ମଧ୍ୟ ସେହି ପରିପ୍ରେକ୍ଷୀରେ

ଦେଖିହେବ। କତିପୟ ନିର୍ଧନ ଉଚ୍ଚଶିକ୍ଷିତ ଯୁବକ କେବଳ ଗୋଷ୍ଠୀଭୁକ୍ତ ହୋଇ ଏହାକୁ ରୂପକଳ୍ପ ଦେଇଥିଲେ, ଯାହା ସତ୍ୟବାଦୀର ଅନ୍ୟତମ ବୈଶିଷ୍ଟ୍ୟ ରୂପେ ଚିହ୍ନିତ ହୁଏ।

ପଂଚସଖା ସତ୍ୟବାଦୀର ଜାତୀୟବାଦୀ ଶିକ୍ଷା ବ୍ୟବସ୍ଥାରେ ପାରଂପାରିକ ଶିକ୍ଷା ପ୍ରଣାଳୀ ଓ ତା'ର ବ୍ୟବହାରିକତାକୁ ମହତ୍ତ୍ୱ ଦେଇଥିଲେ ସତ, ମାତ୍ର ସେମାନେ କେବେ ଆଧୁନିକ ଶିକ୍ଷା ଓ ଜ୍ଞାନ-ବିଜ୍ଞାନକୁ ହତାଦର କରି ନ ଥିଲେ। 'ହରିହର ପାଠାଗାର' ନାମରେ ପରିଚିତ ବିଦ୍ୟାଳୟର ଲାଇବ୍ରେରୀରେ, ଯାହାକୁ ୧୯୧୫ରେ ରକ୍ଷଣଶୀଳ ଗୋଷ୍ଠୀ ପ୍ରତିକ୍ରିୟାଶୀଳ ହୋଇ ପୋଡ଼ି ଦେଇଥିଲେ, ଓଡ଼ିଆ, ସଂସ୍କୃତ ଓ ବଂଗଳା ବ୍ୟତୀତ ଗ୍ରୀକ, ଲାଟିନ ଓ ଇଂରେଜୀ ଆଦି ଭାଷାରେ ଲିଖିତ ପୁସ୍ତକମାନ ଗଚ୍ଛିତ ଥିଲା। ପୁଣି, ଆଧୁନିକ ବିଜ୍ଞାନ ପାଠକୁ ପିଲାଂକ ପାଠ୍ୟକ୍ରମରେ ପ୍ରମୁଖତା ଦିଆଯାଉଥିଲା। ସେହି ଦୃଷ୍ଟିରୁ ଦେଖିଲେ, ସତ୍ୟବାଦୀ ଥିଲା ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଶିକ୍ଷାର ଏକ ଅର୍ଥପୂର୍ଣ୍ଣ ସଂଯୋଜନା। ପ୍ରାଚ୍ୟ ବା ପାଶ୍ଚାତ୍ୟର କୌଣସି ପୂର୍ବ ନିର୍ଦ୍ଧାରିତ ପରିବେଷ୍ଟନୀରେ ବାଂଧି ନ ହୋଇ, ବରଂ ଉଭୟରୁ ଆବଶ୍ୟକ ମତେ ଆହରଣ କରିବାର କଳାକୁ ସତ୍ୟବାଦୀରେ ଜାତୀୟବାଦୀ ଶିକ୍ଷା ନାମରେ ପରିଭାଷିତ କରାଯାଉଥିଲା।

ଗୋପବଂଧୁ ସତ୍ୟବାଦୀକୁ ଏକ ମଣିଷ ତିଆରି କାରଖାନାରେ ପରିଣତ କରିବାର ଲକ୍ଷ୍ୟ ରଖିଥିଲେ। ତାଂକର ଏହି ଉଲ୍ଲିଖିତ ମଣିଷ ଥିଲା ଶିକ୍ଷିତ, ଯିଏ ଅଜ୍ଞାନତାରୁ ବିମୁକ୍ତି ପାଇଥିଲା, ବିଚାରରେ ଅନୁକରଣ ବଦଳରେ ନିଜସ୍ୱ ଭାବ ବା ସ୍ୱାତନ୍ତ୍ର୍ୟ ରଖୁଥିଲା, ପରସ୍ପର ପ୍ରତି ସହୃଦୟତା ଓ ସହମର୍ମିତା ରଖୁଥିଲା ତଥା ସମୂହର ହିତ ପାଇଁ ଆତ୍ମୋତ୍ସର୍ଗ କରିବାର ମାନସିକ ପ୍ରସ୍ତୁତି ରଖିଥିଲା। ଏହିଭଳି ଏକ ବିଶ୍ୱ ମଣିଷକୁ ଭାଷା, ଜାତି, ଧର୍ମ କିଂବା ଆଂଚଳିକତାର ବଂଧନୀରେ ଆବଦ୍ଧ କରି ଦିଆଯାଇ ନ ପାରେ। ଗୋପବଂଧୁ ତାଂକର ଏହି ଜୀବନଦୃଷ୍ଟିକୁ ସୁସ୍ପଷ୍ଟ କରି ୧୯୨୫ରେ ଲେଖିଥିଲେ, ବ୍ୟକ୍ତି, ପରିବାର, ଗ୍ରାମ, ପ୍ରଦେଶ, ରାଷ୍ଟ୍ର ଓ ଜଗତ- କେହି କାହାରି ଉନ୍ନତିର ବାଧକ ନୁହନ୍ତି। ଏ ପ୍ରତ୍ୟେକର ପ୍ରତ୍ୟେକ ସଂଗେ ଅଂଗାଂଗୀ ସଂବଂଧ। ପ୍ରତ୍ୟେକ ପ୍ରତ୍ୟେକର ସହାୟ ଓ ପରିପୂରକ।

ସତ୍ୟବାଦୀର ସାଧକମାନେ ଜାଣିଥିଲେ ଯେ ସରକାରୀ କର୍ତ୍ତୃତ୍ୱ କଦାପି ମଣିଷ ତିଆରି ପାଇଁ ସ୍କୁଲଟିଏ ପ୍ରତିଷ୍ଠା କରି ପାରିବ ନାହିଁ। ତେଣୁ, ସେମାନେ

ସରକାରୀ ନିୟନ୍ତ୍ରଣର ଊର୍ଦ୍ଧ୍ୱରେ ସ୍ଥାନୀୟ ସଂପୃକ୍ତିରେ ସତ୍ୟବାଦୀକୁ ଗଢ଼ିବାକୁ ପ୍ରୟାସ କରିଥିଲେ। ଏଥିପାଇଁ ସରକାରୀ ପାଣ୍ଠିକୁ ପ୍ରତ୍ୟାଖ୍ୟାନ ମଧ୍ୟ କରିଥିଲେ ଏବଂ ୧୯୨୧ରେ ଅସହଯୋଗ ଆଂଦୋଳନ ବେଳେ ସମସ୍ତ ସରକାରୀ ସଂପର୍କକୁ କାଟି ଦେଇଥିଲେ। ଆଂଦୋଳନର ପ୍ରଭାବରେ ଗଠିତ ବିଭିନ୍ନ ଜାତୀୟ ସ୍କୁଲକୁ ନେଇ ଉତ୍କଳ ସ୍ୱରାଜ୍ୟ ଶିକ୍ଷା ପରିଷଦ ଗଠିତ ହୋଇଥିଲା ଏବଂ ତା'ର କେଂଦ୍ରରେ ଥିଲା ସତ୍ୟବାଦୀ। ଜାତୀୟ ସ୍କୁଲ ଗୁଡ଼ିକୁ ଦୀର୍ଘସ୍ଥାୟୀ କରିବାକୁ ତଥା ତର୍ହିଁରେ ସତ୍ୟବାଦୀ ଶିକ୍ଷା ବ୍ୟବସ୍ଥାର ପ୍ରତିଫଳନ କରେଇବାକୁ ଚେଷ୍ଟା ହୋଇଥିଲା। ୧୯୧୭-୧୮ରେ ଆର୍ଥିକ ଅସୁବିଧା ଏବଂ ଆହୁରି ଅନେକ କାରଣରୁ ନୀଳକଣ୍ଠ ଓ ଗୋଦାବରୀଶ ସତ୍ୟବାଦୀ ଛାଡ଼ିଥିଲେ। ଅସହଯୋଗ ବେଳେ ଏହି ଉଭୟ ସାଧକ ଯଥାକ୍ରମେ ସଂବଲପୁର ଓ ଚକ୍ରଧରପୁରରେ ଜାତୀୟ ସ୍କୁଲ ସ୍ଥାପନର ଭାର ନେଇ ପ୍ରକାରାନ୍ତରେ ସତ୍ୟବାଦୀର ପ୍ରତ୍ୟାରୋପଣ କରିବାକୁ ଉଦ୍ୟମ କରିଥିଲେ।

ପାରଂପାରିକ ଶିକ୍ଷା ବ୍ୟବସ୍ଥାର ଯେଉଁ ବୈଶିଷ୍ଟ୍ୟ ସତ୍ୟବାଦୀକୁ ଖୁବ୍ ପ୍ରଭାବିତ କରିଥିଲା, ତାହା ହେଲା ତା'ର ମିତବ୍ୟୟିତା। ପାଶ୍ଚାତ୍ୟ ଶିକ୍ଷା ଖର୍ଚ୍ଚ ବହୁଳତା ଉପରେ ପ୍ରାଧାନ୍ୟ ଦିଏ। ଏହାର ବିପରୀତ ପାରଂପାରିକ ଶିକ୍ଷା ବ୍ୟବସ୍ଥା ଖର୍ଚ୍ଚ ସ୍ୱଳ୍ପତାକୁ ପ୍ରକୃଷ୍ଟ ଶିକ୍ଷା ନିମନ୍ତେ ଏକ ଆବଶ୍ୟକତା ମନେ କରେ। ଖର୍ଚ୍ଚ ସ୍ୱଳ୍ପତା ଶିକ୍ଷାର ପ୍ରସାରକୁ ଓ ସ୍ଥାନୀୟ ସଂପୃକ୍ତିକୁ ସହଜ କରାଏ। ଶିକ୍ଷାକୁ ଜନଗଣଙ୍କ ସ୍ତରକୁ ଆଣିବାକୁ ହେଲେ ଖର୍ଚ୍ଚ ସ୍ୱଳ୍ପତାକୁ ଆଧାର କରିବାକୁ ହେବ। ଓଡ଼ିଶାର କୋଣ ଅନୁକୋଣରେ ସତ୍ୟବାଦୀର ପ୍ରତ୍ୟାରୋପଣ ହେଉ, ଏହି ଲକ୍ଷ୍ୟରେ ମହାର୍ଘ ଶ୍ରେଣୀ ଗୃହ ବଦଳରେ ଖୋଲା ପ୍ରାଂଗଣକୁ ଏବଂ ବ୍ୟୟବହୁଳ ବିଜ୍ଞାନାଗାର ବଦଳରେ ବିସ୍ତୃତ ଆକାଶ ଓ ଗଛଲତା ଭରା ପରିବେଶକୁ ଖୋଲା ବହି ଭଳି ବ୍ୟବହାର କରାଯାଉଥିଲା। ସତ୍ୟବାଦୀର ପିଲା ରୋଗୀ ସେବା କରୁଥିଲେ, ଶିକ୍ଷକଙ୍କ ସାଂଗରେ କୋଣାର୍କ ଦର୍ଶନରେ ଯାଉଥିଲେ, ପୁଣି ଉତ୍କଳ ସମ୍ମିଳନୀରେ ସ୍ୱେଚ୍ଛାସେବକର କାମ କରୁଥିଲେ, ପାଠ୍ୟ ପୁସ୍ତକରେ ସୀମିତ ନ ହୋଇ ବରଂ ସାମାଜିକ ପରିବେଶ ଓ ପ୍ରସଂଗରେ ଛାତ୍ରର ସଂପୃକ୍ତି ରହିଲେ, ତାହା ଅଧିକ ଶିକ୍ଷଣୀୟ ହେବ, ଏହା ସେମାନେ ଜାଣିଥିଲେ। ଅନ୍ୟ ଅର୍ଥରେ, ସତ୍ୟବାଦୀ ପାଶ୍ଚାତ୍ୟ ଶିକ୍ଷା ବ୍ୟବସ୍ଥାର ବ୍ୟୟବହୁଳତାକୁ ଦୁଇଟି କାରଣରୁ ମନା କରୁଥିଲା। ପ୍ରଥମ, ଆର୍ଥିକ ଦୃଷ୍ଟିରୁ ସ୍ୱଳ୍ପବ୍ୟୟତା ଏକ ଆବଶ୍ୟକତା। ଦ୍ୱିତୀୟ,

ମିତବ୍ୟୟତା କଦାଚିତ ଅର୍ଥପୂର୍ଣ୍ଣ ଶିକ୍ଷା ନିମନ୍ତେ ବାଧକ ନୁହେଁ।

ସତ୍ୟବାଦୀର ମୋଟ ଜୀବନକାଳ ଥିଲା ମାତ୍ର ୧୭ ବର୍ଷ- ୧୯୦୯ରୁ ୧୯୨୬; ତା' ମଧ୍ୟରୁ ସୁଖର ଦିନ ସାତ ବର୍ଷରୁ କମ-୧୯୧୨ରୁ ୧୯୧୭ ଏବଂ ୧୯୨୧ ଓ ୧୯୨୨। ୧୮୬୫ରେ ଶ୍ରୀରାମଚନ୍ଦ୍ରପୁର ଶାସନରେ ହରିହର ଦାସଶର୍ମା (୧୮୪୨-୧୮୭୪) ନାମରେ ଜଣେ ସମାଜ ସଂସ୍କାରକ ସ୍ୱ-ଉଦ୍ୟମରେ ଭର୍ଣ୍ଣାକୁଲାର ସ୍କୁଲଟିଏ ସ୍ଥାପନ କରିଥିଲେ। ସ୍କୁଲର ମାଟିଘର ନିର୍ମାଣ ଓ ରକ୍ଷଣାବେକ୍ଷଣ ଦାୟିତ୍ୱ ଥିଲା ଗାଁ ଲୋକଂକ ହାତରେ। ଏକ ସରକାରୀ ସ୍କିମ ଅନୁଯାୟୀ, ପିଲା ବୃତ୍ତି ପରୀକ୍ଷାରେ ପାସ କଲେ, ଉକ୍ତ ସ୍କୁଲର ଶିକ୍ଷକଂକୁ ସରକାରଂକ ପକ୍ଷରୁ ଦରମା ମିଳୁଥିଲା। ଏହି ଆଧାରରେ ଶ୍ରୀରାମଚଂଦ୍ରପୁର ସ୍କୁଲ ଚାଲିଥିଲା। ନୀଳକଣ୍ଠ ଦାସ ଓ ଆଚାର୍ଯ୍ୟ ହରିହର ଦାସ, ଗୋପବଂଧୁଙ୍କ ଅନ୍ୟ ଦୁଇ ପ୍ରମୁଖ ସହଯୋଗୀ ଅନନ୍ତ ମିଶ୍ର ଓ ଗୋପୀନାଥ ଦାସ ଏହି ସ୍କୁଲରୁ ପାଠ ପଢ଼ିଥିଲେ। ୧୯୦୯ରେ ଏହି ସ୍କୁଲକୁ ସାକ୍ଷୀଗୋପାଳରେ ପୁନର୍ଦ୍ଧାପିତ କରି ସତ୍ୟବାଦୀ ରୂପେ ନାମକରଣ କରାଗଲା। ପନ୍ଥା ଓ ପରିଣାମ ବା ଇଂରେଜିରେ means ଏବଂ end ମଧ୍ୟରେ ଯେଉଁ ନିବିଡ଼ ସଂବଂଧ, ତାକୁ ସୁସ୍ପଷ୍ଟ କରିବା ପାଇଁ ଗୋପବଂଧୁ ସ୍କୁଲର ସତ୍ୟବାଦୀ ନାମ ରଖିଥିଲେ, ଯାହାର ଅର୍ଥ ହେଲା ପନ୍ଥା ବା ଉଦ୍ୟମକୁ ସତ୍ୟାଶ୍ରୟୀ କରିବା, ସାଧୁ କରିବା ; ଅନ୍ୟଥା ପରିଣାମ ଦୁଃସ୍ଥଳ ହେବ !

ଗୋପବଂଧୁଂକ ଜନ୍ମର ତିନିବର୍ଷ ପୂର୍ବରୁ ହରିହର ଦାସଶର୍ମାଂକର ନିଧନ ହୋଇ ସାରିଥିଲା। ତା' ସତ୍ତ୍ୱେ ହରିହର ଥିଲେ ସତ୍ୟବାଦୀର ପ୍ରେରଣାର ସ୍ରୋତ। ସେ ସଂସ୍କୃତ ପଣ୍ଡିତ ଥିଲେ, ତା' ସହିତ ଇଂରେଜୀ ଗ୍ରୀକ, ଲାଟିନ ଭାଷା ବି ଶିକ୍ଷା କରିଥିଲେ। ପୁରୀରେ ସେ ଏକ ସଂସ୍କୃତ ଅନୁଷ୍ଠାନ ସ୍ଥାପନ କରିଥିଲେ; ତହିଁରେ ପ୍ରାଚ୍ୟଜ୍ଞାନ ସହିତ ଆଧୁନିକ ବିଷୟ ସବୁ ପଢ଼ା ଯିବାର ଯୋଜନା କରିଥିଲେ। ଯେତେବେଳେ କାଗଜ, କଲମର ବ୍ୟବହାରକୁ ରକ୍ଷଣଶୀଳ ପଣ୍ଡିତମାନେ ବିରୋଧ କରୁଥିଲେ, କାରଣ ତାହା ବିଦେଶରୁ ଆନୀତ। ହରିହର କାଗଜ କଲମର ପ୍ରସାର ପାଇଁ ପ୍ରଚାର କରି ତଥା ସ୍ୱ-ଆଧୁନିକ ଆଚରଣ ପାଇଁ ରକ୍ଷଣଶୀଳ ବର୍ଗର ଚକ୍ଷୁଶୂଳ ହୋଇଥିଲେ। ହରିହରଂକ ଜୀବନଦୃଷ୍ଟି ଗୋପବଂଧୁଂକୁ ପ୍ରଭାବିତ କରିଥିଲା। ମୁକ୍ତାର ରାମଚଂଦ୍ର ଦାସ, ଯିଏ ପୁରୀରେ 'ବ୍ରାହ୍ମଣ ସମିତି' ଗଢ଼ି ଏକ ଜାତୀୟଚେତା ଯୁବବର୍ଗ ସୃଷ୍ଟି ପାଇଁ ଉଦ୍ୟମ

କରୁଥିଲେ, ଗୋପବଂଧୁ ତାଂକଠାରୁ ହରିହରଂକ ସଂସ୍କାରୀ ଚେତନା ସଂବଂଧରେ ଶୁଣିଥିଲେ। ସେହି ହିସାବରେ, ହରିହର ଓ ରାମଚଂଦ୍ର ଦାସଂକ ଯୁଗଦୃଷ୍ଟି ସତ୍ୟବାଦୀ ଶିକ୍ଷା ବ୍ୟବସ୍ଥାର ମୂଳ ଭିତ୍ତି ଥିଲା। ସ୍କୁଲକୁ ବିସ୍ତୃତ ସମାଜର ଏକ କ୍ଷୁଦ୍ର ପ୍ରତିକୃତି ଓ ସମାଜକୁ ସ୍କୁଲର ଏକ ବିସ୍ତାରିତ ସ୍ୱରୂପ ଭାବରେ ଦେଖିଲେ ଯାଇ ହିଁ ଉକ୍ତ ଯୁଗଦୃଷ୍ଟିକୁ ଓ ସତ୍ୟବାଦୀର ଶିକ୍ଷା ବ୍ୟବସ୍ଥାକୁ ବୁଝି ହେବ।

ହରିହରଂକ ଜନ୍ମ ଦିନ ଅଗଷ୍ଟ ୧୨ ତାରିଖ (୧୮୪୨)ରେ ସତ୍ୟବାଦୀର ନିହ ପଡ଼ିଲା। ହେଲେ, ଦୁଇ ବର୍ଷ ଯାଏଁ ସ୍କୁଲର ପ୍ରକୃତ ପ୍ରତିଷ୍ଠା ହୋଇ ପାରି ନ ଥିଲା। ନୀଳକଣ୍ଠ କଲିକତା ବିଶ୍ୱବିଦ୍ୟାଳୟରୁ ଏମ୍.ଏ. ପାସ କରି ୧୯୧୧ ଅକ୍ଟୋବର ୧୧ ତାରିଖରେ ସତ୍ୟବାଦୀରେ ପ୍ରଧାନଶିକ୍ଷକ ରୂପେ ଯୋଗ ଦେଲେ। ତେଣିକି ବିଧିବଦ୍ଧ ଭାବେ ଚାଲିଲା ସ୍କୁଲ। ୧୯୧୨ ଆରଂଭରେ ଆସିଲେ ଆଚାର୍ଯ୍ୟ ହରିହର ଦାସ ; ୧୯୧୩ ମେ' ମାସ ଆରଂଭରେ ଯୋଗ ଦେଲେ ଗୋଦାବରୀଶ ମିଶ୍ର; ୧୯୧୪ରେ ଆସିଲେ କୃପାସିଂଧୁ ମିଶ୍ର। ଏମାନେ ସମସ୍ତେ ଥିଲେ ଉଚ୍ଚ ଶିକ୍ଷିତ। ଉଚ୍ଚ ଦରମାର ଲୋଭ ନ ରଖି ଶିକ୍ଷକତାକୁ ଜାତୀୟ କାର୍ଯ୍ୟ ମନେ କରି ସେମାନେ ସତ୍ୟବାଦୀରେ ଯୋଗ ଦେଇଥିଲେ। ପୁଣି ପାରିବାରିକ ଆବଶ୍ୟକତା ଅନୁସାରେ ଯତକିଂଚିତ ଦରମା ନେଉଥିଲେ। ଫଳରେ, ନୀଳକଣ୍ଠ ପ୍ରଧାନ ଶିକ୍ଷକ ହେବା ସତ୍ତ୍ୱେ ଗୋଦାବରୀଶଂକ ଠାରୁ ଊଣା ଦରମା ନେଉଥିଲେ। ତା'ଛଡ଼ା, ପିଲାଂକ ତୁଳନାରେ ରହଣି ବି ସେମାନଂକର ବିଳାସପୂର୍ଣ୍ଣ ନ ଥିଲା। ପିଲା ଓ ଶିକ୍ଷକ ଏକା ମେସରେ ଖାଉଥିଲେ; ଏକା ସାଂଗରେ ଖେଳୁଥିଲେ। ସ୍କୁଲ ସହ ଶିକ୍ଷକଂକର ଏହି ସଂପୃକ୍ତି, ଶିକ୍ଷକଂକୁ କେତେ ମାତ୍ରାରେ ଛାତ୍ରବତ୍ସଳ କରିଥିଲା, ତା'ର ଉଦାହରଣ ମିଳେ ୧୯୧୫ରେ ନୀଳକଣ୍ଠ ନିଜ ବଂଧୁ ପାଖକୁ ଦେଇଥିବା ଏକ ଚିଠିରୁ।

ଚିଠିରେ ନୀଳକଣ୍ଠ ଲେଖିଥିଲେ : "...ମୋର ବର୍ତ୍ତମାନର ଠିକଣା ହେଉଛି ଏହି ସତ୍ୟବାଦୀ ସ୍କୁଲ ! ମୁଁ ପ୍ରାୟ ଘରକୁ ଯିବା ଛାଡ଼ି ଦେଇଛି, ସବୁବେଳେ ଏହି ଛାତ୍ରାବାସରେ ପିଲାଂକ ଗହଣରେ ରହିଛି। ...ମୋର ଯେତିକି ଯେତିକି ଶିକ୍ଷକତାର ଅନୁଭୂତି ବଢୁଛି, ମୁଁ ସେତିକି ବେଶି ଛାତ୍ରବତ୍ସଳ ହୋଇ ଉଠୁଛି। ମୁଁ ଏହି ଶିକ୍ଷକ ଆସନରେ ମୋର ଶେଷ ନିଃଶ୍ୱାସ ତ୍ୟାଗ କରିବାକୁ ଚାହୁଁଛି। ସବୁବେଳେ ଚତୁର୍ଦିଗରେ ଉଜ୍ଜଳଦୀପ୍ତ ମୁଖ ମଣ୍ଡଳ ଦେଖି ଦେଖି ମୋତେ ସ୍ୱର୍ଗ ରାଜ୍ୟରେ ବିଚରଣ କଲା ପରି ଲାଗୁଛି।" ଏହି ଧରଣର ଛାତ୍ରବତ୍ସଳତାକୁ

ସତ୍ୟବାଦୀ ସୃଷ୍ଟି କରିଥିଲା, ନା ଛାତ୍ରବତ୍ସଳତାରୁ ସତ୍ୟବାଦୀର ସୃଷ୍ଟି ହୋଇଥିଲା, ନା ଉଭୟେ ଉଭୟଙ୍କର ପରିପୂରକ ଓ ସ୍ରଷ୍ଟା ଥିଲେ- ତାହା ବିଚାର କରିବାର ବେଳ ଆସିଛି। ମାତ୍ର ଏକଥା ସତ ଯେ, ଶିକ୍ଷକ ଯେତେବେଳେ ପ୍ରତ୍ୟେକ ଛାତ୍ରକୁ ଉଜ୍ଜ୍ୱଳଦୀପ୍ତ ମୁଖ ମଣ୍ଡଳ ମନେ କରେ, ଯେତେବେଳେ ଛାତ୍ର ବି କଦାପି ଶିକ୍ଷକ ଓ ସ୍ୱ-ଶିକ୍ଷାନୁଷ୍ଠାନକୁ ନିରାଶ କରନ୍ତି ନାହିଁ, ସ୍ୱତଃ ଉଜ୍ଜ୍ୱଳ ଦୀପ୍ତ ହୋଇପଡ଼ନ୍ତି। ନିଜର ସ୍ୱଳ୍ପ ଜୀବନାବଧି ମଧ୍ୟରେ ସତ୍ୟବାଦୀ ସେହି ଧରଣର ଏକ ଉଜ୍ଜ୍ୱଳଦୀପ୍ତ ଛାତ୍ର ସମାଜର ନିର୍ମାଣ କରି ଏହା ସିଦ୍ଧ କରିଛି।

୧୯୦୯ରେ ସତ୍ୟବାଦୀ ଆରଂଭ ହୋଇଥିଲା ମାତ୍ର ୧୨ ଜଣ ଛାତ୍ରଙ୍କୁ ନେଇ; ୧୯୧୩ରେ ଏହାର ମୋଟ ଛାତ୍ର ସଂଖ୍ୟା ଥିଲା ୨୬୦ ଏବଂ ଛାତ୍ରାବାସର ଅନ୍ତେବାସୀ ସଂଖ୍ୟା ୧୬୦; ୧୯୧୪ରେ କେବଳ ଅନ୍ତେବାସୀ ସଂଖ୍ୟା ବୃଦ୍ଧି ପାଇ ହେଲା ୨୬୪; ୧୯୧୫ ମେ'ରେ ନୀଳକଣ୍ଠ ଲେଖିଛନ୍ତି ୩୨୦ ଜଣ ଅନ୍ତେବାସୀ। ଅର୍ଥାତ୍ ସ୍କୁଲଟି ପ୍ରାୟତଃ ଆବାସିକ। ଅନ୍ୟ ଏକ ସୂତ୍ରରୁ ଜଣାପଡ଼େ ଯେ ମୋଟ ଛାତ୍ର ସଂଖ୍ୟା ୧୯୧୫ ବେଳକୁ ଚାରି ଶହରୁ ବେଶୀ। ସ୍କୁଲର ବର୍ଦ୍ଧିଷ୍ଣୁ ଜନାଦୃତିର ଏହା ସୂଚକ! ଅସହଯୋଗ ଆଂଦୋଳନ ଉତ୍ତାରୁ (୧୯୨୨) ସତ୍ୟବାଦୀ ପୁଣି ଛାତ୍ରର ଅଭାବ ଅନୁଭବ କଲା। ଶେଷରେ ୧୯୨୬ ବେଳକୁ ଏହା ଗୋପବଂଧୁଂକ ସମସ୍ତ ପ୍ରୟାସ ସତ୍ତ୍ୱେ ବଂଦ ହୋଇଗଲା। ଅର୍ଥାତ୍ 'ବର୍ଷ ମାସ, ଦିନ, ଦଣ୍ଡ'ର ମାପକରେ ସତ୍ୟବାଦୀ ଥିଲା ସ୍ୱଳ୍ପାୟୁ, ଯଦିଓ ଆଜି ଜନ୍ମର ଶହେ ବର୍ଷ ପରେ ସୁଦ୍ଧା ତାହା ଓଡ଼ିଶାର ସାମାଜିକ ଓ ସାଂସ୍କୃତିକ ମାନସ ପଟରୁ ବିସ୍ମୃତ ନୁହେଁ। ବୌଦ୍ଧିକ ବର୍ଗ ତାକୁ ନେଇ ଆଲୋଚନା ବେଳେ ରୋମଛିତ ହୁଅନ୍ତି।

ସତ୍ୟବାଦୀ ଶିକ୍ଷା ବ୍ୟବସ୍ଥା ସଂପର୍କରେ ଆଲୋଚନା କଲାବେଳେ ଆଜି ବସ୍ତୁନିଷ୍ଠା ରଖିବାର ଆବଶ୍ୟକତା ରହିଛି, ଯାହା ନା ପ୍ରଶଂସା-ସର୍ବସ୍ୱତା, ନା ନିଂଦାବିମୁଖତା ! କେବଳ ବସ୍ତୁନିଷ୍ଠା ଆଲୋଚନାକୁ ଶାଣିତ କରିବ, ବୌଦ୍ଧିକ ବିଚାରକୁ ପ୍ରାସଂଗିକ କରିବ ବୋଲି ଆଶା। ସେହି ପରିପ୍ରେକ୍ଷୀରେ ଦେଖିଲେ ପଂଚସଖାଂକୁ ବ୍ରାହ୍ମଣବାଦିତାର ଏକ ପ୍ରଚ୍ଛନ୍ନ ରୂପ ଭାବରେ ବ୍ୟାଖ୍ୟା କରିହେବ। ପୁରୀ ଉପକଣ୍ଠରେ ସ୍ଥିତ ସତ୍ୟବାଦୀ ଥିଲା ଏକ ଶାସନୀ ବ୍ରାହ୍ମଣ ଅଧ୍ୟୁଷିତ କ୍ଷେତ୍ର। ସେଠାରେ ଅନ୍ୟ ଜାତି ତ ପଛ କଥା, କରବାଡ଼ ବ୍ରାହ୍ମଣ ଓ ଅନ୍ୟ ବ୍ରାହ୍ମଣକୁ ମଧ୍ୟ ଶାସନୀ ବ୍ରାହ୍ମଣ ନିମ୍ନ ଦୃଷ୍ଟିରେ ଦେଖୁଥିଲେ । ନୀଳକଣ୍ଠଙ୍କ

ଗୋପବଂଧୁଂକ ସହ ପ୍ରଥମ ଭେଟ ବେଳର ବିବରଣୀ, ଯାହା ନୀଳକଣ୍ଠଙ୍କ ଆତ୍ମଜୀବନୀରେ ସ୍ଥାନିତ, ତାକୁ ଇଂଗିତ କରେ। ନୀଳକଣ୍ଠ ଥିଲେ ଶାସନୀ; ଗୋପବଂଧୁ ଶାସନୀ ବ୍ରାହ୍ମଣ ନ ଥିଲେ। ଗୋପବଂଧୁଙ୍କ ଭୋଜନ ରୀତି ଥିଲା ନୀଳକଣ୍ଠଙ୍କଠାରୁ ଅଲଗା। ଏହାକୁ ନୀଳକଣ୍ଠ ସହଜରେ ଗ୍ରହଣ କରିପାରୁ ନ ଥିଲେ। ପଂଚ଼ସଖା ଓ ସତ୍ୟବାଦୀର ବୃହତ ସୁହୃଦ ଗୋଷ୍ଠୀ ବି ଥିଲା ମୂଳତଃ ବ୍ରାହ୍ମଣ ବଂଶଜ। ସତ୍ୟବାଦୀକୁ ସ୍ଥାନୀୟ ସ୍ତରରେ ସହଯୋଗ ମିଳିବା ପଛରେ ବି ରହିଥିଲା ପରୋକ୍ଷ ଭାବରେ ଜାତି ବିଚ଼ାର। ଅନ୍ୟ ଶବ୍ଦରେ କହିଲେ, ତଥାକଥିତ 'ନିମ୍ନ' ଜାତିର ଗୋଷ୍ଠୀଟିଏ ପକ୍ଷରୁ ଯଦି ସତ୍ୟବାଦୀ ଧରଣର ଅନୁଷ୍ଠାନଟିଏ ତିଆରି ହୋଇଥାନ୍ତା, ଏକା ଅନୁପାତରେ ସ୍ଥାନୀୟ ସହଯୋଗ ହୁଏତ ତାକୁ ମିଳି ନ ଥାନ୍ତା। ଅତୀତରେ ଉଚ୍ଚବଂଶଜ ବ୍ରାହ୍ମଣମାନେ ସମାଜକୁ ଦିଗଦର୍ଶନ ଦେଇଛନ୍ତି ! ପରିବର୍ତ୍ତିତ ପରିସ୍ଥିତିରେ ବି ସେମାନଂକୁ ସମାଜ ରକ୍ଷକର ଭୂମିକା ନିର୍ବାହ କରିବାକୁ ହେବ ! ଅନ୍ୟଥା ସମାଜ ଜ୍ଞାନ-ଶୂନ୍ୟ ହେବ, ପତନଶୀଳ ହେବ।' ଏହି ପ୍ରକାର ଏକ ଜୀବନଦୃଷ୍ଟି ନେଇ ମୁକ୍ତାର ରାମଚ଼ଂଦ୍ର ଦାସ ପୁରୀରେ 'ବ୍ରାହ୍ମଣ ସମିତି' ଗଢ଼ିଥିଲେ। ସମିତିର ଉଦ୍ଦେଶ୍ୟ ଥିଲା ବ୍ରାହ୍ମଣ ଛାତ୍ରମାନଂକୁ ବୌଦ୍ଧିକ ଓ ଆର୍ଥିକ ସ୍ତରରେ ସହଯୋଗ କରିବା ଏବଂ ସେମାନେ ଆଧୁନିକ ଶିକ୍ଷିତ ହେଲେ ଅବଶିଷ୍ଟ ସମାଜକୁ ନିସ୍ୱାର୍ଥପର ଭାବରେ ଜ୍ଞାନ ବାଣ୍ଟିବେ ବୋଲି ଆଶା କରିବା !

ମୁକ୍ତାର ରାମଚ଼ଂଦ୍ର ଦାସଂକୁ ଏହି ଧରଣର ବ୍ରାହ୍ମଣକୈଂଦ୍ରିକ ଚିନ୍ତନ ତାଂକ ଗୁରୁ ହରିହର ଦାସ ଶର୍ମାଙ୍କ ପାଖରୁ ମିଳିଥିଲା। ବିଶ୍ୱପ୍ରୀତି, ଜାତୀୟତା ଓ ଆଂଚ଼ଳିକତା ମଧ୍ୟରେ ପରିପୂରକତା ଖୋଜୁଥିବା ଗୋପବଂଧୁ ଓ ଅନ୍ୟ ପଂଚ଼ସଖା କେବେ କେବେ ହୁଏତ ଏହି ବ୍ରାହ୍ମଣକୈଂଦ୍ରିକ ଯୁଗ ଦୃଷ୍ଟିର ମୌନ ସମର୍ଥନ କରିଥିଲେ, ଅଥବା ତା'ର ମୁଖର ପକ୍ଷଧର ସାଜିଥିଲେ। ଗୋପବଂଧୁ ଏକ କବିତାରେ ହରିହର ଦାସଶର୍ମାଂକର ପ୍ରଶଂସା କରି ଗାଇଥିଲେ :

ପାଂଚ଼ିଥିଲ ମନେ     ତେଜିବେ ବ୍ରାହ୍ମଣେ
ଯେବେ ଚିର କୁସଂସ୍କାର
ଅନ୍ୟ ଯେତେ ଜାତି     ଉଠିବେ ଝଟତି
ହେବ ଉନ୍ନତି ପ୍ରଚ଼ାର।

ଅର୍ଥାତ୍ ପ୍ରଥମେ ବ୍ରାହ୍ମଣମାନେ ଏବଂ ପରେ ତାଂକ ଦେଖାଦେଖି ଅନ୍ୟ

ଜାତିମାନେ କୁସଂସ୍କାର ତ୍ୟାଗ କରିବେ, ଶିକ୍ଷାଭିମୁଖୀ ହେବେ, ଉନ୍ନତିକାମୀ ହେବେ। ଇଂରେଜିରେ ଏହାକୁ କହନ୍ତି Downward Filtration Theory ବା ଓଡ଼ିଆରେ କହିଲେ ନିମ୍ନ ପ୍ରସ୍ରବଣ ସିଦ୍ଧାନ୍ତ, ଯାହାକୁ ଗୋପବଂଧୁଂକ ଦୃଷ୍ଟି ରୂପରେ ଦେଖାଯାଇ ପାରିବ। ଏକ ପକ୍ଷରେ, ବ୍ରାହ୍ମଣ ରକ୍ଷଣଶୀଳତାର ବଳିଷ୍ଠ ବେଷ୍ଟନୀ ମଧ୍ୟରେ ସତ୍ୟବାଦୀର ସାଧକମାନେ ସଂସ୍କାର ଲୋଡୁଥିଲେ, ଏବଂ ତା'ର ପରିଣାମ ସ୍ୱରୂପ, ସ୍ଥାନୀୟ ଶାସନୀ ବ୍ରାହ୍ମଣବାଦୀ ଗୋଷ୍ଠୀର ଚକ୍ଷୁଶୂଳ ହୋଇଥିଲେ। ଏହି ରକ୍ଷଣଶୀଳ ବର୍ଗ ସତ୍ୟବାଦୀର ସଂସ୍କାରର ତୀବ୍ର ବିରୋଧୀ ଥିଲେ। ଏହି ଗୋଷ୍ଠୀର ତୁଳନାରେ ସତ୍ୟବାଦୀ ଗୋଷ୍ଠୀ ଥିଲେ ସଂସ୍କାରୀ ଓ ପ୍ରଗତିଶୀଳ ମନୋବୃତ୍ତିର। ମାତ୍ର ଅନ୍ୟ ଏକ ଦୃଷ୍ଟିରୁ ଦେଖିଲେ, ଏକ ନିର୍ଦ୍ଦିଷ୍ଟ ସ୍ତର ଉତ୍ତାରୁ ସତ୍ୟବାଦୀ ଗୋଷ୍ଠୀ ମଧ୍ୟ ବ୍ରାହ୍ମଣକେଂଦ୍ରିକ ଦୃଷ୍ଟିରୁ ଊର୍ଦ୍ଧ୍ୱକୁ ଯାଇ ପାରୁ ନ ଥିଲେ। ଉଚ୍ଚ ଜାତିକୁ ମେରୁଦଣ୍ଡ ମନେ କଲେ ଯାଇ ସମାଜ ଉନ୍ନତିକାମୀ ହୋଇ ପାରିବ ବୋଲି ବିଚାର କରୁଥିଲେ। ୧୯୨୦ ଦଶକରୁ ଜାତୀୟତା ଆଂଦୋଳନ ଓଡ଼ିଶାରେ ଦୃଢ଼ଭିତ୍ତି ପାଇଲା; ବହୁ ଲୋକ ତହିଁରେ ସାମିଲ ହେଲେ। ତେଣିକି ଆଂଦୋଳନରେ ଗୋଷ୍ଠୀ ବିବାଦ ମଧ୍ୟ ବୃଦ୍ଧି ପାଇଲା। ବ୍ରାହ୍ମଣକେଂଦ୍ରିକ ଦୃଷ୍ଟି ଯୋଗୁଁ ସତ୍ୟବାଦୀ ଦଳ ଏକ ଗୋଷ୍ଠୀରେ ପରିଣତ ହେଲେ। ସେମାନଂକ ବିରୁଦ୍ଧରେ ଅଭିଯୋଗ ହେଲା ଯେ ବ୍ରାହ୍ମଣମାନଂକୁ ସେମାନେ ଅଗ୍ରାଧିକାର ଦିଅନ୍ତି ଏବଂ ଜାତି ଆଧାରରେ ଅନ୍ୟଠାରୁ ସମର୍ଥନ ଲୋଡ଼ନ୍ତି। ସେହି ଦୃଷ୍ଟିରୁ ଦେଖିଲେ, ପଂଚ଼ସଖା ଯେତିକି ସତ୍ୟବାଦୀ ପରି ଏକ ଅଭିନବ ଶିକ୍ଷାବ୍ୟବସ୍ଥାର ଶୁଭାରଂଭକୁ ଚିହ୍ନିତ କରେ ଓ ରାଜନୀତି ଓ ସାହିତ୍ୟ କ୍ଷେତ୍ରରେ ଜାତୀୟତାବାଦର ପ୍ରଖରତାକୁ ଦର୍ଶାଏ, ତତୋଧିକ ମାତ୍ରାରେ ଜାତୀୟ ରାଜନୀତିର ଜାତି-ବିଭକ୍ତିକରଣକୁ ମଧ୍ୟ ଇଂଗିତ କରେ।

ସତ୍ୟବାଦୀର ଶିକ୍ଷା ପରିଧିରେ ବ୍ରାହ୍ମଣମାନଂକର ବହୁଳତାୟତ ଥିବା ସ୍ୱାଭାବିକ, କାରଣ ଶହେ ବର୍ଷ ତଳେ କେବଳ ଉଚ୍ଚ ଜାତିର ଲୋକ, ବିଶେଷ କରି ବ୍ରାହ୍ମଣମାନେ ଆଧୁନିକ ଶିକ୍ଷାର ମହତ୍ତ୍ୱକୁ ବୁଝିଥିଲେ; ତା'ର ଲାଭ ନେଉଥିଲେ। ଜାତିବାଦୀ ଓ ରକ୍ଷଣଶୀଳ ଦୃଷ୍ଟିର ପ୍ରଭାବରେ ନିଜେ ଆଧୁନିକ ଶିକ୍ଷିତ ହେବା ସତ୍ତ୍ୱେ ପଂଚ଼ସଖା ଏବଂ ତାଂକର ଅନେକ ସହଯୋଗୀ ମଧ୍ୟ ନାରୀ ଶିକ୍ଷାକୁ ଯଥେଷ୍ଟ ପ୍ରାଧାନ୍ୟ ଦେଇନଥିଲେ। ଠିକ୍ ସେହିଭଳି ବ୍ରାହ୍ମଣ ତଳକୁ ଥିବା ସ୍ପୃଶ୍ୟ ତଳ ଜାତି ପାଇଁ ସତ୍ୟବାଦୀର ଦ୍ୱାର ଖୋଲା ଥିଲେ ବି ଅସ୍ପୃଶ୍ୟ ଜାତିର ପିଲାଂକ ପାଇଁ ଅଲିଖିତ ଭାବେ ତାହା ବଂଦ ମନେ ହେଉଥିଲା। ଶହେ ବର୍ଷ ତଳେ

ଦଳିତ ଜାତିକୁ ସାଂଗରେ ନେବା ପାଇଁ ଯେଉଁ ସାହସ, ତାକୁ ବୋଧହୁଏ ସେମାନେ କୁଟାଇ ପାରି ନ ଥିଲେ। ଦଳିତ ଜାତିକୁ ସାଂଗରେ ନେଲେ ଯେଉଁ ତୀବ୍ର ବିରୋଧର ସମ୍ମୁଖୀନ ହେବାକୁ ପଡ଼ିଥାନ୍ତା, ତାହା ବୋଧେ ସତ୍ୟବାଦୀକୁ ମୂଳରୁ ପ୍ରତିଷ୍ଠା ହେବାକୁ ଦେଇ ନ ଥାନ୍ତା ! ନା ପିଲା ଆସିଥାନ୍ତେ ସ୍କୁଲକୁ, ନା ସ୍ଥାନୀୟ ସହଯୋଗ ମିଳିଥାନ୍ତା ଅନୁଷ୍ଠାନକୁ ! ସ୍ପୃଷ୍ୟ ନିମ୍ନ ଜାତି ଓ ଅସ୍ପୃଷ୍ୟ ଜାତି ମଧ୍ୟରେ ଥିବା ପାର୍ଥକ୍ୟକୁ ଅନୁମାନ ଓ ଅନୁଭବ କରି ପାରିଲେ ହିଁ ସମସ୍ୟାଟିକୁ ବୁଝିହେବ। ଅନ୍ୟ ଶବ୍ଦରେ କହିଲେ, ଦଳିତକୁ ନେଇ ଏକଲା ପଡ଼ି ଯିବା ଅପେକ୍ଷା ଅନ୍ତତଃ ଅ-ଦଳିତ ନିମ୍ନ ଜାତିକୁ ସାଂଗରେ ନେଇ ଶିକ୍ଷିତଂକ ପରିଧି ବୃଦ୍ଧି କରିବା ସକାଶେ ସତ୍ୟବାଦୀ ଏକ ଉଦ୍ୟମ ହୋଇଥିଲା। ପଂଚ଼ସଖାଂକ ବ୍ରାହ୍ମଣକୈଂଦ୍ରିକ ଦୃଷ୍ଟି ଓ ନିମ୍ନ ପ୍ରସ୍ରବଣ ସିଦ୍ଧାନ୍ତ (downward filtration theory)ରେ ବିଶ୍ୱାସ ପଛରେ ବି ଏହି ସାମାଜିକ ବାସ୍ତବିକତାକୁ ଦେଖି ହେବ। ନାରୀ ଶିକ୍ଷା ପ୍ରତି ଅବହେଳନା ମୂଳରେ ବି ଉପରୋକ୍ତ କାରଣ ରହିଥିଲା। ଅର୍ଥାତ୍ ବ୍ୟକ୍ତିଗତ ଭାବେ ସେମାନେ ହୁଏତ ପ୍ରଗତିଶୀଳ ଥିଲେ, ମାତ୍ର ସାମାଜିକ କାରଣରୁ ମଧ୍ୟମ ପନ୍ଥା (ଇଂରାଜୀରେ କହିଲେ centrist ବିଚ଼ାର)କୁ ସ୍ୱୀକାର କରିଥିଲେ। ଏଠାରେ 'ମଧ୍ୟମ ପନ୍ଥା' ଶବ୍ଦର ବ୍ୟବହାରକୁ ଉକ୍ତ ସ୍ଥାନୀୟ ପରିପ୍ରେକ୍ଷୀରେ ଦେଖିବା ଉଚ଼ିତ ହେବ।

ସେ ଯାହାହେଉ, ଉପରୋକ୍ତ କାରଣରୁ ସତ୍ୟବାଦୀର ସାଧକ ଓ ପୂର୍ବସୂରୀ ତଥା ପ୍ରଭାମଣ୍ଡଳ ଗଢ଼ଣରେ ଜଣେ ବି ମହିଳା ବା ନିମ୍ନ ବର୍ଗର ବ୍ୟକ୍ତି ନାହାନ୍ତି। ସତ୍ୟବାଦୀ ମଣିଷ ତିଆରି କାରଖାନାରୁ ଜଣେ ବି ଶିକ୍ଷିତ କନ୍ୟା ବା ଶିକ୍ଷିତ ଦଳିତ ସୃଷ୍ଟି ହୋଇ ନାହାନ୍ତି। ଏହା ସତ୍ୟବାଦୀର ଛବିକୁ କିଂଚ଼ିତ ମଳିନ କରି ଦିଏ କି ? ଏହା ବି ଏକ ବିଚ଼ାର୍ଯ୍ୟ ପ୍ରଶ୍ନ।

ଉଚ୍ଚ ବର୍ଗର ଯୁବ ବର୍ଗ ଶିକ୍ଷିତ ହେଲା ପରେ ଦେଶ କାମ ପାଇଁ ସ୍ୱାର୍ଥ ତ୍ୟାଗ କଲେ ନାହିଁ। ଅନ୍ୟ ପକ୍ଷରେ ନିଜ ସୁବିଧା ଅନୁସାରେ କେବେ ସତ୍ୟବାଦୀକୁ ସରକାର ସହ ଅନୁବଂଧିତ କରିବାକୁ ଦାବି କଲେ, ତ ଆଉ କେବେ ଅସହଯୋଗର ଜୁଆର ବେଳେ ତାକୁ ସରକାରୀ ଅନୁବଂଧନରୁ ନିବୃତ୍ତ ରଖିବାକୁ ଦାବି କଲେ। ସତ୍ୟବାଦୀର ଆଶା ଅନୁଯାୟୀ ବିଭିନ୍ନ ସ୍ଥାନରେ ନା ଏହାର ପ୍ରତ୍ୟାରୋପଣ ହୋଇପାରିଲା, ନା ମୂଳପୀଠରେ ଏହା ଦୃଢ଼ ମୂଳ ହୋଇ ପାରିଲା। ବରଂ ୧୯୧୭-୧୮ ବେଳକୁ ପଂଚ଼ସଖାଂକ ମଧ୍ୟରେ ଗୋଷ୍ଠୀ ବିବାଦ ଏତେ

ତୀବ୍ର ହେଲା ଯେ ନୀଳକଣ୍ଠ ଓ ଗୋଦାବରୀଶଙ୍କୁ ସତ୍ୟବାଦୀ ଛାଡ଼ିବାକୁ ପଡ଼ିଲା। ପରିତାପର ବିଷୟ ଯେ ଅସହଯୋଗର ଭଟ୍ଟା ପରେ 'ଉଚ୍ଚ' ଜାତିର ପିଲାଙ୍କର ମଧ୍ୟ ସତ୍ୟବାଦୀ ପ୍ରତି ଆକର୍ଷଣ ରହିଲା ନାହିଁ। ସତ୍ୟବାଦୀ ସ୍କୁଲ୍‌ରୁ ପାସ୍ କଲା ପରେ ପିଲା ଉଚ୍ଚଶିକ୍ଷା ପାଇଁ ଦାଖିଲା ନେବେ କେଉଁଠି ? ଚାକିରି ପାଇବେ କେମିତି ? ଜାତୀୟ ଜୀବନର ଲକ୍ଷ୍ୟ ନେଇ ତିଆରି ହୋଇଥିବା ସତ୍ୟବାଦୀ ଓ ତା'ର ସାଧକମାନେ ନିମ୍ନ ପ୍ରସ୍ରବଣ ସିଦ୍ଧାନ୍ତର ଭ୍ରମାତ୍ମକତାକୁ ଅନୁଭବ କରିପାରିଲେ। ନିଜେ ଗୋପବଂଧୁ ସମସ୍ୟାଟିକୁ ବୁଝି ପାରିଥିଲେ ଏବଂ ତା'ର ପ୍ରତିକାର ଭାବରେ ୧୯୨୫-୨୬ରେ ସତ୍ୟବାଦୀରେ ଅସ୍ପୃଷ୍ୟ ଜାତିର ପିଲାଂକୁ ଦାଖିଲା ଦେବାକୁ ନିଷ୍ପତ୍ତି ନେଇଥିଲେ, ଯାହା ଅନୁଷ୍ଠାନଟିକୁ ପ୍ରକୃତ ଅର୍ଥରେ ସାର୍ବଜନୀନ କରିଥାନ୍ତା। ତାଂକର ବ୍ୟକ୍ତିଗତ ଉପସ୍ଥିତି କାଳେ ଅନୁଷ୍ଠାନକୁ ଜୀବନଦାନ କରିବ ଆଶା କରି ସତ୍ୟବାଦୀରେ ନିଜେ ସବୁ ସମୟ ଦେବେ ବୋଲି ଘୋଷଣା କରିଥିଲେ। ଆର୍ଥିକ ଅସୁବିଧାକୁ ଦୂର କରିବା ଲାଗି ଉତ୍ତର ପ୍ରଦେଶରେ ବନାରସ ହିଂଦୁ ବିଶ୍ୱବିଦ୍ୟାଳୟ ସ୍ଥାପନ କରିଥିବା ମଦନ ମୋହନ ମାଲବ୍ୟଙ୍କ ତଥା, ଲାଲା ଲଜପତ ରାଏ ଓ ତାଂକ Servants of Peoples' Societyର ସହଯୋଗ ପାଇଁ ଉଦ୍ୟମ କରିଥିଲେ। ଏସବୁ ସତ୍ତ୍ୱେ, ୧୯୨୬ ବେଳକୁ ସତ୍ୟବାଦୀ ସ୍କୁଲ ପୂର୍ଣ୍ଣତଃ ଶେଷ ହେଲା। ତେଣିକି ସାକ୍ଷୀଗୋପାଳ ମଂଦିର ପୃଷ୍ଠ ଦେଶର ଅନାବାଦୀ ଜମି ଖଣ୍ଡିଏ ହୋଇ ରହିଯିବା ହିଁ ତା'ର ନିୟତି ହେଲା। ଏକ ଆବଶ୍ୟକୀୟ ସାମାଜିକ ଓ ବୈଚାରିକ ଆଧାରର ଅଭାବ ଯୋଗୁଁ ସତ୍ୟବାଦୀ ଶିକ୍ଷା ବ୍ୟବସ୍ଥା ସ୍ୱଳ୍ପାୟୁ ହେଲା; ଅନ୍ୟଥା ଅନୁଷ୍ଠାନଟି ପଂଚସଖାଂକ ପରେ ବି ବଂଚି ରହିଥାନ୍ତା। ଆଜି ସତ୍ୟବାଦୀକୁ ନେଇ ବିମର୍ଶ କଲା ବେଳେ ଅଧିକ ଭାବପ୍ରବଣ ହେବା, କିଂବା କେବଳ ପ୍ରଶଂସା ମୁଖର ହେବା ଅପେକ୍ଷା ବସ୍ତୁନିଷ୍ଠ ହେବା ହୁଏତ ଅଧିକ ଆବଶ୍ୟକ। ଅନ୍ୟଥା ସତ୍ୟବାଦୀ ସଂପର୍କିତ ବୈଚାରିକ ବିମର୍ଶ ପୂର୍ଣ୍ଣକାୟ ପାଇବ ନାହିଁ- ଏଥିରେ ସଂଦେହ ନାହିଁ।



(ଜାନୁଆରି ୨୦୧୪)



ପ୍ରୀତୀଶ ଆଚାର୍ଯ୍ୟ (ଜନ୍ମ ୧୯୬୩, ବରଗଡ ) ଏନ୍.ସି.ଇ.ଆର୍.ଟି.ର ଇତିହାସ ବିଭାଗ ପ୍ରଫେସର ଭାବେ ଆଞ୍ଚଳିକ ଶିକ୍ଷା ପ୍ରତିଷ୍ଠାନ, ଭୁବନେଶ୍ୱରରେ ଅବସ୍ଥାପିତ । ସେ ସ୍ତମ୍ଭକାର ଓ ଲେଖକ ଭାବରେ ଖୁବ୍ ଆଦୃତ । ତାଙ୍କର ବର୍ତ୍ତମାନ ସୁଦ୍ଧା ପ୍ରକାଶିତ ହୋଇସାରିଛି; ତିନୋଟି ଗଳ୍ପ ସଂକଳନ; ପୌଷ ପାହିଲେ ଯାଇ (୧୯୮୬), ଆତ୍ମଲିପି (୧୯୮୯) ଏବଂ ପାତ୍ରୀ ଅନ୍ୱେଷଣ (୨୦୦୧), ତିନୋଟି ଆଲୋଚନା ସଂକଳନ; ଅପନିନ୍ଦା ଉପାଖ୍ୟାନ (୨୦୦୪), ଇତିହାସ ସମୀକ୍ଷା (୨୦୦୭) ଏବଂ ଗାଁର ଗାନ୍ଧି ଓ ଅନ୍ୟାନ୍ୟ ରଚନା (୨୦୧୦), ଛଅଟି ଅନୁବାଦ ସଂକଳନ: ସାଂପ୍ରଦାୟିକତା - ଏକ ପରିଚୟ (୨୦୦୪, ବିପିନ ଚନ୍ଦ୍ର), ଶ୍ରୀଲାଲ ଶୁକ୍ଳାଙ୍କ କେତୋଟି କାହାଣୀ (୨୦୦୬, ଶ୍ରୀଲାଲ ଶୁକ୍ଳା), ଇନ୍ଦିରା ଗାନ୍ଧି (୨୦୦୭, ଇନ୍ଦର ମାଲହୋତ୍ରା), ଆଧୁନିକ ଭାରତର ଇତିହାସ (୨୦୧୦, ବିପିନ ଚନ୍ଦ୍ର), ଆଦ୍ୟକାଳୀନ ଭାରତ ଇତିହାସ (୨୦୧୩, ରୋମିଲା ଥାପର), ସ୍ୱାମୀ ବିବେକାନନ୍ଦ (ଭି.କେ.ଆର୍.ଭି. ରାଓ), ଚାରିଗୋଟି ସଂପାଦିତ ପୁସ୍ତକ; ସ୍ମୃତିରେ ଶିକ୍ଷକ (୨୦୦୬), ଗୋପବନ୍ଧୁ ଚୟନିକା (୨୦୦୯), ହେମଚନ୍ଦ୍ର ଚୟନ (୨୦୧୧) ଏବଂ Selected Writings of Madhusudan Das (୨୦୧୩) । ତାଙ୍କ ପୁସ୍ତକ National Movement and Politics in Orissa:୧୯୨୦-୨୯ (୨୦୦୮) ସେଜ୍ ଇଣ୍ଡିଆ, ନୂଆ ଦିଲ୍ଲୀଙ୍କ ଦ୍ୱାରା ପ୍ରକାଶିତ । ତାଙ୍କର ଅନେକ ଲେଖା ଭାରତର କେତକ ପ୍ରସିଦ୍ଧ ଖବର କାଗଜ ତଥା ପତ୍ରପତ୍ରିକାରେ ପ୍ରକାଶିତ ହୋଇ ଉଚ୍ଚ ପ୍ରଶଂସିତ ।

Itihaasa, byakti O Bichara
Written by Pritish Acharya
Published by Paschima Publications
1882, Nayapalli,
Bhubaneswar, Odisha-12
1st Edition: 2017
Price . 150.00

Email: paschima1990@yahoo.com





978-81-89023-51-1